# ସୃଷ୍ଟି ଓ ସମୀକ୍ଷା

୧୯୭୭-୭୮



ଖ୍ରୀଷ୍ଟ ମହାବିଦ୍ୟାଳୟ

କଟକ - ୮

# ସୃଷ୍ଟି ଓ ସମୀକ୍ଷା

( ପୁରାଣ ବିଶେଷାଙ୍କ )

୧୯୭୭-୭୮

( ଖ୍ରୀଷ୍ଟ ମହାବିଦ୍ୟାଳୟ ଓଡ଼ିଆ ସାହିତ୍ୟସମାଜର ମୁଖପତ୍ର )



ସମ୍ପାଦନା

**ଶ୍ରୀ ପଠାଣି ପଟ୍ଟନାୟକ, ଏମ୍. ଏ.**

ବିଭାଗୀୟ ମୁଖ୍ୟ ଓ ପ୍ରାଧ୍ୟାପକ;

ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ

ଖ୍ରୀଷ୍ଟ କଲେଜ, କଟକ-୮

# ଓଡ଼ିଆ ସାହିତ୍ୟ ସମାଜ ଓ ଓଡ଼ିଆ ସେମିନାର

## ୧୯୭୭-୭୮

ସଭାପତି

ଅଧ୍ୟକ୍ଷ—ଡ: ଦେବେନ୍ଦ୍ର ମହାନ୍ତି, ଏମ୍. ଏ., ପି. ଏଚ୍. ଡି

ଉପସଭାପତି

ପ୍ରାଧ୍ୟାପକ—ଶ୍ରୀ ପଠାଣି ପଟ୍ଟନାୟକ, ଏମ୍. ଏ.

ସମ୍ପାଦକ

ଶ୍ରୀ ରବୀନ୍ଦ୍ରନାଥ ଦାସ ( ୪ର୍ଥ ବର୍ଷ କଳା ଓଡ଼ିଆ ଅନର୍ସ )

ସହ ସମ୍ପାଦକ

ଶ୍ରୀ ବଭୂତିଭୂଷଣ ରାୟ ( ୩ୟ ବର୍ଷ କଳା ଓଡ଼ିଆ ଅନର୍ସ )

**ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଅଧ୍ୟାପକ ଗଣ**

ଶ୍ରୀ ପଠାଣି ପଟ୍ଟନାୟକ ଏମ୍. ଏ. ବିଭାଗୀୟ ମୁଖ୍ୟ ଓ ପ୍ରାଧ୍ୟାପକ

ଶ୍ରୀ ଦେବେନ୍ଦ୍ର ମହାନ୍ତି ଏମ୍. ଏ. ପ୍ରାଧ୍ୟାପକ

ଶ୍ରୀ ମୃତ୍ୟୁଞ୍ଜୟ ନାୟକ, ଏମ୍. ଏ. ,,

ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର, ଏମ୍. ଏ. ,,

ଶ୍ରୀ ମହେଶ୍ୱର ମହାନ୍ତି, ଏମ୍. ଏ. ଅଧ୍ୟାପକ

ଶ୍ରୀ ଭାସ୍କରଚନ୍ଦ୍ର ଖଣ୍ଡାଇ, ଏମ୍. ଏ. ,,

ଶ୍ରୀ ପ୍ରଫୁଲ୍ଲକୁମାର ଦାଶ, ଏମ୍. ଏ. ,,

ଶ୍ରୀ ପ୍ରାଣରଞ୍ଜନ ଦାସ ,,

ଶ୍ରୀ ପୂର୍ଣ୍ଣଚନ୍ଦ୍ର ମଲ୍ଲିକ ,,

---

ମୁଦ୍ରଣ—କୋଣାର୍କ ପ୍ରିଣ୍ଟର୍ସ, କଟକ-୮

# ସୂଚୀ


| | | |
|---|---|---|
| ସମ୍ପାଦକୀୟ ॥ | | |
| ମାର୍କଣ୍ଡେୟ ପୁରାଣ ଏକ ଅଧ୍ୟୟନ ॥ | ୧ ॥ | ପ୍ରଫୁଲ୍ଲ କୁମାର ଦାଶ |
| ସ୍କନ୍ଦ ପୁରାଣ—ଏକ ପର୍ଯ୍ୟାଲୋଚନା ॥ | ୨୫ ॥ | ଶରତଚନ୍ଦ୍ର କର |
| ପ୍ରାଚୀନ ଜ୍ଞାନକୋଷ—ଅଗ୍ନି ପୁରାଣ ॥ | ୪୬ ॥ | ଦୁଃଖିଶ୍ୟାମ ପଟ୍ଟନାୟକ |
| ଲକ୍ଷ୍ମୀ ପୁରାଣ ଓ ବଳରାମ ଦାସ ॥ | ୬୪ ॥ | ଡଃ କୃଷ୍ଣଚରଣ ସାହୁ |
| ଗରୁଡ଼ ପୁରାଣ—ଏକ ଦିଗ୍‌ଦର୍ଶନ ॥ | ୭୨ ॥ | ବିଦ୍ୟୁତ୍‌ଲତା ନନ୍ଦ |
| ନୃସିଂହ ପୁରାଣରେ ଉତ୍କଳୀୟ ଧର୍ମ ଓ ସଂସ୍କୃତି ॥ | ୮୩ ॥ | ସ୍ମିତା ଦାସ |
| ସୂର୍ଯ୍ୟ ପୁରାଣ—ଏକ ବିହଙ୍ଗାବଲୋକନ ॥ | ୯୬ ॥ | ମମତା ବ୍ରହ୍ମା |
| ମତ୍ସ୍ୟ ପୁରାଣ—ଏକ ବିଶ୍ଳେଷଣ ॥ | ୧୦୫ ॥ | ଈଶ୍ୱରଚନ୍ଦ୍ର ଖଟାଇ |
| କଲ୍‌କି ପୁରାଣ—ଏକ ସମୀକ୍ଷା ॥ | ୧୨୦ ॥ | ପ୍ରାଣରଞ୍ଜନ ଦାସ |
| ପୁରାଣ ସାହିତ୍ୟ ଓ ଶିବ ପୁରାଣ ॥ | ୧୩୦ ॥ | ପୂର୍ଣ୍ଣଚନ୍ଦ୍ର ମଲ୍ଲିକ |
| ବ୍ରହ୍ମବୈବର୍ତ୍ତ ପୁରାଣ—ଏକ ବିହଙ୍ଗାବଲୋକନ ॥ | ୧୬୬ ॥ | ଶ୍ରୀ ବସନ୍ତକୁମାର ସାହୁ |




# ସଂପାଦକୀୟ

## ଭାରତୀୟ ସାହିତ୍ୟର ଗର୍ବ ଓ ଗୌରବ

ଆନ୍ତର୍ଜାତିକ ସାହିତ୍ୟ କ୍ଷେତ୍ରରେ ନୋବେଲ ପୁରସ୍କାର ପରି ଭାରତୀୟ ସାହିତ୍ୟରେ ଜ୍ଞାନପୀଠ ପୁରସ୍କାର ଏକ ଆଭିଜାତ୍ୟପୂର୍ଣ୍ଣ ସ୍ୱୀକୃତି ଲାଭ କରିଛି । ୧୯୭୬ ଖ୍ରୀଷ୍ଟାବ୍ଦର ଜ୍ଞାନପୀଠ ପୁରସ୍କାର ଗତବର୍ଷ ଲାଭ କରିଥିଲେ ପ୍ରସିଦ୍ଧ ବଙ୍ଗ ସାହିତ୍ୟର ସ୍ୱନାମଧନ୍ୟା ଲେଖିକା ଶ୍ରୀମତୀ ଆଶାପୂର୍ଣ୍ଣା ଦେବୀ । ତାଙ୍କର "ପ୍ରଥମ ପ୍ରତିଶ୍ରୁତି" ଉପନ୍ୟାସ ପାଇଁ ଏହି ଗୌରବମୟ ପୁରସ୍କାର ଏକଲକ୍ଷ ଟଙ୍କା ଲାଭ କରିଛନ୍ତି । ୧୯୬୦ ଖ୍ରୀଷ୍ଟାବ୍ଦଠାରୁ ୧୯୬୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ଲିଖିତ ଭାରତୀୟ ସାହିତ୍ୟର ଶ୍ରେଷ୍ଠ କୃତିମାନଙ୍କ ମଧ୍ୟରେ "ପ୍ରଥମ ପ୍ରତିଶ୍ରୁତି" ଜ୍ଞାନପୀଠ ପୁରସ୍କାର ପାଇଁ ଯୋଗ୍ୟତା ଅର୍ଜନ କରିପାରିଲା । ଶ୍ରୀମତୀ ଆଶାପୂର୍ଣ୍ଣା ଦେବୀ ସମଗ୍ର ଜାତିର ଅଭିନନ୍ଦନୀୟା, କାରଣ ସେ ହେଉଛନ୍ତି ପ୍ରଥମ ମହିଳା ଲେଖିକା, ଯେ କି ଏହି ଗୌରବର ଅଧିକାରିଣୀ ହେଲେ । ଭାରତୀୟ ସମ୍ବିଧାନରେ ସ୍ୱୀକୃତ ୧୫ଟି ଭାଷା ମଧ୍ୟରେ ବିଚାର କରାଯାଇ ଏହି ପୁରସ୍କାର ଅର୍ପଣ କରାଯାଇଥାଏ । ଅତୀତରେ ତାରାଶଙ୍କର ବନ୍ଦୋପାଧ୍ୟାୟ ଏବଂ ବିଷ୍ଣୁଦେ ଜ୍ଞାନପୀଠ ପୁରସ୍କାର ଲାଭ କରି ବଙ୍ଗଳା ସାହିତ୍ୟକୁ ଗୌରବାନ୍ୱିତ କରିଥିଲେ । ତୃତୀୟଥର ପାଇଁ ବଙ୍ଗସାହିତ୍ୟ ଏହି ପୁରସ୍କାର ଲାଭ କରି ସ୍ୱକୀୟ ସୃଷ୍ଟି ଧର୍ମରେ ମହିମାମଣ୍ଡିତ ହେଲା । ଏଥିପାଇଁ ଲେଖିକା ଅଭିନନ୍ଦନୀୟା ।

## ଓଡ଼ିଆ ସାହିତ୍ୟ ଓ କେନ୍ଦ୍ର ସାହିତ୍ୟ ଏକାଡେ଼ମୀ ପୁରସ୍କାର

ଗତବର୍ଷ କେନ୍ଦ୍ର ସାହିତ୍ୟ ଏକାଡେ଼ମୀ ନାଟ୍ୟକାର ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କୁ କେନ୍ଦ୍ର ସାହିତ୍ୟ ଏକାଡେ଼ମୀ ପୁରସ୍କାର ପ୍ରଦାନ କରିଛନ୍ତି । ଲେଖକଙ୍କର ଆତ୍ମଜୀବନୀ "କୁମ୍ଭାର ଚକ" ଏହି ପୁରସ୍କାର ଲାଭ ପାଇଁ ଯୋଗ୍ୟ

ବିବେଚିତ ହୋଇଅଛି । ଶ୍ରୀ କାଳୀଚରଣ ଜଣେ ଶକ୍ତିଶାଳୀ ନାଟ୍ୟକାର, ବିଶିଷ୍ଟ ମଞ୍ଚ ନିର୍ଦ୍ଦେଶକ, ସଙ୍ଗୀତଜ୍ଞ ଏବଂ ଓଡ଼ିଶୀନୃତ୍ୟ ଓ ସଙ୍ଗୀତରେ ବିଶିଷ୍ଟ ଗବେଷକ । ଦୀର୍ଘ ଅର୍ଦ୍ଧଶତାବ୍ଦୀକାଳ ସେ ଓଡ଼ିଶାର ସଙ୍ଗୀତ ଓ ନାଟକ କ୍ଷେତ୍ରରେ ନିରବଚ୍ଛିନ୍ନ ସାଧନା କରିଆସି ଅଛନ୍ତି । ଓଡ଼ିଆ ରଙ୍ଗମଞ୍ଚ ଓ ନାଟକ କ୍ଷେତ୍ରରେ ସେ ଜଣେ ବିପ୍ଳବୀ କହିଲେ ଅତ୍ୟୁକ୍ତି ହେବନାହିଁ । ତେଣୁ ଏହି ଅବସରରେ ଲେଖକଙ୍କୁ ଆମେ ଅଭିନନ୍ଦନ ଜଣାଉଅଛୁ ।

## ଆମର ଗୌରବ ଡକ୍ଟର ମହାନ୍ତି ଓ ଡକ୍ଟର ତୁଳସୀ ଦାସ

ଏହି ମହାବିଦ୍ୟାଳୟର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଅନ୍ୟତମ ପ୍ରାଧ୍ୟାପକ ଶ୍ରୀ ଦେବେନ୍ଦ୍ର ନାଥ ମହାନ୍ତି ଓଡ଼ିଆ ଭାଷା ବିଷୟରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ଡକ୍ଟରେଟ ଉପାଧି ଲାଭ କରିବାପାଇଁ ଯୋଗ୍ୟ ବିବେଚିତ ହୋଇଅଛନ୍ତି । ଡକ୍ଟର ମହାନ୍ତି ଜଣେ ଶକ୍ତିଶାଳୀ ସମାଲୋଚକ ଏବଂ ବହୁ ପୁସ୍ତକର ପ୍ରଣେତା ଏବଂ ସଂପାଦକ ହିସାବରେ ସୁପରିଚିତ । ଡକ୍ଟର ମହାନ୍ତିଙ୍କର ଗବେଷଣା-ସନ୍ଦର୍ଭ ବିଜ୍ଞ ପରୀକ୍ଷକମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଅଛି । ଖ୍ରୀଷ୍ଟ ମହାବିଦ୍ୟାଳୟ ଏବଂ ସର୍ବୋପରି ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ଶ୍ରୀ ମହାନ୍ତିଙ୍କର ଗୌରବ ଯୋଗୁଁ ଯଶସ୍ୱୀ ହୋଇଅଛି । ଏହି ଅବସରରେ ଆମେ ତାଙ୍କୁ ଆନ୍ତରିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଅଛୁ । ପୁନଶ୍ଚ ରସାୟନ ବିଭାଗର ଡକ୍ଟର ବାଥୁଲି ତୁଳସୀ ଦାସଙ୍କୁ ସ୍ୱାଗତ କରୁଅଛୁ । ସେ Hetro cyclic compounds and some of the useful properties—some oils. ବିଷୟରେ ଗବେଷଣା କରି ଡକ୍ଟର ଉପାଧି ଲାଭ କରିଅଛନ୍ତି ।

## ଅଧ୍ୟାପନା ଓ ଗବେଷଣା

ଓଡ଼ିଶା ଭଳି ରାଜ୍ୟରେ ଗବେଷଣା ପାଇଁ ଅନୁକୂଳ ପରିବେଶ ସର୍ବଦା ମିଳୁ ନଥିଲେହେଁ ଅତ୍ୟନ୍ତ ସୁଖର କଥା ଯେ ଏହି ମହାବିଦ୍ୟାଳୟ ବହୁ ତରୁଣ ଅଧ୍ୟାପକ ନାନା ବାଧା ପ୍ରତିବନ୍ଧକ ମଧ୍ୟରେ ଗବେଷଣା କାର୍ଯ୍ୟରେ ରତ ରହିଅଛନ୍ତି । ପ୍ରସଙ୍ଗକ୍ରମେ ଏଠାରେ କେତେଜଣ ଅଧ୍ୟାପକଙ୍କର ଗବେଷଣା ବିଷୟ ସମ୍ପର୍କରେ ସୂଚନା ଦିଆଯାଇପାରେ ।

ରାଜନୀତି ବିଜ୍ଞାନ ବିଭାଗର ଅଧ୍ୟାପକ ଶ୍ରୀ ପାବକ କାନୁନ୍‌ଗୋ ଉତ୍କଳ ବିଶ୍ୱବିଦ୍ୟାଳୟ ରାଜନୀତି ବିଜ୍ଞାନ ବିଭାଗର ପ୍ରାଧ୍ୟାପକ ଡ. ବେଣୁଧର ପ୍ରଧାନଙ୍କ ଅଧୀନରେ "Kendu leaf in Orissa Politics" ବିଷୟରେ ଗବେଷଣା କରୁଅଛନ୍ତି । ଏହି ବିଭାଗର ପ୍ରାଧ୍ୟାପକ ଶ୍ରୀ ଲଳିତ ମୋହନ କାନୁନ୍‌ଗୋ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ରାଜନୀତି ବିଜ୍ଞାନ ବିଭାଗର ଡ. ଭ୍ରମରବର ନେନାଙ୍କ ଅଧୀନରେ "Formation of leadership in Cuttack Municipality" ବିଷୟରେ ଗବେଷଣା କରୁଅଛନ୍ତି । ରସାୟନ ବିଭାଗର ଅଧ୍ୟାପକ ଶ୍ରୀ ଅରୁଣକୁମାର ରାୟ "Kinetics of Oxidation of some organic compounds by metals and non-metalic ions" ବିଷୟରେ ଗବେଷଣା କରୁଅଛନ୍ତି । ସେହି ବିଭାଗର ଅଧ୍ୟାପକ ଶ୍ରୀ ସାମୁଏଲ୍ ପଟ୍ଟନାୟକ "Studies on the kinetics of Oxidetion and Polymenisation of organic compounds by some metal and non-metal ions" ବିଷୟରେ ଗବେଷଣା ରତ ଅଛନ୍ତି । ଏହି ଦୁଇଜଣ ଅଧ୍ୟାପକ ବର୍ତ୍ତମାନ ଯୁକ୍ତରାଷ୍ଟ୍ର ଆମେରିକାରେ ଅଧ୍ୟାପନା କରୁଥିବା ଡକ୍ଟର ପଦ୍ମଲୋଚନ ନାୟକଙ୍କ ଅଧୀନରେ କାର୍ଯ୍ୟ କରୁଥିବା ଜଣାଯାଏ । ସେହିପରି ରସାୟନ ବିଭାଗର ଅଧ୍ୟାପକ ଶ୍ରୀ ବିହାରୀ ତ୍ରିପାଠୀ "Synthesis and application of Hitro Cyclic Compound" ବିଷୟରେ ଗବେଷଣାରତ । ପ୍ରଫେସର ଡକ୍ଟର ଅଶୋକଶଙ୍କର ମିଶ୍ର ତାଙ୍କର ପରିଚାଳକ ଅଛନ୍ତି । ପ୍ରାଣୀ ବିଜ୍ଞାନ ବିଭାଗର ଅଧ୍ୟାପକ ଶ୍ରୀ ବିଜୟକୁମାର ଦାସ ଡକ୍ଟର ବସନ୍ତ କୁମାର ବେହେରାଙ୍କ ଅଧୀନରେ "Entomology" ବିଷୟରେ ଗବେଷଣା କରୁଥିବା ଜଣାଯାଇଛି । ଉଦ୍ଭିଦ ବିଜ୍ଞାନର ଅଧ୍ୟାପକ ଶ୍ରୀ ବାମନଚନ୍ଦ୍ର ଆଚାର୍ଯ୍ୟ ଡକ୍ଟର ଏମ୍. ଭି. ରାମଶାଙ୍କ ନେତୃତ୍ୱରେ "Morphogenetic studies in plant embrogos" ସମ୍ପର୍କରେ ଗବେଷଣା କରୁଅଛନ୍ତି । ସେହିପରି ଉକ୍ତ ବିଭାଗର ଅଧ୍ୟାପକ ଶଙ୍କରେଶ୍ୱର ସ୍ୱାଇଁ "Studies on sheath rot of rice" ସମ୍ପର୍କରେ ଗବେଷଣା କରୁଛନ୍ତି । ତାଙ୍କର ପରିଚାଳକ ଅଛନ୍ତି କୃଷି

ମହାବିଦ୍ୟାଳୟର ଅଧ୍ୟାପକ ଏନ୍: ଏନ: ମହାନ୍ତି । ଓଡ଼ିଆ ବିଭାଗର ଅଧ୍ୟାପକ ଶ୍ରୀ ପ୍ରାଣରଞ୍ଜନ ଦାସ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରଫେସର ଡକ୍ଟର ଗୋପାଳଚନ୍ଦ୍ର ମିଶ୍ରଙ୍କ ଅଧୀନରେ ଓଡ଼ିଆ କୃଷ୍ଣସାହିତ୍ୟ'' ସଂପର୍କରେ ଗବେଷଣା କରୁଥିବା ଜଣାଯାଇଛି ।

ସମସ୍ତଙ୍କର ସିଦ୍ଧି ଓ ସାର୍ଥକତା ଆମର କାମ୍ୟ ।

## ପୁରାଣ ବିଶେଷାଙ୍କ କାହିଁକି ?

'ସୃଷ୍ଟି ଓ ସମୀକ୍ଷା' ବର୍ଷକରେ ଥରେ ମାତ୍ର ପ୍ରକାଶିତ ହୋଇଥାଏ । ଖ୍ରୀଷ୍ଟ ମହାବିଦ୍ୟାଳୟ ଓଡ଼ିଆ ସାହିତ୍ୟ ସମାଜ ଆନୁକୂଲ୍ୟରେ ସାହିତ୍ୟର କୌଣସି ଏକ ନିର୍ଦ୍ଦିଷ୍ଟ ବିଭାଗରେ ଆଲୋକପାତ କରି ଏହି ସଂକଳନ ଏ ଦେଶର ସୁଧୀ ପାଠକମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିପାରିଅଛି । ଚଳିତ ସଂଖ୍ୟାଟି ଭାରତୀୟ ପୁରାଣ ସାହିତ୍ୟ ସଂପର୍କରେ ଆତ୍ମପ୍ରକାଶ କରିଅଛି । ଆଜି ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଏପରି ଉଦ୍ୟମ ହୋଇନାହିଁ । ପୁରାଣ ହେଉଛି ସମାଜର ବନ୍ଧୁ । ଭାରତୀୟ ସମାଜ କେଉଁ ଅନନ୍ତ କାଳରୁ ପୁରାଣ ସେବିତ । ପୁରାଣ ହେଉଛି ସବୁ ଜ୍ଞାନର ଭଣ୍ଡାର । ଭାରତୀୟ ଆତ୍ମାକୁ ଚିହ୍ନିବାକୁ ହେଲେ ଏ ଦେଶର ପୁରାଣ ଅଧ୍ୟୟନ ଅତ୍ୟନ୍ତ ଆବଶ୍ୟକ । ଭାରତୀୟ ସଂସ୍କୃତି ଓ ପରଂପରା ଚିହ୍ନି ଚିହ୍ନାଇବାରେ ପୁରାଣ ଗୁଡ଼ିକ ଯୁଗଯୁଗ ଧରି ସେବା କରିଆସିଛନ୍ତି । ତେଣୁ ସାହିତ୍ୟର ଆଲୋଚକ ଓ ପାଠକଗଣ ପୁରାଣର ଅଧ୍ୟୟନ ଏବଂ ଆଲୋଚନା କରିବା ଏକାନ୍ତ ଆବଶ୍ୟକ । ଆଲୋଚ୍ୟ ସଂକଳନରେ ବହୁ ଆଲୋଚକ ଅତ୍ୟନ୍ତ ନିଷ୍ଠା ଏବଂ ଆନ୍ତରିକତାର ସହିତ ପୁରାଣ ସାହିତ୍ୟର ମହତ୍ତ୍ୱ ଦର୍ଶାଇ ଦେଇଅଛନ୍ତି । ସହଯୋଗ କରିଥିବା ଲେଖକ ଲେଖିକାମାନଙ୍କୁ ଆନ୍ତରିକ କୃତଜ୍ଞତା ଏବଂ ଧନ୍ୟବାଦ ଜଣାଉଅଛୁ । ବିଶେଷତଃ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରାଧ୍ୟାପକ ଡକ୍ଟର କୃଷ୍ଣଚରଣ ସାହୁଙ୍କର ସାହାଯ୍ୟ ଓ ସହଯୋଗ ଆମେ ଭୁଲିପାରିବୁ ନାହିଁ । ବିଭାଗୀୟ ସହକର୍ମୀମାନଙ୍କର ସହଯୋଗ ଲାଭ କରି ନଥିଲେ ଏ ସଂକଳନଟି ସୁରୁଚିସମ୍ପନ୍ନ ହୋଇପାରି ନଥାନ୍ତା । ସେମାନଙ୍କୁ କୃତଜ୍ଞତା ଜଣାଉଅଛୁ ।



ଡକ୍ଟର ଦେବେନ୍ଦ୍ରନାଥ ମହାନ୍ତି, ଅଧ୍ୟକ୍ଷ ଖ୍ରୀଷ୍ଟ ମହାବିଦ୍ୟାଳୟ

# ମାର୍କଣ୍ଡେୟ ପୁରାଣ
## ଏକ ଅଧ୍ୟୟନ

ଅଧ୍ୟାପକ ପ୍ରଫୁଲ୍ଲ କୁମାର ଦାଶ

ଭାରତୀୟ ସଂସ୍କୃତି ଓ ସାହିତ୍ୟର ଇତିହାସରେ ପୁରାଣ ସାହିତ୍ୟର ଅବଦାନ ବିଶେଷ ଉଲ୍ଲେଖଯୋଗ୍ୟ । ଯୁଗଯୁଗର ବହୁବିଧ ଜ୍ଞାନରାଶି ପୁଞ୍ଜିଭୂତ ଭାବରେ ପୁରାଣରେ ଉପଲବ୍ଧ ହୁଏ । ଏଥି ମଧ୍ୟରେ ଜନସମାଜର ବିବିଧ ଚିନ୍ତାଧାରା, ଭାବନାର ସ୍ରୋତ ତଥା ବିଶ୍ୱାସରାଜି ଯୁଗଯୁଗଧରି ସଞ୍ଚିତ ହୋଇ ରହିଛି । ଏହି ଦୃଷ୍ଟିକୋଣରୁ ବିଚାର କରିବାକୁ ଗଲେ ପୁରାଣ କେବଳ ଧର୍ମ ଓ ସାହିତ୍ୟ ସହିତ ସମ୍ପୃକ୍ତ ନୁହେଁ, ମାନବଜୀବନର ବିବିଧ କ୍ରିୟାକଳାପ ସହିତ ମଧ୍ୟ ଅଙ୍ଗାଙ୍ଗୀଭାବରେ ଜଡ଼ିତ । ମହର୍ଷି ବେଦବ୍ୟାସ ହେଉଛନ୍ତି ଉକ୍ତ ପୁରାଣ ସାହିତ୍ୟର ସ୍ରଷ୍ଟା । ସେ ଅଷ୍ଟାଦଶ ସଂଖ୍ୟକ ମହାପୁରାଣ ଓ ଅଷ୍ଟାଦଶ ସଂଖ୍ୟକ ଉପପୁରାଣ ରଚନା କରିଥିଲେ । ତନ୍ମଧ୍ୟରେ ଆମର ଆଲୋଚ୍ୟ 'ମାର୍କଣ୍ଡେୟ ପୁରାଣ' ହେଉଛି ୭ମ ସଂଖ୍ୟକ ମହାପୁରାଣ । ଉକ୍ତ ପୁରାଣରେ ବିଷୟବସ୍ତୁର ପ୍ରବକ୍ତା ହେଉଛନ୍ତି ମାର୍କଣ୍ଡେୟ ଋଷି । ଏହି କାରଣରୁ "ମାର୍କଣ୍ଡେୟ ପୁରାଣ" ବୋଲି ଏହାର ନାମକରଣ ହୋଇଛି ।

### ମାର୍କଣ୍ଡେୟ ପୁରାଣର କାଳନିର୍ଣ୍ଣୟ :—

ଭାରତୀୟ ପୁରାଣ ସାହିତ୍ୟର କାଳନିରୂପଣ ଐତିହାସିକମାନଙ୍କ ପାଇଁ ଏକ ଜଟିଳ ବ୍ୟାପାର ହୋଇପଡ଼ିଛି । କେଉଁ ପୁରାଣ କେଉଁ ଶତାବ୍ଦୀରେ

ରଚିତ ହୋଇଥିଲା, ଭାରତୀୟ ସାହିତ୍ୟର ଇତିହାସ ଲେଖକଗଣ ଅଦ୍ୟାବଧି ସେ ସମ୍ପର୍କରେ କୌଣସି ସର୍ବଜନଗ୍ରାହ୍ୟ ମତ ପ୍ରଦାନ କରିଥିଲା ପରି ମନେହୁଏ ନାହିଁ । କେତେକଙ୍କ ମତରେ ପୁରାଣ ସାହିତ୍ୟ ହେଉଛି ବେଦ-ବିଦ୍ୟାର ସମସାମୟିକ । ଏ ପ୍ରସଙ୍ଗରେ ଅଥର୍ବବେଦର ନିମ୍ନୋକ୍ତ ଶ୍ଳୋକ ଉଦ୍ଧାର କରି କେତେଜଣ ଐତିହାସିକ ମତ ବ୍ୟକ୍ତ କରନ୍ତି ଯେ, ଚତୁର୍ବେଦ ସହିତ ଏକ ସମୟରେ ପୁରାଣଶାସ୍ତ୍ର ମଧ୍ୟ ସୃଷ୍ଟି ହୋଇଥିଲା । ଅଥର୍ବବେଦର ଉକ୍ତ ଶ୍ଳୋକଟି ହେଉଛି—

ଋଚଃ ସାମାନି ଛନ୍ଦାଂସି ପୁରାଣଂ ଯଜୁଷା ସହ ।
ଉଚ୍ଛିଷ୍ଟା ଜ୍ଜଜ୍ଞିରେ ଦିବି ଦେବା ଦିବିଶ୍ରିତଃ ।।

(ଅଥର୍ବ ୧୧ । ୭ । ୯୪)

ଅର୍ଥାତ୍, ପରମାତ୍ମାଙ୍କଠାରୁ ଋକ୍, ସାମ, ଛନ୍ଦସ୍ (ଅଥର୍ବ) ତଥା ଯଜୁର୍ବେଦ ସହିତ ପୁରାଣ ଉତ୍ପନ୍ନ ହେଲା । ଦିବାଲୋକରେ ବାସକରୁଥିବା ଦେବତାମାନେ ମଧ୍ୟ ଏହି ପରମାତ୍ମାଙ୍କଠାରୁ ଜାତ ହୋଇଥିଲେ ।

ଏତଦ୍‌ବ୍ୟତୀତ ବିଭିନ୍ନ ବ୍ରାହ୍ମଣ ଓ ଉପନିଷଦ୍ ଗ୍ରନ୍ଥରେ ମଧ୍ୟ ପୁରାଣ ସଂପର୍କୀୟ ସୂଚନାମାନ ଦେଖିବାକୁ ମିଳେ । ଏହି କାରଣରୁ ଅନେକ ଐତିହାସିକ ପୁରାଣଶାସ୍ତ୍ରକୁ ବେଦବିଦ୍ୟାର ସମସାମୟିକ ବୋଲି ମତ ପ୍ରଦାନ କରିଛନ୍ତି । ଅନ୍ୟ କେତେକଙ୍କ ମତରେ ବେଦ ଉତ୍ପତ୍ତି କାଳରୁ ପୁରାଣବିଦ୍ୟା ସୃଷ୍ଟି ହୋଇଥିଲେ ମଧ୍ୟ ତାହା ଲିଖିତରୂପ ଲାଭ କରି ନ ଥିଲା । ବେଦବ୍ୟାସ ସର୍ବପ୍ରଥମେ ପୁରାଣକୁ ଲିଖିତ ଆକାରରେ ପ୍ରକାଶ କଲେ । ବ୍ୟାସଙ୍କ ପରବର୍ତ୍ତୀ କାଳରେ ବିଭିନ୍ନ ମୁନିଋଷି ପୁରାଣରାଜିକୁ ଜନସମାଜରେ ପ୍ରଚାର କରିବାକୁ ଲାଗିଲେ । ଏହି କାରଣରୁ କେତେଜଣ ଋଷିଙ୍କ ନାମାନୁସାରେ କେତେକ ପୁରାଣର ନାମକରଣ ହୋଇଛି । ଏହି ମର୍ମରେ ମାର୍କଣ୍ଡେୟ ଋଷି ହେଉଛନ୍ତି "ମାର୍କଣ୍ଡେୟ ପୁରାଣ"ର ପ୍ରଚାରକ ଏବଂ ତାହାଙ୍କ ନାମାନୁସାରେ ଏହାର ନାମକରଣ ହୋଇଛି ବୋଲି ପୂର୍ବରୁ କୁହାଯାଇଛି । ମାର୍କଣ୍ଡେୟ ଋଷିଙ୍କର

ସମସ୍ତ ନିରୂପଣ ମଧ୍ୟ ଅଦ୍ୟାବଧି ଏକ ବିବଦମାନ ଅବସ୍ଥାରେ ରହିଛି । କେତେକ ପୁରାଣରେ ଲିଖିତ ଅଛି ଯେ, ମାର୍କଣ୍ଡେୟ ଋଷି କୁମାରସର୍ଗ—ରୁଦ୍ରସର୍ଗର ବ୍ୟକ୍ତିଥିଲେ । ସେ ଭୃଗୁଋଷିଙ୍କ ପୌତ୍ର ମୃକଣ୍ଡୁ ଋଷିଙ୍କର ପୁତ୍ର-ଥିଲେ । ସେ ପ୍ରଥମେ ସ୍ୱଳ୍ପାୟୁ ଥିଲେ । କିନ୍ତୁ ପରବର୍ତ୍ତୀକାଳରେ ମହାଦେବଙ୍କୁ ଆରାଧନାପୂର୍ବକ ବରପ୍ରାପ୍ତ ହୋଇ ତାହାଙ୍କର ପରମାୟୁ ବୃଦ୍ଧି ଯାଇଥିଲା । ଫଳରେ ସେ ସପ୍ତକଳ୍ପାନ୍ତଜୀବୀ ହୋଇଯାଇଥିଲେ । ଭାରତୀୟ ପରଂପରାରେ ମାର୍କଣ୍ଡେୟ ଋଷି ହେଉଛନ୍ତି ସବୁଠାରୁ ଦୀର୍ଘଜୀବୀ ଋଷି । (ଏହି କାରଣରୁ ଆମର ଆଶୀର୍ବାଦ ପ୍ରଦାନମୂଳକ ଶ୍ଳୋକରେ କୁହାଯାଇଛି "ମାର୍କଣ୍ଡେୟବତ୍ ଚିରଜୀବିତୋଽସ୍ତୁ ।" ) ସେ ବହୁକାଳ ପର୍ଯ୍ୟନ୍ତ ଧରାପୃଷ୍ଠରେ ଜୀବିତ ଥିଲେ ଏବଂ ତାହାଙ୍କ ଦ୍ୱାରା ପ୍ରଣୀତ 'ମାର୍କଣ୍ଡେୟ ପୁରାଣ' ଖ୍ରୀ: ୯ମ ଓ ୧୦ମ ଶତାବ୍ଦୀରେ ପୂର୍ଣ୍ଣରୂପ ଲାଭ କରିଥିଲା ବୋଲି କେତେକଣ ଆଲୋଚକ ମତ ପ୍ରଦାନ କରିଛନ୍ତି । ଉକ୍ତ ସମସ୍ତ ନିରୂପଣ ବହୁ ଐତିହାସିକଙ୍କ ଦ୍ୱାରା ଗୃହୀତ ହୋଇଥିଲେ ମଧ୍ୟ ଏହାର ନିର୍ଭୁଲତା ପ୍ରମାଣ କରିବା ଦିଗରେ ଐତିହାସିକ ଗଣ ବିଶେଷ ପଦକ୍ଷେପ ଗ୍ରହଣ କରିଥିଲାପରି ମନେହୁଏ ନାହିଁ ।

## ମାର୍କଣ୍ଡେୟ ପୁରାଣର ବିଷୟବସ୍ତୁ—

ସମଗ୍ର ମାର୍କଣ୍ଡେୟ ପୁରାଣ ହେଉଛି ୧୩୭ ଅଧ୍ୟାୟ ବିଶିଷ୍ଟ ଏକ ବିଶାଳ-କାୟ ମହାପୁରାଣ । ଏହା ବିଭିନ୍ନ ବିଷୟ ବସ୍ତୁକୁ ନେଇ ରଚିତ ହୋଇଛି । ରାମାୟଣ, ମହାଭାରତ ବା ଭାଗବତର ବିଷୟବସ୍ତୁ ତୁଲ୍ୟ ଏଥିରେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ବିଷୟବସ୍ତୁ, ତାହାର ଧାରାବାହିକତା ରକ୍ଷାକରି ବର୍ଣ୍ଣିତ ହୋଇନାହିଁ । ଏହାର ବିଭିନ୍ନ ଅଧ୍ୟାୟରେ ବିବିଧ ଦାର୍ଶନିକ ତତ୍ତ୍ୱ ସଙ୍ଗେ ସଙ୍ଗେ ବହୁ ପୌରାଣିକ ଆଖ୍ୟାୟିକା ସନ୍ନିବେଶିତ ହୋଇଛି । ରାଜା ହରିଶ୍ଚନ୍ଦ୍ର, ଅନସୂୟା ପ୍ରଭୃତି ବିଭିନ୍ନ ଆଦର୍ଶ ମହାଭାରତୀୟ ଚରିତ୍ର ସଂପର୍କରେ ବହୁ ନୀତି ଓ ଆଦର୍ଶ ପ୍ରତିପାଦକ ଉପାଖ୍ୟାନ ଏଥିରେ ସଂଶ୍ଳିଷ୍ଟ ହୋଇଛି । ପ୍ରତ୍ୟେକ ଉପାଖ୍ୟାନରେ କୌଣସି ଏକ ନିର୍ଦ୍ଦିଷ୍ଟ ଆଦର୍ଶ, ଉଚ୍ଚକୋଟୀର ନୀତିଶିକ୍ଷା ତଥା ବହୁ ଦାର୍ଶନିକ ବା ଧାର୍ମିକ ତତ୍ତ୍ୱ ପ୍ରତିପାଦିତ ହୋଇଛି ।

## ମାର୍କଣ୍ଡେୟ ପୁରାଣ—ଭାରତୀୟ ପୁରାଣ ସାହିତ୍ୟରେ ଏକ କୌତୂହଳ—

'ମାର୍କଣ୍ଡେୟ ପୁରାଣ'ର ପାଠକମାନେ ଜାଣିପାରିବେ ଯେ, ଏହାର ପ୍ରାରମ୍ଭଭାଗ, ଅର୍ଥାତ୍ ପ୍ରଥମ ସାତଗୋଟି ଅଧ୍ୟାୟରେ 'ମହାଭାରତ'ରେ ପ୍ରତିପାଦିତ ଚାରିଗୋଟି ଆଧ୍ୟାତ୍ମିକ ତଥା ପୌରାଣିକ ବିଷୟବସ୍ତୁର ନିଗୂଢ଼ତତ୍ତ୍ୱ ଓ ରହସ୍ୟ ଉନ୍ମୋଚିତ ହୋଇଛି । ଏହାର ପ୍ରଥମ ଅଧ୍ୟାୟରେ ବ୍ୟାସଙ୍କ ଶିଷ୍ୟ ଜୈମିନି, ମାର୍କଣ୍ଡେୟ ଋଷିଙ୍କୁ ମହାଭାରତର ଚାରିଗୋଟି ଘଟଣା ସମ୍ପର୍କରେ ଚାରିଗୋଟି କୌତୂହଳୋଦ୍ଦୀପକ ପ୍ରଶ୍ନ ପଚାରିଛନ୍ତି । ଉକ୍ତ ପ୍ରଶ୍ନ ଚତୁଷ୍ଟୟ ହେଉଛି—

(୧) ଧରାପୃଷ୍ଠରେ ନିର୍ଗୁଣ ଭଗବାନଙ୍କର ଜନ୍ମଗ୍ରହଣ କିପରି ସମ୍ଭବ ହୁଏ ?

(୨) ଦ୍ରୌପଦୀ କିପରି ପାଞ୍ଚପୁରୁଷଙ୍କର ପତ୍ନୀ ହେଲେ ?

(୩) ତୀର୍ଥଯାତ୍ରା ସମୟରେ ବଳଦେବ କାହିଁକି ବ୍ରହ୍ମହତ୍ୟା ପାପର ପ୍ରାୟଶ୍ଚିତ୍ତ କରିଥିଲେ ?

(୪) ଦ୍ରୌପଦୀଙ୍କ ପୁତ୍ରମାନେ କାହିଁକି ମୃତ୍ୟୁ ପର୍ଯ୍ୟନ୍ତ ଅବିବାହିତ ରହିଥିଲେ ଏବଂ ସେମାନଙ୍କୁ ଅନାଥବାଳକ ତୁଲ୍ୟ କାହିଁକି ହତ୍ୟା କରାଯାଇଥିଲା ?

ମାର୍କଣ୍ଡେୟଋଷି ନିଜର ଅସମାୟଭାବରୁ ନିଜେ ଏହି ପ୍ରଶ୍ନ ଗୁଡ଼ିକର ଉତ୍ତର ପ୍ରଦାନ ନ କରି ବିନ୍ଧ୍ୟାଚଳରେ ବାସକରୁଥିବା ପିଙ୍ଗାକ୍ଷ, ବିବୋଧ, ସୁମୁଖ ଓ ସୁପୁତ୍ର ନାମକ ଚାରିଗୋଟି ପକ୍ଷୀଙ୍କ ନିକଟକୁ ଜୈମିନିଙ୍କୁ ପଠାଇଲେ । ଉକ୍ତ ଚାରିଗୋଟି ପକ୍ଷୀ ଅତି ଉଚ୍ଚକୋଟୀର ତତ୍ତ୍ୱଜ୍ଞାନୀ ଥିଲେ ଏବଂ ମନୁଷ୍ୟ ଭାଷାରେ କଥାବାର୍ତ୍ତା କରୁଥିଲେ । ପୂର୍ବଜନ୍ମରେ ସେମାନେ ବିପୁଳସ୍ୱାନ୍ ମୁନିଙ୍କର ପୌତ୍ର ଏବଂ ସୁକୃଷ ଋଷିଙ୍କର ପୁତ୍ର ଥିଲେ ।

ଥରେ ଦେବରାଜ ଇନ୍ଦ୍ର ପକ୍ଷୀରୂପରେ ସୁକୃଷଙ୍କ ନିକଟକୁ ଆସିଥିଲେ । ସୁକୃଷ ନରମାଂସ ଦ୍ୱାରା ଇନ୍ଦ୍ରଙ୍କୁ ପରିଚର୍ଯ୍ୟା କରିବାକୁ ଇଚ୍ଛା ପ୍ରକାଶକଲେ ।

ସୁତରାଂ, ସେ ଅପଣାର ଚାରିପୁତ୍ରଙ୍କୁ ନିଜ ନିଜର ଦେହତ୍ୟାଗ କରିବାକୁ ଆଦେଶ ଦେଲେ । କିନ୍ତୁ ପୁତ୍ରମାନେ ସ୍ୱ-ସ୍ୱ ଜୀବନ ପ୍ରତି ଲୋଭସମ୍ବରଣ କରି ନ ପାରି ପିତାଙ୍କ ଆଦେଶ ପାଳନ କରିବାକୁ ସମ୍ପୂର୍ଣ୍ଣ ଅସମର୍ଥ ହେଲେ । ଫଳରେ ପିତା କ୍ରୋଧାନ୍ୱିତ ହୋଇ ପକ୍ଷୀରୂପରେ ଜନ୍ମଲାଭ କରିବା ପାଇଁ ନିଜର ଚାରିପୁତ୍ରଙ୍କୁ ଅଭିଶାପ ଦେଲେ । ଏହି ଅଭିଶାପ ଅନୁସାରେ ଉକ୍ତ ଚାରି ଜଣ ଋଷିପୁତ୍ର, ଦ୍ରୋଣଙ୍କ ପତ୍ନୀ ତାର୍କ୍ଷୀଙ୍କ ଗର୍ଭରେ ଯାଇ ପ୍ରବେଶ କଲେ । ଗର୍ଭଧାନର ସାଢ଼େ ତିନମାସ ପରେ ଦିନେ ତାର୍କ୍ଷୀଙ୍କୁ ମହାଭାରତ ଯୁଦ୍ଧ-କ୍ଷେତ୍ରକୁ ଯିବାକୁ ପଡ଼ିଥିଲା । ଯୁଦ୍ଧ କ୍ଷେତ୍ରରେ ଯାଇ ପହଞ୍ଚିବା ପରେ ଦୈବ-ବଶତଃ ଗୋଟିଏ ତୀର ଆସି ତାହାଙ୍କର ଗର୍ଭରେ ଆଘାତ ପ୍ରଦାନ ପୂର୍ବକ ଗର୍ଭକୁ ବିଦୀର୍ଣ୍ଣ କଲା ଏବଂ ଏହା ଫଳରେ ଗର୍ଭ ମଧ୍ୟରୁ ଚାରିଗୋଟି ପକ୍ଷୀ ଅଣ୍ଡା ଭୂମି ଉପରେ ପଡ଼ିଯାଇଥିଲା । ସଂଯୋଗ ବଶତଃ ଏହି ସମୟରେ ଗୋଟିଏ ହାତୀ ସେହି ରାସ୍ତାଦେଇ ଗତି କରୁଥିଲା । ତାହାର ଗଳଦେଶରେ ବନ୍ଧା ଯାଇଥିବା ଘଣ୍ଟି ଛିଣ୍ଡିଯାଇ ସେହି ଅଣ୍ଡା ଚାରିଗୋଟି ଉପରେ ପଡ଼ିଯିବା ଫଳରେ ସେଗୁଡ଼ିକ ନିରାପଦ ଭାବରେ ତାହାର ତଳେ ସୁରକ୍ଷିତ ହୋଇ ରହିଗଲା । କିଛିଦିନ ପରେ ଦିନେ ଶମୀକ ଋଷି ସେହି ମାର୍ଗ ଦେଇ ଯାଉ-ଥିବା ବେଳେ ଘଣ୍ଟିତଳେ ପକ୍ଷୀ ଶାବକମାନଙ୍କର କଳରବଯୁକ୍ତ ଶବ୍ଦଶୁଣି କୌତୂହଳ ବଶତଃ ଘଣ୍ଟିଟିକୁ ଉପରକୁ ଉଠାଇଲେ ଏବଂ ତାହାର ତଳେ ଚାରିଗୋଟି ପକ୍ଷୀଶାବକଙ୍କୁ ଦେଖି ତାହାଙ୍କ ମନରେ ଦୟାଭାବ ଜାତହେଲା । ସେ ସେଗୁଡ଼ିକୁ ନିଜର ଆଶ୍ରମକୁ ନେଇଗଲେ ଏବଂ ଅତି ଯତ୍ନର ସହିତ ପାଳନପୋଷଣ କଲେ । ପକ୍ଷୀମାନେ ବଡ଼ ହୋଇଯିବା ପରେ ଋଷିଙ୍କ ଠାରୁ ଅନୁମତି ନେଇ ବିନ୍ଧ୍ୟାଚଳ ଯାତ୍ରାକଲେ ଏବଂ ସେଠାରେ ଅବସ୍ଥାନ ପୂର୍ବକ ତତ୍ତ୍ୱାନୁଚିନ୍ତନରେ ମନୋନିବେଶ କଲେ ।

ମାର୍କଣ୍ଡେୟଙ୍କ ଆଦେଶାନୁସାରେ ଜୈମିନିଉପରୋକ୍ତ ଚାରିଗୋଟି ପକ୍ଷୀଙ୍କ ନିକଟକୁ ଯାଇ ପୂର୍ବୋକ୍ତ ତାହାଙ୍କର ଚାରିଗୋଟି ପ୍ରଶ୍ନର ଉତ୍ତର ଜିଜ୍ଞାସା କଲେ । ପକ୍ଷୀମାନେ ଜୈମିନିଙ୍କୁ ସମ୍ମାନ ଦେଇ ତାହାଙ୍କ ପ୍ରଶ୍ନଗୁଡ଼ିକର ଉତ୍ତର କ୍ରମାନୁସାରେ ନିମ୍ନ ପ୍ରକାରେ ପ୍ରଦାନ କରିଥିଲେ ।

## ପ୍ରଥମ ପ୍ରଶ୍ନର ଉତ୍ତର—

ପରମାତ୍ମାଙ୍କର ମୁଖ୍ୟତଃ ଦୁଇଗୋଟି ରୂପ ରହିଛି । ଗୋଟିଏ ହେଉଛି— ନିର୍ଗୁଣ ରୂପ ଓ ଅନ୍ୟଟି ସଗୁଣ ରୂପ । ନିର୍ଗୁଣ ରୂପ ହେଉଛି ଏକ, ଅଦ୍ୱିତୀୟ ସର୍ବବ୍ୟାପକ, ଶୁଭ୍ର, ଜ୍ୟୋତିର୍ମୟ, ସଦା ଏକରୂପ ଓ ସନାତନ । ସଗୁଣ ରୂପ, ଗୁଣର ତ୍ରିବିଧତା ହେତୁ ତିନ ପ୍ରକାର ଶରୀର ଧାରଣ କରିଥାଏ । ପ୍ରଥମ ପ୍ରକାର ହେଉଛି ତମୋଗୁଣ ପ୍ରଧାନ ମୂର୍ତ୍ତି—ସେ ପୃଥିବୀକୁ ଧାରଣ କରିଥାନ୍ତି, ଏବଂ ସେ 'ଶେଷ' ନାମରେ ପ୍ରସିଦ୍ଧ । ଦ୍ୱିତୀୟ ମୂର୍ତ୍ତି ହେଉଛନ୍ତି, ସତ୍ତ୍ୱଗୁଣ ପ୍ରଧାନ ମୂର୍ତ୍ତି—ସେ ଜଗତକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଧର୍ମର ବ୍ୟବସ୍ଥା କରିଥାନ୍ତି ଏବଂ ସେ ହରି ବା ବିଷ୍ଣୁ ନାମରେ ପ୍ରସିଦ୍ଧ । ତୃତୀୟ ହେଉଛନ୍ତି ରଜୋଗୁଣ ପ୍ରଧାନ ମୂର୍ତ୍ତି—ସେ ଜଗତକୁ ସୃଷ୍ଟି କରନ୍ତି ଏବଂ ଜଳ ମଧ୍ୟରେ ସର୍ପ ଶଯ୍ୟାରେ ଶୟନ କରିଥାନ୍ତି । ସେ ନାରାୟଣ ନାମରେ ପ୍ରସିଦ୍ଧ । ପରମାତ୍ମାଙ୍କର ଉକ୍ତ ତ୍ରିବିଧ ମୂର୍ତ୍ତି ମଧ୍ୟରୁ ପୃଥିବୀର ପ୍ରାଣୀମାନଙ୍କୁ ପାଳନ କରୁଥିବା ସତ୍ତ୍ୱପ୍ରଧାନ ମୂର୍ତ୍ତି ପୃଥିବୀରେ ଧର୍ମରକ୍ଷା ଓ ଅଧର୍ମର ବିନାଶ ନିମିତ୍ତ ସମୟ ସମୟରେ ମନୁଷ୍ୟଶରୀର ଧାରଣପୂର୍ବକ ଧରାପୃଷ୍ଠରେ ଅବତୀର୍ଣ୍ଣ ହୁଅନ୍ତି । ଅର୍ଥାତ୍, ପରମାତ୍ମା ପରମାର୍ଥ ଦୃଷ୍ଟିରୁ ସ୍ୱଭାବତଃ ନିର୍ଗୁଣ ହୋଇଥିଲେ ମଧ୍ୟ ଅନାଦି କାଳରୁ ସେ ସଗୁଣ ବା ଗୁଣ ସଂପନ୍ନ ଅଟନ୍ତି । ଏହି ଗୁଣ ସଂପନ୍ନତା ହେତୁ ଅବତାର ଗ୍ରହଣ କରିବା ତାହାଙ୍କ ପକ୍ଷରେ ସମ୍ଭବ ହୋଇଥାଏ ।

ଏହା ହେଉଛି ପକ୍ଷୀମାନଙ୍କ ମୁଖରୁ ନିଃସୃତ ଜୈମିନିଙ୍କ ପ୍ରଥମ ପ୍ରଶ୍ନର ଉତ୍ତର । ଭଗବାନଙ୍କ ଅବତାରତତ୍ତ୍ୱ ସମ୍ପର୍କରେ ଏକ ଗୂଢ଼ ତଥା କୌତୂହଳୋଦ୍ଦୀପକ ଆଧ୍ୟାତ୍ମିକ ତଥ୍ୟର ଅବତାରଣା ଏଥି ମଧ୍ୟରେ ସ୍ପଷ୍ଟଭାବରେ କରାଯାଇଛି । ଏହି ବିଷୟ ମାର୍କଣ୍ଡେୟ ପୁରାଣର ଚତୁର୍ଥ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ।

## ଦ୍ୱିତୀୟ ପ୍ରଶ୍ନର ଉତ୍ତର—

ଯେତେବେଳେ ଦେବରାଜ ଇନ୍ଦ୍ର, ମହର୍ଷି ତ୍ୱଷ୍ଟାଙ୍କର ପୁତ୍ରକୁ ବଧକଲେ, ସେତେବେଳେ ସେ ବ୍ରହ୍ମହତ୍ୟା ପାପଗ୍ରସ୍ତ ହୋଇପଡ଼ିଲେ ଏବଂ ତାହାଙ୍କର

ଧର୍ମତେଜ ତାହାଙ୍କଠାରୁ ଅପସରିଯାଇ ଧର୍ମଦେବଙ୍କ ଦେହରେ ଲୀନ ହେଲା । ସ୍ୱପୁତ୍ରର ବଧ ସମ୍ବାଦପାଇ ତ୍ୱଷ୍ଟା ଅତ୍ୟନ୍ତ କ୍ଷୁବ୍ଧ ହୋଇପଡ଼ିଲେ । ସେ ନିଜର ମସ୍ତକରୁ ଏକ ଜଟା ଉତ୍ପାଟନ କଲେ ଏବଂ ଗୋଟିଏ ଯଜ୍ଞ ଅନୁଷ୍ଠାନ କରି ଉକ୍ତ ଜଟାକୁ ତହିଁରେ ଆହୁତି ପ୍ରଦାନ କଲେ । ଫଳରେ ସୁରଦ୍ରୋହୀ-ମହାପ୍ରତାପୀ ବୃତ୍ର ଜନ୍ମଲାଭ କଲା । ତାହାର ଉପଦ୍ରବ ଦେବତାମାନଙ୍କ ମନରେ ଭୀତ ସଞ୍ଚାରକଲା । ଏହା ଫଳରେ ସପ୍ତର୍ଷିଗଣ ଏକତ୍ରିତ ହୋଇ ବୃତ୍ରଉପଦ୍ରବର ନିରାକରଣ ନିମିତ୍ତ ବୃତ୍ର ଓ ଇନ୍ଦ୍ରଙ୍କ ମଧ୍ୟରେ ସନ୍ଧିସ୍ଥାପନ କରାଇଲେ । କିଛିଦିନ ପରେ ସୁଯୋଗପାଇ ଇନ୍ଦ୍ର ବୃତ୍ରକୁ ହତ୍ୟାକଲେ । ଏହା ଫଳରେ ସେ ଦ୍ୱିତୀୟ ବ୍ରହ୍ମହତ୍ୟା ପାପରେ ଲିପ୍ତହେଲେ ଏବଂ ତାହାର ଶକ୍ତି ତାହାଙ୍କଠାରୁ ଅପସରିଯାଇ ପବନଦେବଙ୍କ ଦେହରେ ମିଳିତ ହୋଇଗଲା । ଏହାପରେ ସେ ଯେତେବେଳେ ଗୌତମଋଷିଙ୍କ ପତ୍ନୀ ଅହଲ୍ୟାଙ୍କର ସତୀତ୍ୱ ଅପହରଣ କଲେ, ସେତେବେଳେ ତାହାଙ୍କର ଶାରୀରିକ ସୌନ୍ଦର୍ଯ୍ୟ ତାହାଙ୍କ ଶରୀରରୁ ଅପସରିଯାଇ ଅଶ୍ୱିନୀକୁମାରଙ୍କ ଦେହରେ ମିଳିତ ହୋଇଗଲା । ପରବର୍ତ୍ତୀକାଳରେ ରାଜାମାନଙ୍କର ଆସୁରିକ ପ୍ରବୃତ୍ତିଯୋଗୁଁ ପୀଡ଼ିତ ପୃଥିବୀରେ ଶାନ୍ତି ସ୍ଥାପନକରିବା ନିମିତ୍ତ ଯେତେବେଳେ ଭଗବାନଙ୍କୁ ଅବତାର ଗ୍ରହଣ କରିବାକୁ ପଡ଼ିଲା, ସେତେବେଳେ ଅନୁକୂଳ ପରିବେଶ ସୃଷ୍ଟି ନିମିତ୍ତ ଦେବତାମାନଙ୍କୁ ପୃଥିବୀପୃଷ୍ଠରେ ଜନ୍ମଲାଭ କରିବାକୁ ପଡ଼ିଲା । ସେତେବେଳେ ପାଣ୍ଡୁଙ୍କ ପ୍ରଥମପତ୍ନୀ କୁନ୍ତୀ ଇନ୍ଦ୍ରଙ୍କର ଧର୍ମବଳପ୍ରାପ୍ତ ଧର୍ମଦେବଙ୍କ ସହାୟତାରେ ଯୁଧିଷ୍ଠିରଙ୍କୁ, ଇନ୍ଦ୍ରଙ୍କ ସହାୟତାରେ ତାହାଙ୍କ ବୀରତ୍ୱରୁ ଅର୍ଜ୍ଜୁନଙ୍କୁ, ଇନ୍ଦ୍ରଙ୍କ ଶାରୀରିକ ଶକ୍ତିପ୍ରାପ୍ତ ପବନଙ୍କ ସହାୟତାରେ ଭୀମଙ୍କୁ ଜନ୍ମଦେଲେ । ଏହାପରେ ପାଣ୍ଡୁଙ୍କର ଦ୍ୱିତୀୟପତ୍ନୀ ମାଦ୍ରୀ ଇନ୍ଦ୍ରଙ୍କର ରୂପସୌନ୍ଦର୍ଯ୍ୟପ୍ରାପ୍ତ ଅଶ୍ୱିନୀକୁମାରଙ୍କ ସହାୟତାରେ ନକୁଳ ଓ ସହଦେବଙ୍କୁ ଜନ୍ମଦେଲେ । ଏହିପରି ଦେଖିବାକୁଗଲେ, ଇନ୍ଦ୍ରଙ୍କର ଧର୍ମବଳ, ଶାରୀରିକ ବଳ, ବୀରତ୍ୱ ଓ ରୂପସୌନ୍ଦର୍ଯ୍ୟ—ପାଞ୍ଚଗୋଟି ଶରୀରଧାରଣ ପୂର୍ବକ ପଞ୍ଚପାଣ୍ଡବ ରୂପରେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହେଲେ । ଅର୍ଥାତ୍, ଏକମାତ୍ର ଇନ୍ଦ୍ରଦେବ ପାଞ୍ଚଗୋଟି ଶରୀରଧାରଣକରି ମର୍ତ୍ତ୍ୟରେ ଜନ୍ମହେଲେ । ସେହି ସମୟରେ ଇନ୍ଦ୍ରପତ୍ନୀ ଶଚୀଙ୍କର ଦ୍ରୌପଦୀ ରୂପରେ ରାଜାଦ୍ରୁପଦଙ୍କ ଗୃହରେ

ସଙ୍ଗରୁ ଆବିର୍ଭାବ ଘଟିଲ । ପରବର୍ତ୍ତୀକାଳରେ ସ୍ୱୟମ୍ବର ସଭାରେ ମତ୍ସ୍ୟର ଚକ୍ଷୁଭେଦକରିବା ଯୋଗୁଁ ରାଜା ଦ୍ରୁପଦ ନିଜର କନ୍ୟା ଦ୍ରୌପଦୀଙ୍କୁ ଅର୍ଜୁନଙ୍କ ହସ୍ତରେ ଅର୍ପଣ କଲେ । କିନ୍ତୁ ମାତା କୁନ୍ତୀଙ୍କର ଆଦେଶ ଅନୁସାରେ ପଞ୍ଚପାଣ୍ଡବ ଦ୍ରୌପଦୀଙ୍କୁ ବିବାହ କଲେ ।

ଏହି ଉପାଖ୍ୟାନରେ ସ୍ପଷ୍ଟ ପ୍ରତିପାଦିତ ହୋଇଛିଯେ, ଦ୍ରୌପଦୀ ପ୍ରକୃତରେ ପାଞ୍ଚଜଣ ପୁରୁଷଙ୍କର ପତ୍ନୀ ନୁହଁନ୍ତି । ପାଞ୍ଚଗୋଟି ଶରୀରଧାରଣ କରିଥିବା ଏକମାତ୍ର ଦେବରାଜ ଇନ୍ଦ୍ରଙ୍କର ସେ ପତ୍ନୀ ଥିଲେ ।

ଏହାହେଲା ବିନ୍ଧ୍ୟାଚଳର ତତ୍ତ୍ୱଦର୍ଶୀ ପକ୍ଷୀମାନଙ୍କଦ୍ୱାରା କଥିତ ଜୈମିନିଙ୍କ ଦ୍ୱିତୀୟ ପ୍ରଶ୍ନର ଉତ୍ତର ।

## ତୃତୀୟ ପ୍ରଶ୍ନର ଉତ୍ତର—

ମହାଭାରତ ଯୁଦ୍ଧ ସମୟରେ ବଳଦେବ ଦେଖିଲେ ଯେ, ତାହାଙ୍କର ଅନୁଜ ଶ୍ରୀକୃଷ୍ଣ ବଳରାମଙ୍କ ପକ୍ଷ ଗ୍ରହଣ କରିଛନ୍ତି । ଫଳରେ ସେ ଏକ ଅସୁବିଧାଜନକ ପରିସ୍ଥିତିର ସମ୍ମୁଖୀନ ହେଲେ । ସେ ବିଚାରକଲେ ଯେ, ସେ ଯଦି ନିଜର ପ୍ରିୟସଖା ଦୁର୍ଯ୍ୟୋଧନଙ୍କ ପକ୍ଷ ଗ୍ରହଣକରନ୍ତି, ତେବେ ନିଜର ଭାଇ ଶ୍ରୀକୃଷ୍ଣଙ୍କ ସହିତ ବିରୁଦ୍ଧାଚରଣ କରିବାକୁ ପଡ଼ିବ । ଏହା ତାହାଂଙ୍କ ପକ୍ଷରେ ନିତାନ୍ତ ଅନୁଚିତ କାର୍ଯ୍ୟହେବ । କୃଷ୍ଣଙ୍କ ଯୋଗୁଁ ସେ ଯଦି ପାଣ୍ଡବ-ମାନଙ୍କ ପକ୍ଷ ସମର୍ଥନ କରନ୍ତି, ତେବେ ନିଜର ପ୍ରିୟସଖା ଦୁର୍ଯ୍ୟୋଧନଙ୍କ ସହିତ ତାହାଙ୍କର ବିରୋଧଭାବ ସୃଷ୍ଟିହେବ । ଏହାମଧ୍ୟ ତାହାଙ୍କ ପକ୍ଷରେ ନିତାନ୍ତ ଅନୁଚିତ ହୋଇପଡ଼ିବ । ସୁତରାଂ, କୌରବ ଓ ପାଣ୍ଡବମାନଂକ ମଧ୍ୟରେ ଯୁଦ୍ଧ ଚାଲିଥିବା ପର୍ଯ୍ୟନ୍ତ ସେ ତୀର୍ଥଯାତ୍ରାରେ ସମୟ ଅତିବାହିତ କରିବାପାଇଁ ନିଷ୍ପତ୍ତିକଲେ । ଏହାପରେ ସେ ନିଜର ପତ୍ନୀ ରେବତୀ ଓ କେତେ ଜଣ ପରିଜନଙ୍କ ସହିତ ତୀର୍ଥଯାତ୍ରାରେ ବାହାରିଲେ । ଯାତ୍ରାକାଳରେ ସେ ଅଧିକ ପରିମାଣରେ ମଦ୍ୟପାନକରି ରୈବତବନରେ ପ୍ରବେଶକଲେ । ସେତେ-ବେଳେ ସୂତମହର୍ଷି ସେଠାରେ ଋଷିମାନଙ୍କୁ ପୁରାଣପ୍ରବଚନ ଦେଉଥିଲେ ।

ମଦ୍ୟପାନ ହେତୁ ଉନ୍ମତ୍ତ ହୋଇଥିବା ବଳରାମଙ୍କୁ ଦେଖି ଋଷିମାନେ ସ୍ୱ ସ୍ୱ ଆସ୍ଥାନରୁ ଉଠିପଡ଼ିଲେ । କିନ୍ତୁ ବ୍ୟାସାସନର ମର୍ଯ୍ୟାଦାପ୍ରତି ଧ୍ୟାନଦେଇ ସୂତ ସ୍ୱ-ଆସ୍ଥାନରୁ ଉଠିଲେ ନାହିଁ । ଏହା ଫଳରେ ଉନ୍ମତ୍ତ ବଳରାମ କ୍ରୋଧାନ୍ୱିତ ହୋଇ ସୂତଙ୍କୁ ହତ୍ୟାକଲେ । ଏହି ଘଟଣାଫଳରେ ଋଷିମାନେ କ୍ଷୁବ୍ଧହୋଇ ସେହି ବନ ତ୍ୟାଗକଲେ । କିଛି ସମୟ ଅତିବାହିତ ହେବାପରେ ଯେତେବେଳେ ବଳରାମଙ୍କର ଉନ୍ମତ୍ତଭାବ ଦୂର-ହେଲା ଏବଂ ତାହାଙ୍କର ପ୍ରକୃତ ଜ୍ଞାନ ଉଦୟହେଲା, ସେତେବେଳେ ସେ ନିଜର ଅପରାଧ ବିଷୟ ହୃଦୟଙ୍ଗମ ପୂର୍ବକ ନିଜେ ବ୍ରହ୍ମହତ୍ୟା ପାପରେ ଲିପ୍ତବୋଲି ଜାଣିପାରିଲେ । ଉକ୍ତ ବ୍ରହ୍ମହତ୍ୟାପାପର ପ୍ରାୟଶ୍ଚିତ୍ତ ନିମିତ୍ତ ସେ ନିଜର ପାପ ବିଷୟ କୀର୍ତ୍ତନ କରି କରି ସେଠାରୁ ପୁନର୍ବାର ବିଭିନ୍ନ ତୀର୍ଥ ଅଭିମୁଖେ ଯାତ୍ରା ଆରମ୍ଭକଲେ ।

ଏହା ହେଲା ଜୈମିନିଙ୍କ ତୃତୀୟ ପ୍ରଶ୍ନର ଉତ୍ତର ।

## ଚତୁର୍ଥ ପ୍ରଶ୍ନର ଉତ୍ତରः—

ବିଶ୍ୱାମିତ୍ର ଋଷି ହରିଶ୍ଚନ୍ଦ୍ର ରାଜାଙ୍କର ସମଗ୍ର ରାଜ୍ୟ ଦାନସ୍ୱରୂପ ଗ୍ରହଣ କଲେ ଏବଂ ରାଜ୍ୟ ବାହାରିକୁ ନିଜର ଚେଷ୍ଟା ବଳରେ ଧନସଂଗ୍ରହପୂର୍ବକ ତାହାଙ୍କୁ ଦକ୍ଷିଣା ଦେବାପାଇଁ ଆଦେଶ ଦେଲେ । ସେତେବେଳେ ସେ ହରିଶ୍ଚନ୍ଦ୍ରଙ୍କ ଯଷ୍ଟିରେ ପ୍ରହାର ତୁଲ୍ୟ ଅତି କ୍ରୂର ଆଚରଣଦ୍ୱାରା ରାଜ୍ୟରୁ ବିତାଡ଼ିତ କରିଦେଲେ । ରାଜାଙ୍କର ଏତାଦୃଶ ଦୟନୀୟ ଅବସ୍ଥା ଦେଖି ବିଶ୍ୱେଦେବଗଣଙ୍କ ମନରେ ଦୟାଭାବ ଜାତହେଲା ଏବଂ ସେମାନେ ବିଶ୍ୱାମିତ୍ରଙ୍କୁ ନିନ୍ଦା କରିବାକୁ ଲାଗିଲେ । ଏହା ଜାଣିପାରି ବିଶ୍ୱାମିତ୍ର କ୍ରୋଧାନ୍ୱିତ ହୋଇ ଉଠିଲେ ଏବଂ ବିଶ୍ୱେଦେବମାନଙ୍କୁ ମନୁଷ୍ୟ ଯୋନିରେ ଜନ୍ମ ଗ୍ରହଣ କରିବା ପାଇଁ ଅଭିଶାପ ଦେଲେ । ଏହି ଅଭିଶାପରେ ତ୍ରସ୍ତ ହୋଇଯାଇ ବିଶ୍ୱେଦେବଗଣ ଋଷିଙ୍କୁ ସ୍ତୁତି ପୂର୍ବକ ତାହାଙ୍କର ଅନୁଗ୍ରହ ଭିକ୍ଷାକଲେ । କିନ୍ତୁ ବିଶ୍ୱାମିତ୍ର ସେମାନଙ୍କୁ କହିଲେ ଯେ, ତାହାଙ୍କର ଅଭିଶାପ କଦାପି ଅନ୍ୟଥା ହେବ ନାହିଁ । ସେମାନଙ୍କୁ ଯେ କୌଣସି ପ୍ରକାରେ ମନୁଷ୍ୟ ଯୋନିରେ ଜନ୍ମ-

ଲାଭ କରିବାକୁହିଁ ପଡ଼ିବ । କିନ୍ତୁ ମନୁଷ୍ୟ ଜନ୍ମଲାଭ କରି ଅନନ୍ତକାଳ ପର୍ଯ୍ୟନ୍ତ ସେମାନେ ଯେପରି ମନୁଷ୍ୟ ଲୋକର ମାୟା ବନ୍ଧନରେ ଆବଦ୍ଧ ହୋଇ ନ ରହନ୍ତି, ସେଥି ନିମିତ୍ତ ଋଷି ନିଜର ଅଭିଶାପକୁ ସରଳ କରିଦେଲେ । ସୁତରାଂ, ଋଷି ସେମାନଙ୍କୁ କହିଲେ ଯେ, ମନୁଷ୍ୟ ରୂପେ ଜାତ ହେଲେ ମଧ୍ୟ ସେମାନେ ଦାର ସଂଗ୍ରହ କରିବେ ନାହିଁ କିମ୍ବା ସନ୍ତାନୋତ୍ପାଦନ କରିବେ ନାହିଁ । ଏହା ସଙ୍ଗେ ସଙ୍ଗେ କାମ, କ୍ରୋଧ ଇତ୍ୟାଦି ମନୁଷ୍ୟର ସ୍ୱାଭାବିକ ଦୋଷରେ ସେମାନେ ଦୂଷିତ ମଧ୍ୟ ହେବେ ନାହିଁ ।

ବିଶ୍ୱାମିତ୍ରଙ୍କର ଉକ୍ତ ଅଭିଶାପ ଫଳରେ ବିଶ୍ୱେଦେବଗଣ ଦ୍ରୌପଦୀଙ୍କର ପୁତ୍ରଭାବରେ ତାହାଙ୍କର ଗର୍ଭରୁ ଜନ୍ମଲଭ କଲେ ଏବଂ ଅବିବାହିତ ଅବସ୍ଥାରେ ହିଁ ସେମାନଙ୍କୁ ହତ୍ୟା କରାଯାଇଥିଲା ।

ଏହା ହେଉଛି ଜୈମିନିଙ୍କ ଚତୁର୍ଥ ପ୍ରଶ୍ନର ଉତ୍ତର ।

ଏହିପରି ଦେଖିବାକୁ ଗଲେ, ମାର୍କଣ୍ଡେୟ ପୁରାଣର ପ୍ରାରମ୍ଭଭାଗ ମହାଭାରତରେ ବର୍ଣ୍ଣିତ ଚାରିଗୋଟି ବିଷୟର ରହସ୍ୟ ଉଦ୍‌ଘାଟନ କରିବା ଦିଗରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପୌରାଣିକ ବିଷୟ ବସ୍ତୁର ଜିଜ୍ଞାସୁମାନଙ୍କ ପାଇଁ ଏହି ଅଂଶ ଅତ୍ୟନ୍ତ କୌତୂହଳୋଦ୍ଦୀପକ ।

## ପୁରାଣର ପଞ୍ଚ ଲକ୍ଷଣ ଓ ମାର୍କଣ୍ଡେୟ ପୁରାଣ—

ପୁରାଣରେ କେଉଁ କେଉଁ ବିଶିଷ୍ଟ ଲକ୍ଷଣ ରହିବା ଆବଶ୍ୟକ, ସେ ସଂପର୍କରେ ମତବ୍ୟକ୍ତ କରିବାକୁ ଯାଇ ପୁରାଣକାରଗଣ କହିଛନ୍ତି—

"ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋମନ୍ୱନ୍ତରାଣିଚ ।
ବଂଶାନୁଚରିତଂ ଚୈବ ପୁରାଣଂ ପଞ୍ଚଲକ୍ଷଣମ୍ ।"

ଅର୍ଥାତ୍, ସର୍ଗ, ପ୍ରତିସର୍ଗ, ବଂଶ, ମନ୍ୱନ୍ତର ଓ ବଂଶାନୁଚରିତ—ଏହି ପାଞ୍ଚଗୋଟି ଲକ୍ଷଣ ପୁରାଣରେ ଥାଏ ।

ଉକ୍ତ ଲକ୍ଷଣଗୁଡ଼ିକ ମାର୍କଣ୍ଡେୟ ପୁରାଣ (୧୩୪।୧୩), ଶ୍ରୀମଦ୍‌ଦେବୀ ଭାଗବତ (୧।୨।୧୮), ଭବିଷ୍ୟପୁରାଣ (୧।୨।୨-୫), ବ୍ରହ୍ମାଣ୍ଡପୁରାଣ(୧।୧।୩୭-୩୮), ବ୍ରହ୍ମବୈବର୍ତ୍ତ ପୁରାଣ (୪।୧୩୩।୬), ଗରୁଡ଼ପୁରାଣ (୨୧୫।୧୪), କୂର୍ମ ପୁରାଣ (୧।୧।୧୨), ମତ୍ସ୍ୟପୁରାଣ (୫୩।୬୫) ଶିବପୁରାଣ (୫।୧।୩୭) ସ୍କନ୍ଦପୁରାଣ (୭।୨।୮୪), ବରାହ ପୁରାଣ (୨।୪), ବିଷ୍ଣୁପୁରାଣ (୩।୬।୨୫), ସୌରପୁରାଣ (୯।୪) ପ୍ରଭୃତିରେ ନିର୍ଦ୍ଦିଷ୍ଟ ହୋଇଥିବା ଦେଖାଯାଏ ।

ମାର୍କଣ୍ଡେୟ ପୁରାଣରେ ଉପରୋକ୍ତ ପାଞ୍ଚପ୍ରକାର ଲକ୍ଷଣ କିପରି ଭାବରେ ପ୍ରତିଫଳିତ ହୋଇଛି, ସେହି ବିଷୟ ଆଲୋଚନା କରିବା ପୂର୍ବରୁ ପ୍ରଥମେ ଉକ୍ତ ଲକ୍ଷଣଗୁଡ଼ିକ ସଂପର୍କରେ ସ୍ପଷ୍ଟ ଧାରଣା ହେବା ଆବଶ୍ୟକ । ଶ୍ରୀମଦ୍ ଭାଗବତ ମହାପୁରାଣରେ ସର୍ଗ, ପ୍ରତିସର୍ଗ ପ୍ରଭୃତି ଉପରୋକ୍ତ ପାଞ୍ଚଲକ୍ଷଣର ସଂଜ୍ଞା ପ୍ରଦତ୍ତ ହୋଇଛି । 'ସର୍ଗର' ସଂଜ୍ଞାପ୍ରଦାନ ପ୍ରସଙ୍ଗରେ କୁହାଯାଇଛି—

ଅବ୍ୟାକୃତ ଗୁଣକ୍ଷୋଭାନ୍ମହତସ୍ତ୍ରିବୃତୋଽହମଃ ।
ଭୂତମାତ୍ରେନ୍ଦ୍ରିୟାର୍ଥାନାଂ ସମ୍ଭବଃ ସର୍ଗ ଉଚ୍ୟତେ ।।

(ଭାଗବତ ୧୨।୭।୧୧)

ଅର୍ଥାତ୍, ଯେତେବେଳେ ମୂଳ ପ୍ରକୃତି ମଧ୍ୟରେ ଲୀନ ଗୁଣଗୁଡ଼ିକ କ୍ଷୁବ୍ଧ ହୋଇଯାଏ, ସେତେବେଳେ ମହତ୍‌ତତ୍ତ୍ୱର ଉତ୍ପତ୍ତି ଘଟେ । ମହତ୍‌ତତ୍ତ୍ୱରୁ ତାମସ, ରାଜସ ଓ ବୈକାରିକ (ସାତ୍ତ୍ୱିକ)—ଏହି ତିନିପ୍ରକାର ଅହଂକାର ସୃଷ୍ଟି ହୁଅନ୍ତି । ଉକ୍ତ ତ୍ରିବିଧ ଅହଂକାରରୁ ପଞ୍ଚତନ୍ମାତ୍ର, ଇନ୍ଦ୍ରିୟ ଓ ବିଷୟ ରାଜିର ଉତ୍ପତ୍ତି ଘଟେ । ଏହି ଉତ୍ପତ୍ତିକ୍ରମକୁ 'ସର୍ଗ' କୁହାଯାଏ ।

ସେହିପରି 'ପ୍ରତିସର୍ଗ' ସଂପର୍କରେ କୁହାଯାଇଛି —

"ନୈମିତ୍ତିକଃ ପ୍ରାକୃତିକୋ ନିତ୍ୟ ଆତ୍ୟନ୍ତିକୋ ଲୟଃ ।
ସଂସ୍ଥେତି କବିଭିଃ ପ୍ରୋକ୍ତା ଚତୁର୍ଦ୍ଧାସ୍ୟ ସ୍ୱଭାବତଃ ।।

(ଭାଗବତ ୧୨।୭।୧୭)

ଅର୍ଥାତ୍, ସ୍ୱାଭାବିକ ରୀତିରେ ବିଶ୍ୱବ୍ରହ୍ମାଣ୍ଡରେ ଯେଉଁ ପ୍ରଳୟ ସଂଘଟିତ ହୁଏ, ତାହାର ଚତୁଃପ୍ରକାର ଭେଦ ରହିଛି । ତାହା ହେଉଛି—ନୈମିତ୍ତିକ, ପ୍ରାକୃତିକ, ନିତ୍ୟ ଓ ଆତ୍ୟନ୍ତିକ । ତତ୍ତ୍ୱଜ୍ଞ ବିଦ୍ୱାନ୍‌ମାନେ ଏହାକୁ 'ସଂସ୍ଥା' ରୂପରେ ନାମିତ କରିଛନ୍ତି । ('ପ୍ରତିସର୍ଗ' ପରିବର୍ତ୍ତେ ଭାଗବତରେ 'ସଂସ୍ଥା' ଶବ୍ଦ ପ୍ରଯୁକ୍ତ ହୋଇଛି । 'ପ୍ରତିସର୍ଗ' ଓ 'ସଂସ୍ଥା' ଏକାର୍ଥବାଚକ ଅଟନ୍ତି ।) 'ବଂଶ' ସଂପର୍କରେ କୁହାଯାଇଛି—

ରାଜ୍ଞାଂ ବ୍ରହ୍ମପ୍ରସୂତାନାଂ ବଂଶସ୍ତ୍ରୈକାଳିକୋଽନ୍ୱୟଃ ॥

(ଭାଗବତ ୧୨।୭।୧୬)

ଅର୍ଥାତ୍, ବ୍ରହ୍ମାଙ୍କଦ୍ୱାରା ସୃଷ୍ଟ ରାଜାମାନଙ୍କର ଭୂତ, ଭବିଷ୍ୟତ ଓ ବର୍ତ୍ତମାନ କାଳୀନ ସନ୍ତାନ ପରମ୍ପରାକୁ 'ବଂଶ' କୁହାଯାଏ ।

'ମନ୍ୱନ୍ତର'ର ସଂଜ୍ଞାପ୍ରଦାନ ପ୍ରସଙ୍ଗରେ କୁହାଯାଇଛି—

ମନ୍ୱନ୍ତରଂ ମନୁର୍ଦେବା ମନୁପୁତ୍ରାଃ ସୁରେଶ୍ୱରଃ ।
ଋଷୟୋଽଂଶାବତାରଶ୍ଚ ହରେଃ ଷଡ୍‌ବିଧମୁଚ୍ୟତେ ॥

(ଭାଗବତ ୧୨।୭।୧୫)

ଅର୍ଥାତ୍, ମନୁ, ଦେବତା, ମନୁପୁତ୍ର, ଇନ୍ଦ୍ର, ସପ୍ତର୍ଷି ଓ ଭଗବାନଙ୍କ ଅଂଶାବତାର—ଏହି ଛଅ ପ୍ରକାର ବିଶେଷତାଯୁକ୍ତ ସମୟକୁ ମନ୍ୱନ୍ତର କୁହାଯାଏ ।

'ବଂଶାନୁଚରିତ' ସମ୍ପର୍କରେ ଉଲ୍ଲିଖିତ ଅଛି—

× × ×

ବଂଶାନୁଚରିତଂ ତେଷାଂ ବୃତ୍ତଂ ବଂଶଧରାଶ୍ଚ ଯେ ॥

(ଭାଗବତ ୧୨ । ୭ । ୧୬)

ଅର୍ଥାତ୍, ଯେଉଁଥିରେ ପୂର୍ବୋକ୍ତ ବଂଶରେ ଉତ୍ପନ୍ନ ତଥା ମୂଳପୁରୁଷ ରାଜାମାନଙ୍କ ସମ୍ପର୍କୀୟ ବିଶେଷ ବିବରଣୀ ବର୍ଣ୍ଣିତ ହୋଇଥାଏ, ତାହାକୁ 'ବଂଶାନୁଚରିତ' କୁହାଯାଏ ।

ପୁରାଣର ଉପରୋକ୍ତ ପାଞ୍ଚଗୋଟି ଲକ୍ଷଣ କିପରି ଭାବରେ ପ୍ରତିଫଳିତ ହୋଇଛି, ତାହା ବର୍ତ୍ତମାନ ଆଲୋଚ୍ୟ ।

## ସର୍ଗ—

ମାର୍କଣ୍ଡେୟ ପୁରାଣର ୪୭ଶ ଅଧ୍ୟାୟଠାରୁ ଆରମ୍ଭକରି ୫୫ତମ ଅଧ୍ୟାୟ ମଧ୍ୟରେ ସର୍ଗର ବର୍ଣ୍ଣନା ପ୍ରଦତ୍ତ ହୋଇଛି । ୪୭ଶ ଅଧ୍ୟାୟରେ ପ୍ରାକୃତ, ବୈକୃତ ଓ କୌମାର—ସର୍ଗର ଏହି ତିନିପ୍ରକାର ଭେଦ ପ୍ରତିପାଦିତ ହୋଇଛି । ପ୍ରାକୃତ ସର୍ଗ ତିନିଭାଗରେ ବିଭକ୍ତ, ଯଥା:—ବ୍ରହ୍ମ ସର୍ଗ, ଭୂତ ସର୍ଗ ଓ ଇନ୍ଦ୍ରିୟ ସର୍ଗ । ସେହିପରି ବୈକୃତ ସର୍ଗ ପାଞ୍ଚ ଭାଗରେ ବିଭକ୍ତ—ମୁଖ୍ୟ ସର୍ଗ, ତିର୍ଯକ ସର୍ଗ, ଦେବ ସର୍ଗ, ମାନୁଷ ସର୍ଗ ଓ ଅନୁଗ୍ରହ ସର୍ଗ । କୌମାର ସର୍ଗର କୌଣସି ବିଭାଗୀକରଣ ନାହିଁ ଏବଂ ଏହା ରୁଦ୍ର ସର୍ଗ ନାମରେ ମଧ୍ୟ କଥିତ । ମାର୍କଣ୍ଡେୟପୁରାଣର ନିମ୍ନୋକ୍ତ ଶ୍ଳୋକାବଳୀର ଉକ୍ତ ସର୍ଗ ସମ୍ପର୍କୀୟ ସ୍ପଷ୍ଟ ବିବରଣୀ ପରିଦୃଷ୍ଟ ହୁଏ—

ପ୍ରଥମୋ ମହତଃ ସର୍ଗୋ ବିଜ୍ଞେୟୋ ବ୍ରହ୍ମଣସ୍ତୁ ସଃ ।
ତନ୍ମାତ୍ରାଣାଂ ଦ୍ୱିତୀୟସ୍ତୁ ଭୂତସର୍ଗଃ ସ ଉଚ୍ୟତେ ।।
ବୈକାରିକ ସ୍ତୃତୀୟସ୍ତୁ ସର୍ଗଶ୍ଚୈନ୍ଦ୍ରିୟକଃ ସ୍ମୃତଃ ।
ଇତ୍ୟେଷ ପ୍ରାକୃତଃ ସର୍ଗଃ ସମ୍ଭୂତୋ ବୁଦ୍ଧିପୂର୍ବକଃ ।।
ମୁଖ୍ୟସର୍ଗଶ୍ଚତୁର୍ଥସ୍ତୁ ମୁଖ୍ୟାବୈ ସ୍ଥାବରାଃ ସ୍ମୃତାଃ ।
ତିର୍ଯକ୍ ସ୍ରୋତସ୍ତୁ ଯଃ ପ୍ରୋକ୍ତସ୍ତିର୍ଯଗ୍ୟୋନ୍ୟଃ ସ ପଞ୍ଚମଃ ।।
ତଥୋର୍ଦ୍ଧ୍ୱ ସ୍ରୋତସାଂ ଷଷ୍ଠୋ ଦେବସର୍ଗସ୍ତୁ ସ ସ୍ମୃତଃ ।
ତତୋଽର୍ବାକ ସ୍ରୋତସାଂ ସର୍ଗଃ ସପ୍ତମଃ ସ ତୁ ମାନୁଷଃ ।।
ଅଷ୍ଟମୋଽନୁଗ୍ରହଃ ସର୍ଗଃ ସାତ୍ତ୍ୱିକସ୍ତାମସଶ୍ଚ ସଃ ।
ପଞ୍ଚୈତେ ବୈକୃତାଃ ସର୍ଗାଃ ପ୍ରାକୃତାସ୍ତୁ ତ୍ରୟଃସ୍ମୃତାଃ ।।
ପ୍ରାକୃତୋ ବୈକୃତଶ୍ଚୈବ କୌମାରେ ନବମଃ ସ୍ମୃତଃ ।
ଇତ୍ୟେତେ ବୈ ସମାଖ୍ୟାତା ନବସର୍ଗାଃ ପ୍ରଜାପତେଃ ।।

(୪୭ଶ ଅଧ୍ୟାୟ)

ଅର୍ଥାତ୍, ମହାନ୍ ବ୍ରହ୍ମାଙ୍କ ଉତ୍ପତ୍ତି ପ୍ରଥମ ବା ବ୍ରହ୍ମସର୍ଗ ନାମରେ ଅଭିହିତ । ତନ୍ମାତ୍ର (ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ)ର ଉତ୍ପତ୍ତି ଦ୍ୱିତୀୟସର୍ଗ ଅଟେ । ଏହା ଭୂତସର୍ଗ ନାମରେ କଥିତ । ତୃତୀୟସର୍ଗ ହେଉଛି ଇନ୍ଦ୍ରିୟସର୍ଗ, ଯାହା ବୈକାରିକସର୍ଗ ନାମରେ ମଧ୍ୟ ଅଭିହିତ । ଏହି ତିନୋଟି ହେଉଛନ୍ତି ପ୍ରାକୃତସର୍ଗ । ଏଗୁଡ଼ିକର ଉତ୍ପତ୍ତି ବୁଦ୍ଧିପୂର୍ବକ ହୋଇଥାଏ । ସ୍ଥାବର, ଅର୍ଥାତ୍ ଭୂମି, ପର୍ବତ ଓ ବୃକ୍ଷ ଇତ୍ୟାଦିଙ୍କର ଉତ୍ପତ୍ତି ଚତୁର୍ଥସର୍ଗ ଅଟେ । ଏହା ମୁଖ୍ୟ ସର୍ଗ ନାମରେ କଥିତ । ପଶୁ, ପକ୍ଷୀ, ଓ ସରୀସୃପ ଇତ୍ୟାଦିଂକର ଉତ୍ପତ୍ତି ପଞ୍ଚମସର୍ଗ ଅଟେ । ଏହା ତିର୍ଯ୍ୟକସର୍ଗ ବା ତିର୍ଯ୍ୟକ୍‌ସ୍ରୋତ ନାମରେ କଥିତ । ଦେବତାମାନଂକର (ଊର୍ଦ୍ଧ୍ୱସ୍ରୋତ) ଉତ୍ପତ୍ତି ଷଷ୍ଠସର୍ଗ ଅଟେ ଏବଂ ଏହା ଦେବସର୍ଗ ନାମରେ ଅଭିହିତ । ଅର୍ବାକ୍‌ସ୍ରୋତ ବା ମନୁଷ୍ୟମାନଂକର ଉତ୍ପତ୍ତି ସପ୍ତମସର୍ଗ ଅଟେ । ଏହା ମାନୁଷସର୍ଗ ନାମରେ କଥିତ । ଅଷ୍ଟମସର୍ଗର ନାମ ହେଉଛି ଅନୁଗ୍ରହସର୍ଗ, ଯେଉଁଥିରେ ସାତ୍ତ୍ୱିକ ତଥା ତାମସ, ଏହି ଦୁଇଗୁଣର ସମାବେଶ ଦେଖିବାକୁ ମିଳେ ।

ଚତୁର୍ଥ ସର୍ଗଠାରୁ ଅଷ୍ଟମ ସର୍ଗ ପର୍ଯ୍ୟନ୍ତ ପାଞ୍ଚଗୋଟି ସର୍ଗ ବୈକୃତ ସର୍ଗ ଅଟେ । ତିନି ପ୍ରାକୃତ ସର୍ଗ, ପାଞ୍ଚବୈକୃତ ସର୍ଗ ଓ ନବମ ସର୍ଗ—କୁମାର ସର୍ଗ—ଏହି ସମସ୍ତ ସର୍ଗ ପ୍ରଜାପତିଙ୍କର ନବ ସର୍ଗ ନାମରେ ଅଭିହିତ । ଏକମାତ୍ର ଆନନ୍ଦ ରୂପ, ଅନନ୍ତ ସତ୍ତା, ଅଖଣ୍ଡ ଚୈତନ୍ୟ ବ୍ରହ୍ମ ହିଁ ହେଉଛନ୍ତି ଏହି ସମସ୍ତ ସର୍ଗର ଆଧାରଶିଳା ।

**ପ୍ରତିସର୍ଗ—**

"ପ୍ରତିସର୍ଗ"ର ପୂର୍ବୋକ୍ତ ଲକ୍ଷଣରୁ ଜଣାଯାଏ ଯେ, ଏହାର ମୂଳ ଅର୍ଥ ହେଉଛି 'ପ୍ରଳୟ' । ମାର୍କଣ୍ଡେୟ ପୁରାଣର ୪୬ତମ ଅଧ୍ୟାୟରେ ପ୍ରଳୟ ସମ୍ପର୍କୀୟ ବିସ୍ତୃତ ବିବରଣୀ ପ୍ରଦତ୍ତ ହୋଇଛି । ଏ ସମ୍ପର୍କରେ କୁହାଯାଇଛି ଯେ, ପ୍ରଳୟର ଚାରିପ୍ରକାର ଭେଦ ରହିଛି । ଯଥା:—ନିତ୍ୟ; ନୈମିତ୍ତିକ, ପ୍ରାକୃତ ଓ ଆତ୍ୟନ୍ତିକ । ଯେଉଁ ପ୍ରଳୟ ପ୍ରତିଦିନ ସଂଘଟିତ ହୁଏ, ତାହା

ନିତ୍ୟପ୍ରଳୟ ନାମରେ କଥିତ । ଯଥାः—ସୁଷୁପ୍ତି ଅର୍ଥାତ୍, ମନୁଷ୍ୟର ସୁଷୁପ୍ତି ଅବସ୍ଥା ଏକପ୍ରକାର ପ୍ରଳୟ ରୂପେ ପରିଗଣିତ ହୁଏ ।

ବ୍ରହ୍ମାଙ୍କର ଦିବସ ସମୟରେ ସର୍ଗର ଅସ୍ତିତ୍ୱ ରହିଥାଏ । ତାହାଙ୍କର ରାତ୍ରି ହୋଇଯିବା ପରେ ଭୂଃ, ଭୁବଃ, ସ୍ୱଃ, ଏହି ତିନିଲୋକରେ ପ୍ରଳୟ ସଂଘଟିତ ହୁଏ । ଏହା ନୈମିତ୍ତିକ ପ୍ରଳୟ ଅଟେ । ଏ ପ୍ରସଙ୍ଗରେ କୁହାଯାଇଛି

ତସ୍ୟାନ୍ତେ ପ୍ରଳୟଃ ପ୍ରୋକ୍ତୋ ବ୍ରହ୍ମନ୍ ! ନୈମିତ୍ତିକୋ ବୁଧୈଃ ।
ଭୂର୍ଲୋକୋଽଥ ଭୁବର୍ଲୋକଃ ସ୍ୱର୍ଲୋକଶ୍ଚ ବିନାଶିନଃ ।।

ମା.ପୁ ୪୬ ଅଧ୍ୟାୟ)

ବ୍ରହ୍ମାଙ୍କ ଦିବସର ସମାପ୍ତି ରୂପକ ନିମିତ୍ତ ଦ୍ୱାରା ସଂଘଟିତ ହେବାଯୋଗୁ ଏହା 'ନୈମିତ୍ତିକ' ପ୍ରଳୟ ନାମରେ ଅଭିହିତ । ବ୍ରହ୍ମାଙ୍କର ଦିବସର ପରିସମାପ୍ତି କେତେବେଳେ ଘଟି ପୃଥିବୀରେ ପ୍ରଳୟ ସଂଘଟିତ ହୁଏ, ସେ ସମ୍ପର୍କରେ ମାର୍କଣ୍ଡେୟପୁରାଣର ୪୬ଶ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ଯେ, ମନୁଷ୍ୟମାନଙ୍କର ଏକବର୍ଷ ଅବଧି ହେଉଛି ଦେବତାମାନଙ୍କର ଏକ ଅହୋରାତ୍ର । ଏହି କ୍ରମରେ ଦେବତାମାନଙ୍କର ବାର ସହସ୍ର ବର୍ଷ ହେଉଛି ଏକ ଚତୁର୍ଯୁଗୀ (କୃତ, ତ୍ରେତା, ଦ୍ୱାପର ଓ କଳି) । ଏକ ସହସ୍ର ଚତୁର୍ଯୁଗୀ ହେଉଛି ବ୍ରହ୍ମାଙ୍କର ଏକ ଦିନ । ଅର୍ଥାତ୍, ଏକ ସହସ୍ର ଚତୁର୍ଯୁଗୀ ଅତିବାହିତ ହେବାପରେ ପୃଥିବୀରେ ପ୍ରଳୟ ସଂଘଟିତ ହୁଏ । ଉକ୍ତ ପ୍ରଳୟ କାଳରେ ସମସ୍ତ ତ୍ରିଲୋକର ପ୍ରକୃତି ବିଲୟପ୍ରାପ୍ତ ହୁଏ । ଏହି ସମୟରେ ପୁରୁଷ ଓ ପ୍ରକୃତି ସମାନଧର୍ମା, ଅର୍ଥାତ୍ ନିଷ୍କ୍ରିୟ ଭାବରେ ଅବସ୍ଥିତ ହୋଇଯାଆନ୍ତି । ପ୍ରକୃତିଗତ ଏହି ମହାନ୍ ବିନାଶକୁ ପ୍ରାକୃତପ୍ରଳୟ କୁହାଯାଏ । ଏ ପ୍ରସଙ୍ଗରେ ନିମ୍ନୋକ୍ତ ଶ୍ଳୋକ ବିଶେଷ ଅନୁଧ୍ୟାନର ଯୋଗ୍ୟ—

ଯଦାତୁ ପ୍ରକୃତୌ ଯାତି ଲୟଂ ବିଶ୍ୱମିଦଂ ଜଗତ୍
ତଦୋଚ୍ୟତେ ପ୍ରାକୃତୋଽୟଂ ବିଦ୍ୱଦ୍‌ଭିଃ ପ୍ରତିସଞ୍ଚରଃ ।
ସ୍ୱାତ୍ମନ୍ୟବସ୍ଥିତେଽବ୍ୟକ୍ତେ ବିକାରେ ପ୍ରତିସଂହୃତେ
ପ୍ରକୃତିଃ ପୁରୁଷଶ୍ଚୈବ ସାଧର୍ମ୍ୟେଣାବତିଷ୍ଠତଃ ।

(ମାः ପୁ ୪୬ ଅ.)

**ବଂଶ—**

ପୁରାଣ ସାହିତ୍ୟରେ ବିଭିନ୍ନ ରାଜବଂଶର ଚରିତ, ଗୁଣାବଳୀ ତଥା ଶାସନ ପ୍ରଣାଳୀ ଇତ୍ୟାଦି ବିଷୟରେ ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । 'ମାର୍କଣ୍ଡେୟ ପୁରାଣ'ରେ ମଧ୍ୟ ବିଭିନ୍ନ ରାଜବଂଶର ଚରିତ, ଗୁଣାବଳୀ ଓ ଶାସନ ପ୍ରଣାଳୀ ପ୍ରଭୃତି ସଂପର୍କୀୟ ବିବରଣୀ ବହୁଳ ମାତ୍ରରେ ସନ୍ନିବେଶିତ ହୋଇଛି । ମାର୍କଣ୍ଡେୟ ପୁରାଣରେ ପାଠକ ମାନେ ଏହି ବିଷୟ ସ୍ପଷ୍ଟ ଭାବରେ ହୃଦୟଙ୍ଗମ କରି ପାରିବେ । ସୁତରାଂ, ଏ ସଂପର୍କରେ ଆଉ ଅଧିକ ଆଲୋଚନା ଅନାବଶ୍ୟକ ମନେହୁଏ ।

**ମନ୍ୱନ୍ତର—**

ଯେଉଁ ବ୍ୟକ୍ତି ସମଗ୍ର ପୃଥିବୀ ଉପରେ ନିଜର ଅଧିକାର ପ୍ରତିଷ୍ଠା ପୂର୍ବକ ଏକ ଆଦର୍ଶ ନୀତି ଅନୁଯାୟୀ ପୃଥିବୀକୁ ଶାସନକରେ, ତାହାକୁ ମନୁ କୁହାଯାଏ ଏବଂ ତାହାର ଶାସନ ନୀତି ତଥା ବଂଶ ପରଂପରାର ଶାସନ ଯେତେକାଳ ପର୍ଯ୍ୟନ୍ତ ପ୍ରତିଷ୍ଠିତ ହୋଇଥାଏ, ଉକ୍ତ ଅବଧିକୁ ଏକ ମନ୍ୱନ୍ତର ବୋଲି କୁହାଯାଏ । ଉକ୍ତ ମନ୍ୱନ୍ତରର ବୟସସୀମା ହେଉଛି ୭୧ ଚତୁର୍ଯୁଗ ବା ମନୁଷ୍ୟ ବର୍ଷରେ ତିନିକୋଟି ସତଷଠି ଲକ୍ଷ କୋଡ଼ିଏ ହଜାର ବର୍ଷ । ଏ ପ୍ରସଙ୍ଗରେ ନିମ୍ନଲିଖିତ ଶ୍ଳୋକ ବିଶେଷ ଅନୁଧ୍ୟାନର ଯୋଗ୍ୟ—

ମନ୍ୱନ୍ତରାଣାଂ ସଂଖ୍ୟାତା ସାଧିକା ହ୍ୟେକସପ୍ତତିଃ ।
ମାନୁଷେଣ ପ୍ରମାଣେନ ଶୃଣୁ ମନ୍ୱନ୍ତରଂ ଚ ମେ ॥
ତ୍ରିଂଶତ୍‌କୋଟ୍ୟସ୍ତୁ ସଂଖ୍ୟାତାଃ ସହସ୍ରାଣି ଚ ବିଂଶତିଃ ।
ସପ୍ତଷଷ୍ଟିସ୍ତଥାନ୍ୟାନି ନିୟୁତାନି ଚ ସଂଖ୍ୟୟା ॥
(ମାଃ ପୁଃ ୫୩ ଅ)

ଚଉଦଗୋଟି ମନ୍ୱନ୍ତର ଅତିବାହିତ ହେଲେ ବ୍ରହ୍ମାଙ୍କର ଏକ ଦିବସ ବ୍ୟତୀତ ହୁଏ । ପ୍ରତ୍ୟେକ ମନ୍ୱନ୍ତରରେ ଦେବତା, ସପ୍ତର୍ଷି, ଇନ୍ଦ୍ର, ମନୁ ଓ ତାହାଙ୍କ ରାଜବଂଶ ପରିବର୍ତ୍ତିତ ହେଉଥାନ୍ତି । ମାର୍କଣ୍ଡେୟ ପୁରାଣରେ ଚତୁର୍ଦ୍ଦଶ ସଂଖ୍ୟକ ମନ୍ୱନ୍ତରର ବର୍ଣ୍ଣନା ଦେଖିବାକୁ ମିଳେ । ଯଥା—

ସ୍ୱାୟମ୍ଭୁବୋ ମନୁଃ ପୂର୍ବଂ ମନୁଃ ସ୍ୱାରୋଚଷସ୍ତଥା
ଔତ୍ତମ ସ୍ତାମସଶ୍ଚୈବ ରୈବତଶ୍ଚାକ୍ଷୁଷସ୍ତଥା ।
ଷଡେତେ ମନବୋଽତୀତାସ୍ତଥା ବୈବସ୍ୱତୋଽଧୁନା
ସାବର୍ଣିଃ ପଞ୍ଚ ରୌଚ୍ୟାଶ୍ଚ ଭୌତ୍ୟାଶ୍ଚାଗାମିନ ସ୍ତ୍ୱମୀ ॥

(ମାଃ ପୁ. ୫୩ଅ)

ଅର୍ଥାତ୍, ସ୍ୱାୟମ୍ଭୁବ, ସ୍ୱାରୋଚଷ, ଔତ୍ତମ, ତାମସ, ରୈବତ, ଚାକ୍ଷୁଷ, ବୈବସ୍ୱତ, ସାବର୍ଣ୍ଣି, ଦକ୍ଷସାବର୍ଣି, ଧୀମାନ୍ ବ୍ରହ୍ମସାବର୍ଣି, ଧର୍ମସାବର୍ଣି, ରୁଦ୍ର-ସାବର୍ଣି, ରୌଚ୍ୟ ଓ ଭୌତ୍ୟ ।

ସମଗ୍ର ପୁରାଣଟିର ବିଭିନ୍ନ ଅଧ୍ୟାୟରେ ଉକ୍ତ ଚତୁର୍ଦ୍ଦଶ ସଂଖ୍ୟକ ମନୁ ଓ ମନ୍ୱନ୍ତରର ବର୍ଣ୍ଣନା ଅତି ବିସ୍ତୃତ ଓ ଚମତ୍କାର ଭାବରେ ପ୍ରଦତ୍ତ ହୋଇଛି । ଏ ପ୍ରସଙ୍ଗରେ ଆଉ ଅଧିକ ଆଲୋଚନା ଅନାବଶ୍ୟକ ।

ବଂଶାନୁ ଚରିତ—

ମାର୍କଣ୍ଡେୟ ପୁରାଣରେ ୫୦ଶ ଅଧ୍ୟାୟରୁ ଆରମ୍ଭ କରି ଶେଷ ଅଧ୍ୟାୟ ପର୍ଯ୍ୟନ୍ତ ବିଭିନ୍ନ ଅଧ୍ୟାୟରେ ସ୍ୱାୟମ୍ଭୁବ ପ୍ରଭୃତି ଚତୁର୍ଦ୍ଦଶ ମନୁ ଓ ସେମାନଙ୍କର ମନ୍ୱନ୍ତର ବିଷୟ ବର୍ଣ୍ଣିତ ହୋଇଛି । ଉକ୍ତ ପ୍ରତ୍ୟେକ ମନୁଙ୍କର ବଂଶାବଳୀ, ପରଂପରା ତଥା ସେମାନଙ୍କ ରାଜତ୍ୱର ବିବରଣୀ ଇତ୍ୟାଦି ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଛି । ମାର୍କଣ୍ଡେୟ ପୁରାଣର ପାଠକମାନେ ଏହି ବିଷୟ ସ୍ପଷ୍ଟ ଭାବରେ ଜ୍ଞାତହେବା ସ୍ୱାଭାବିକ । ସୁତରାଂ, ଏ ସଂପର୍କରେ ଆଉ ଅଧିକ ଆଲୋଚନା ଅନାବଶ୍ୟକ ।

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ, ପୁରାଣଶାସ୍ତ୍ରରେ ନିର୍ଦ୍ଦିଷ୍ଟ ପଞ୍ଚବିଧ ଲକ୍ଷଣ ମଧ୍ୟରୁ ସମସ୍ତ ଲକ୍ଷଣ ଯଥାଯଥ ଭାବରେ ମାର୍କଣ୍ଡେୟ ପୁରାଣରେ ସନ୍ନିବେଶିତ ହୋଇଛି । ଉକ୍ତ ପୁରାଣର ଆଲୋଚକ ମାନେ ନିଃସନ୍ଦେହ ଭାବରେ ଏଥିରେ ସଂପୂର୍ଣ୍ଣ ଏକମତ ହେବେ ।

## ମାର୍କଣ୍ଡେୟ ପୁରାଣରେ ଦେବୀତତ୍ତ୍ୱ !—

ଭାରତୀୟ ତନ୍ତ୍ର ସାହିତ୍ୟରେ ଦେବୀତତ୍ତ୍ୱ ବା ଶକ୍ତିତତ୍ତ୍ୱ ଏକ ପରମ ରହସ୍ୟମୟ ଓ ନିଗୂଢ଼ ଦୁର୍ଜ୍ଞେୟ ତତ୍ତ୍ୱ ଭାବରେ ରହିଆସିଛି । ଶକ୍ତିତତ୍ତ୍ୱ ସଂପର୍କରେ ପ୍ରାଚୀନ ଭାରତୀୟ ମନୀଷୀବୃନ୍ଦ ବହୁ ଗ୍ରନ୍ଥ ପ୍ରଣୟନ କରି ଯାଇଛନ୍ତି । ଶକ୍ତି ଉପାସନା ମୂଳକ ସମସ୍ତ ଗ୍ରନ୍ଥ ମଧ୍ୟରେ ମାର୍କଣ୍ଡେୟ ପୁରାଣାନ୍ତର୍ଗତ "ସପ୍ତଶତି ଚଣ୍ଡୀ" ସର୍ବାଧିକ ଲୋକପ୍ରିୟତା ହାସଲ କରିଛି । ମାର୍କଣ୍ଡେୟ ପୁରାଣର ୮୧ ଅଧ୍ୟାୟ ଠାରୁ ୯୩ ଅଧ୍ୟାୟ ମଧ୍ୟରେ ଜଗଜ୍ଜନନୀ ଭଗବତୀ ଦୁର୍ଗାଙ୍କର ଅଚିନ୍ତ୍ୟ ଶକ୍ତି ଓ ଅନନ୍ତ ମହିମାବିଷୟକ ବିଭିନ୍ନ ଚରିତ ବର୍ଣ୍ଣିତ ହୋଇଛି । ସମସ୍ତ ବିଷୟଟି ତିନିଭାଗରେ ବିଭକ୍ତ ହୋଇଛି । ଯଥା— ପ୍ରଥମ ଚରିତ, ମଧ୍ୟମ ଚରିତ ଓ ଉତ୍ତର ଚରିତ । ୮୧ତମ ଚରିତ ହେଉଛି ପ୍ରଥମ ଚରିତର ଅନ୍ତର୍ଭୁକ୍ତ ଏବଂ ଏଥି ମଧ୍ୟରେ ଦେବୀଙ୍କ ଆବିର୍ଭାବ ତଥା ତାହାଙ୍କ ଦ୍ୱାରା ମଧୁକୈଟଭ ଅସୁରଙ୍କ ବଧ ବିଷୟ ବର୍ଣ୍ଣିତ ହୋଇଛି । ୮୨, ୮୩ ଓ ୮୪ ଅଧ୍ୟାୟ ମଧ୍ୟମ ନାମରେ ଖ୍ୟାତ ଏବଂ ଏଥିରେ ଦେବୀ ଦୁର୍ଗାଙ୍କ ଆବିର୍ଭାବ ତଥା ମହିଷାସୁର ବଧ ବିଷୟକ ଉପାଖ୍ୟାନ ବର୍ଣ୍ଣିତ ହୋଇଛି । ଅବଶିଷ୍ଟ ୮୫ ଅଧ୍ୟାୟଠାରୁ ୯୩ ଅଧ୍ୟାୟ ପର୍ଯ୍ୟନ୍ତ ଅଂଶ ଉତ୍ତର ଚରିତ ନାମରେ ଖ୍ୟାତ । ଏଥିମଧ୍ୟରେ ଦେବୀଙ୍କ ଦ୍ୱାରା ଧୂମ୍ରଲୋଚନ, ଚଣ୍ଡ, ମୁଣ୍ଡ, ରକ୍ତବୀଜ, ଶୁମ୍ଭ, ନିଶୁମ୍ଭ ପ୍ରଭୃତି ଅସୁରମାନଙ୍କ ସଂହାର, ନାରାୟଣୀ ସ୍ତୁତି ଓ ଦେବୀ ମହାତ୍ମ୍ୟର ଫଳଶ୍ରୁତି ତଥା ଦେବୀଙ୍କର ବର ପ୍ରଦାନ ପ୍ରଭୃତି ବିଷୟ ବର୍ଣ୍ଣିତ ହୋଇଛି । ମୋଟ ଉପରେ ସମଗ୍ର ତେରଗୋଟି ଅଧ୍ୟାୟରେ ଶକ୍ତିମୟୀ ଦେବୀଙ୍କର ଅଚିନ୍ତ୍ୟ ଶକ୍ତି ବିଷୟ ବର୍ଣ୍ଣିତ ହେବା ସଙ୍ଗେସଙ୍ଗେ ତାହାଙ୍କୁ ବିଶ୍ୱବ୍ରହ୍ମାଣ୍ଡର ଅଧିକାରିଣୀ ତଥା ବ୍ରହ୍ମା ବିଷ୍ଣୁ ଓ ମହେଶ୍ୱରଙ୍କ ଠାରୁ ମଧ୍ୟ ମହିମାଶାଳିନୀ ବୋଲି ପ୍ରତିପାଦନ କରାଯାଇଛି । ଏ ପ୍ରସଙ୍ଗରେ ୮୧ତମ ଅଧ୍ୟାୟରେ ବର୍ଣ୍ଣିତ ବ୍ରହ୍ମାଙ୍କଦ୍ୱାରା କୃତ ଦେବୀ ସ୍ତୁତିର ନିମ୍ନୋକ୍ତ ଅଂଶ ଅନୁଧ୍ୟାନର ଯୋଗ୍ୟ—

ଯୟା ତ୍ୱୟା ଜଗତ୍ ସ୍ରଷ୍ଟା ଜଗତ୍ପାତାଽତ୍ତି ଯୋ ଜଗତ୍ ॥ ୮୩ ॥
ସୋଽପି ନିଦ୍ରାବଶଂ ନୀତଃ କସ୍ତ୍ୱାଂ ସ୍ତୋତୁମିହେଶ୍ୱରଃ ।

ବିଷ୍ଣୁଃ ଶରୀର ଗ୍ରହଣ ମହମୀଶାନ ଏବ ଚ ॥ ୮୪ ॥
କାରିତାସ୍ତେ ଯତୋଽତସ୍ତ୍ୱାଂ କଃ ସ୍ତୋତୁଂ ଶକ୍ତିମାନ୍ ଭବେତ୍ ॥୦୫ ॥

ଅର୍ଥାତ୍ ବ୍ରହ୍ମା କହୁଛନ୍ତି—ଜଗତର ସୃଷ୍ଟି, ପାଳନ ଓ ସଂହାରକାରୀ ନାରାୟଣଙ୍କୁ ମଧ୍ୟ ଯେ ନିଦ୍ରାଧୀନ କରି ଦିଅନ୍ତି ଏବଂ ଯାହାଙ୍କ ଇଚ୍ଛାନୁଯାୟୀ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ଶରୀରଧାରଣ କରିବାକୁ ପଡ଼େ, ସେହି ମହାମହିମଶାଳିନୀ ମହାମାୟାଙ୍କ ସ୍ତୁତି କିଏ ଅବା କରିବାକୁ ସମର୍ଥ ହେବ ? ସେହିପରି ଉକ୍ତ ଅଧ୍ୟାୟର ନିମ୍ନୋକ୍ତ ଅଂଶରେ ବର୍ଣ୍ଣିତ ଦେବୀଙ୍କର ଅସୀମ ଶକ୍ତି ବିଷୟ ମଧ୍ୟ ଅନୁଧ୍ୟାନ ଯୋଗ୍ୟ—

ଜ୍ଞାନିନାମପି ଚେତାଂସି ଦେବୀ ଭଗବତୀ ହିସା ॥ ୫୫॥
ବଳାଦାକୃଷ୍ୟ ମୋହାୟ ମହାମାୟା ପ୍ରୟଚ୍ଛତି
ତୟା ବିସୃଜ୍ୟତେ ବିଶ୍ୱଂ ଜଗଦେତଚ୍ଚରାଚରମ୍ ॥ ୫୬ ॥
ସୈଷା ପ୍ରସନ୍ନା ବରଦା ନୃଣାଂ ଭବତି ମୁକ୍ତୟେ ।
ସା ବିଦ୍ୟା ପରମା ମୁକ୍ତେର୍ହେତୁଭୂତା ସନାତନୀ ॥ ୫୭ ॥
ସଂସାର ବନ୍ଧହେତୁଶ୍ଚ ସୈବ ସର୍ବେଶ୍ୱରେଶ୍ୱରୀ ॥ ୫୮ ॥

ଅର୍ଥାତ୍; ସେହି ଭଗବତୀ ମହାମାୟା ଦେବୀ ଜ୍ଞାନୀମାନଙ୍କର ଚିତ୍ତକୁ ମଧ୍ୟ ବଳପୂର୍ବକ ଆକର୍ଷଣ କରିନେଇ ମୋହଗ୍ରସ୍ତ କରି ଦିଅନ୍ତି । ସେ ହିଁ ଏହି ସମଗ୍ର ବିଶ୍ୱର ସ୍ରଷ୍ଟା । ସେ ପ୍ରସନ୍ନ ହେଲେ ଲୋକମାନଙ୍କୁ ମୁକ୍ତିଲାଭ ନିମିତ୍ତ ବର ପ୍ରଦାନ କରନ୍ତି । ସେ ହେଉଛନ୍ତି ପରାବିଦ୍ୟା, ସଂସାର ବନ୍ଧନ ଓ ମୋହର ହେତୁଭୂତା ସନାତନୀ ଦେବୀ ଏବଂ ପୂର୍ଣ୍ଣ ପରଂବ୍ରହ୍ମ ଈଶ୍ୱରଙ୍କର ମଧ୍ୟ ଅଧିଶ୍ୱରୀ ।

ମୋଟ ଉପରେ କହିବାକୁ ଗଲେ, ସମଗ୍ର ତେରଗୋଟି ଅଧ୍ୟାୟରେ ଦେବୀଙ୍କର ଅଚିନ୍ତ୍ୟ ଶକ୍ତି ବିଷୟ ସ୍ପଷ୍ଟଭାବରେ ବର୍ଣ୍ଣିତ ହୋଇଛି । ଭାରତ-ବର୍ଷରେ ରଚିତ ଶକ୍ତିଉପାସନାମୂଳକ ସମସ୍ତ ଗ୍ରନ୍ଥ ମଧ୍ୟରେ ମାର୍କଣ୍ଡେୟ ପୁରାଣର ଏହି ଅଂଶ ସର୍ବାପେକ୍ଷା ଅଧିକ ଲୋକପ୍ରିୟତା ଅର୍ଜନ କରିଛି । ଶକ୍ତି

ଉପାସକ ମାନେ ନିଜର ସାଧନା ନିମିତ୍ତ ନିର୍ଦ୍ଧିଷ୍ଟ ଭାବରେ ଏହି ଅଂଶର କରାବଲମ୍ବ ଆବଶ୍ୟକ କରନ୍ତି । ଏହି କାରଣରୁ ଉକ୍ତ ତେରଗୋଟି ଅଧ୍ୟାୟକୁ ନେଇ "ସପ୍ତଶତୀଚଣ୍ଡୀ" ସ୍ୱତନ୍ତ୍ର ଗ୍ରନ୍ଥ ଆକାରରେ ଉପଲବ୍ଧ ହେଉଛି । ଅତଏବ ମାର୍କଣ୍ଡେୟ ପୁରାଣ ବର୍ଣ୍ଣିତ ଶକ୍ତିତତ୍ତ୍ୱ ଭାରତୀୟ ଶକ୍ତି ଉପାସନା ମୂଳକ ରଚନାବଳୀ ମଧ୍ୟରେ ସର୍ବଶ୍ରେଷ୍ଠ ଆସନର ଅଧିକାରୀ ।

## ମାର୍କଣ୍ଡେୟ ପୁରାଣରେ ସୂର୍ଯ୍ୟତତ୍ତ୍ୱ ଓ ସୂର୍ଯ୍ୟ ଉପାସନା :—

ମାର୍କଣ୍ଡେୟ ପୁରାଣରେ ୧୦୧ତମ ଅଧ୍ୟାୟରୁ ଆରମ୍ଭ କରି ୧୧୦ ଅଧ୍ୟାୟ ମଧ୍ୟରେ ସୂର୍ଯ୍ୟଦେବଙ୍କ ଉପାସନା ଓ ମହିମା ବିଷୟ ବର୍ଣ୍ଣିତ ହୋଇଛି । ହିନ୍ଦୁ ଧର୍ମର ସୂର୍ଯ୍ୟ ଉପାସକମାନଙ୍କର ଏହା ଏକ ଅତ୍ୟନ୍ତ ଆଦରଣୀୟ ଅଂଶ ରୂପେ ଗୃହୀତ ହୋଇଥାଏ । ୧୦୧, ୧୦୨ ଓ ୧୦୩ ଅଧ୍ୟାୟରେ କୁହା-ଯାଇଛି ଯେ, ସୃଷ୍ଟିର ପ୍ରାକ୍‌କାଳରେ ସମଗ୍ର ବିଶ୍ୱ ଅନ୍ଧକାରମୟ ହୋଇପଡ଼ିଥିଲା । ସର୍ବପ୍ରଥମେ ଏଥି ମଧ୍ୟରେ ଏକ ବିଶାଳକାୟ ଅଣ୍ଡ ପ୍ରକଟିତ ହେଲା । ଉକ୍ତ ଅଣ୍ଡ ମଧ୍ୟସ୍ଥିତ ଲୋକସ୍ରଷ୍ଟା ବ୍ରହ୍ମା ଏହି ଅଣ୍ଡକୁ ଭେଦକଲେ ଏବଂ ତନ୍ମଧ୍ୟରୁ ସର୍ବପ୍ରଥମେ ପରମ ତେଜସ୍ୱୀ ମହାନ୍ ଶବ୍ଦ 'ଓଁ' ପ୍ରକଟିତ ହେଲା । ଏହାପରେ କ୍ରମଶଃ ଏହାର ପୂର୍ବମୁଖରୁ ଋକ୍ ବେଦ, ଦକ୍ଷିଣ ମୁଖରୁ ଯଜୁର୍ବେଦ, ପଶ୍ଚିମରୁ ସାମବେଦ ଓ ଉତ୍ତର ମୁଖରୁ ଅଥର୍ବ ବେଦ ପ୍ରକଟିତ ହେଲା । ଉକ୍ତ ଚତୁର୍ବେଦ ମଧ୍ୟ ଅମିତ ତେଜସ୍ୱୀ ଥିଲେ । ଅନନ୍ତର ଓଁ କାରର ମହାନ୍ ତେଜ ଓ ଚତୁର୍ବେଦର ତେଜରାଶି, ଏହି ସମସ୍ତ ତେଜ ଏକତ୍ରିତ ହୋଇ ଏକ ବିଶାଳକାୟ ତେଜପୁଞ୍ଜ ସୃଷ୍ଟି ହେଲା । ସର୍ବପ୍ରଥମେ ଏହି ବିଶାଳକାୟ ମହାନ୍ ତେଜପୁଞ୍ଜ ସୃଷ୍ଟି ହୋଇଥିବା ଯୋଗୁଁ ଏହା ଆଦିତ୍ୟ ନାମରେ ଅଭିହିତ ହେଲା । ଏହି ଆଦିତ୍ୟ ହିଁ ସୂର୍ଯ୍ୟଦେବଙ୍କ ଆଦିମୂର୍ତ୍ତି । ସେତେବେଳେ ଆଦିତ୍ୟଙ୍କର ତେଜରାଶି ଏପରି ପ୍ରଚଣ୍ଡ ଥିଲା ଯେ, ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ଯେକୌଣସି ବସ୍ତୁ ସୃଷ୍ଟି ମାତ୍ରେ ହିଁ ଆଦିତ୍ୟଙ୍କ ତେଜୋରାଶି ଦ୍ୱାରା ଭସ୍ମୀଭୂତ ହୋଇ ଯାଉଥିଲା । ବିଶ୍ୱ ସୃଷ୍ଟିର ଏହି ସଂକଟକୁ ଦୂର କରିବା ନିମିତ୍ତ ବ୍ରହ୍ମା ଦୀର୍ଘକାଳ ଧରି ଆଦିତ୍ୟଙ୍କୁ ସ୍ତୁତି କରିବାକୁ ଲାଗିଲେ । ତାହାଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ସୂର୍ଯ୍ୟ ନିଜର

ବକ୍ଷିପ୍ତ ତେଜରାଶିକୁ ଏକତ୍ରିତ କରିଦେଇ ଆକାଶରେ ଅବସ୍ଥାନ କଲେ । ଫଳରେ ପୃଥିବୀ ଉପରୁ ସୂର୍ଯ୍ୟ ତେଜର ଅତ୍ୟନ୍ତ ପ୍ରଖରତା ଦୂର ହେଲା ଏବଂ ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟି ସର୍ଜନାର ମାର୍ଗ ସୁଗମ ହୋଇପଡ଼ିଲା ।

୧୦୪ ଅଧ୍ୟାୟରେ ଦେବଦାନବ ଯୁଦ୍ଧ ଏବଂ ଦେବତାମାନଙ୍କ ପରାଜୟ ଫଳରେ ଦେବମାତା ଅଦିତିଙ୍କର ଦୁଃଖ ବିଷୟ ବର୍ଣ୍ଣିତ ହୋଇଛି । ଦେବତାମାନଙ୍କୁ ପୁନର୍ବାର ଯୁଦ୍ଧରେ ବିଜୟୀ କରାଇବା ନିମିତ୍ତ ଅଦିତି ଅତି ନିଷ୍ଠାର ସହିତ ଆଦିତ୍ୟ ଦେବଙ୍କ ଉପାସନାରେ ମନୋନିବେଶ କଲେ । ୧୦୫ତମ ଅଧ୍ୟାୟରେ ବର୍ଣ୍ଣିତହୋଇଛି ଯେ, ଅଦିତିଙ୍କ ଉପାସନା ଓ ସ୍ତୁତିରେ ସନ୍ତୁଷ୍ଟ ହୋଇ ଆଦିତ୍ୟଦେବ ତାହାଙ୍କୁ ବରଦେବା ନିମିତ୍ତ ଆବିର୍ଭୂତ ହେଲେ । ସେତେବେଳେ ଅଦିତି ତାହାଙ୍କୁ ପ୍ରାର୍ଥନା କଲେ, "ଦୈତ୍ୟମାନଙ୍କ ଦ୍ୱାରା ପରାଜିତ ମୋର ପୁତ୍ର ଦେବତାମାନଙ୍କୁ ପୁନର୍ବାର ବିଜୟୀ କରାଇବା ପାଇଁ ଆପଣ ମୋର ପୁତ୍ର ଭାବରେ ଜନ୍ମଲାଭ କରନ୍ତୁ ।" ଫଳରେ ଆଦିତ୍ୟ-ଦେବ ଅଦିତିଙ୍କ ଗର୍ଭରୁ ତାହାଙ୍କର ପୁତ୍ର ଭାବରେ ଜନ୍ମଗ୍ରହଣ କଲେ । ଏହାପରେ ଦେବଦାନବଙ୍କ ମଧ୍ୟରେ ତୁମୁଳ ସଂଗ୍ରାମ ହେଲା । ଆଦିତ୍ୟଦେବ ନିଜର ପ୍ରଚଣ୍ଡ ଦାହକ କିରଣ ପ୍ରୟୋଗ ପୂର୍ବକ ଅସୁରମାନଙ୍କୁ ଭସ୍ମ କରିଦେଲେ । ଫଳରେ ଦେବତାମାନେ ବିଜୟୀ ହୋଇ ପୁନର୍ବାର ସ୍ୱର୍ଗପୁରକୁ ଅଧିକାର କଲେ ।

୧୦୬ ତମ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ଯେ, ଦେବଦାନବ ଯୁଦ୍ଧରେ ମାର୍ତ୍ତଣ୍ଡ ଯେଉଁ ଅଲୌକିକ ଶକ୍ତି ଓ ସାମର୍ଥ୍ୟ ପ୍ରଦର୍ଶନ କଲେ, ତଦ୍ୱାରା ପ୍ରଜାପତି ବିଶ୍ୱକର୍ମା ତାହାଙ୍କ ଉପରେ ପ୍ରସନ୍ନ ହୋଇ ନିଜର କନ୍ୟା ସଂଜ୍ଞାଙ୍କୁ ତାହାଙ୍କ ହସ୍ତରେ ଅର୍ପଣ କଲେ । ଏହାପରେ କାଳକ୍ରମେ ସଂଜ୍ଞାଙ୍କ ଗର୍ଭରୁ ବୈବସ୍ୱତ, ଯମ ଓ ଯମୁନା ଜନ୍ମଲାଭ କଲେ । ସୂର୍ଯ୍ୟଙ୍କର ପ୍ରଖର କିରଣ ସଂଜ୍ଞାଙ୍କ ପକ୍ଷରେ ଅସହ୍ୟ ହୋଇପଡ଼ିବା ଫଳରେ ତାହାଙ୍କ ତୃପ୍ତି ବିଧାନ ନିମିତ୍ତ ନିଜର କିରଣରାଜିର ଉଗ୍ରତା ହ୍ରାସକରିବା ପାଇଁ ସୂର୍ଯ୍ୟ ନିଜର ଶ୍ୱଶୁର ବିଶ୍ୱକର୍ମାଙ୍କୁ ଅନୁରୋଧ କଲେ । ଫଳରେ ବିଶ୍ୱକର୍ମା ତାହାଙ୍କର କିରଣରାଜି ବିକର୍ତ୍ତନ କରି ତାହାଙ୍କ ଶରୀରକୁ ସୌମ୍ୟ, ସହ୍ୟ ଓ ସୁନ୍ଦର କରିଦେଲେ ।

୧୦୭ତମ ଅଧ୍ୟାୟରେ ବିଶ୍ୱକର୍ମାଙ୍କ ଦ୍ୱାରା ସୂର୍ଯ୍ୟଦେବଙ୍କର ଏକ ଗମ୍ଭୀର ଓ ଭକ୍ତିଉଦ୍ରେକକାରୀ ସ୍ତୁତି ସନ୍ନିବେଶିତ ହୋଇଛି ।

ଉପରୋକ୍ତ ବିଷୟବସ୍ତୁ ସଂପର୍କରେ ଅନୁଧ୍ୟାନ କଲେ ଜଣାଯାଏ ଯେ, ମାର୍କଣ୍ଡେୟ ପୁରାଣରେ ସୂର୍ଯ୍ୟଦେବଙ୍କର ପ୍ରଧାନତଃ ତିନିଗୋଟି ରୂପ ଆମେ ଦେଖିବାକୁ ପାଉ । ପ୍ରଥମ ରୂପ ହେଉଛି, ଆକାଶମଣ୍ଡଳରେ ଦୃଶ୍ୟମାନ ଗୋଲକାର କିରଣମୟ ମହାନ୍ ତେଜପୁଞ୍ଜ । ଦ୍ୱିତୀୟ ରୂପ ହେଉଛି— ଉପାସକମାନଙ୍କର ସୂର୍ଯ୍ୟ, ଯେ ଭକ୍ତମାନଙ୍କର ଅଭୀଷ୍ଟ ପୂରଣ ପୂର୍ବକ ସେମାନଙ୍କୁ ବରଦାନ କରନ୍ତି । ଏହି ପର୍ଯ୍ୟାୟରେ ଅଦିତିଙ୍କ ପୁତ୍ର ତଥା ସଂଜ୍ଞାଙ୍କ ପତି ଭାବରେ ମଧ୍ୟ ଆମ୍ଭେମାନେ ସୂର୍ଯ୍ୟଙ୍କୁ ଦେଖିବାକୁ ପାଉ । ସୂର୍ଯ୍ୟଙ୍କର ତୃତୀୟ ରୂପ ହେଉଛି —ବେଦ, ପୁରାଣ ଇତ୍ୟାଦି ସମସ୍ତ ଶାସ୍ତ୍ରରେ ପ୍ରତିପାଦିତ ତ୍ରିଗୁଣାତ୍ମିକା ପ୍ରକୃତିର ଅଧୀଶ୍ୱର, ସମଗ୍ର ବିଶ୍ୱପ୍ରପଞ୍ଚର ଅଧିଷ୍ଠାନ, ପରାତ୍ପର, ଶୁଦ୍ଧ, ଶାଶ୍ୱତ ଓ ସଚ୍ଚିଦାନନ୍ଦ ବ୍ରହ୍ମ ।

## ମାର୍କଣ୍ଡେୟ ପୁରାଣର ମହିମା—

ଭାରତୀୟ ପୁରାଣଶାସ୍ତ୍ରର ଶେଷ ପର୍ଯ୍ୟାୟରେ ବର୍ଣ୍ଣିତ "ଫଳଶ୍ରୁତିଃ" ବା ଉକ୍ତ ଗ୍ରନ୍ଥର ମହିମାବର୍ଣ୍ଣନା ସେହି ଶାସ୍ତ୍ର ବା ପୁରାଣର ଏକ ବିଶିଷ୍ଟ ଅଙ୍ଗରୂପେ ପରିଗଣିତ ହୋଇଥାଏ । ସେହି ପୁରାଣ ପ୍ରତି ଲୋକମାନଙ୍କ ଆଗ୍ରହ ସୃଷ୍ଟି ପୂର୍ବକ ସେମାନଙ୍କୁ ସେଥିପ୍ରତି ଆକର୍ଷଣ କରିବା ନିମିତ୍ତ ସମ୍ଭବତଃ ଏହି ଅଂଶ ପୁରାଣରେ ଶେଷଭାଗରେ ସନ୍ନିବେଶିତ ହୋଇଥାଏ । ପୁରାଣ ପାଠକରିବା ଦ୍ୱାରା କି କି ଫଳଲାଭ ହୁଏ, ମୂଳତଃ ସେହି ବିଷୟ ଏଥିରେ ପ୍ରତିପାଦିତ ହୋଇଥାଏ । ଏହି ଅଂଶ ପୁରାଣରେ ସନ୍ନିବେଶିତ ହେଲେ ହିଁ ପୁରାଣ ପରିପୂର୍ଣ୍ଣତା ଲାଭକରେ ।

ମାର୍କଣ୍ଡେୟ ପୁରାଣର 'ଫଳଶ୍ରୁତି' ବା ମହିମାବର୍ଣ୍ଣନା ପ୍ରସଙ୍ଗରେ ଏହାର ଶେଷ ଅଧ୍ୟାୟରେ (୧୩୭ଅଧ୍ୟାୟ) ଉଲ୍ଲିଖିତ ହୋଇଛି—

ଚତୁଃପ୍ରଶ୍ନସମାପେତଂ ପୁରାଣଂ ମାର୍କଣ ସଂଜ୍ଞକମ୍ ।
ଶ୍ରୁତେନ ନଶ୍ୟତେ ପାପଂ କଲ୍ପକୋଟି ଶତୈଃ କୃତମ୍ ।।

ବ୍ରହ୍ମହତ୍ୟାଦିପାପାନି ତଥାନ୍ୟାନ୍ୟଶୁଭାନି ଚ ।
ତାନି ସର୍ବାଣି ନଶ୍ୟନ୍ତି ତୂଳଂ ବାତାହତଂ ଯଥା ॥
ପୁଷ୍କରସ୍ନାନଜଂ ପୁଣ୍ୟଂ ଶ୍ରବଣାଦସ୍ୟ ଜାୟତେ ।
ବନ୍ଧ୍ୟା ବା ମୃତବତ୍ସା ବା ଶୃଣୋତି ଯଦି ତତ୍ତ୍ୱତଃ ॥
ସାଽପି ବୈ ଲଭତେ ପୁତ୍ରଂ ସର୍ବଲକ୍ଷଣସଂଯୁତମ୍ ।
ଧନଧାନ୍ୟମବାପ୍ନୋତି ସ୍ୱର୍ଗଲୋକଂ ତଥାଽକ୍ଷୟମ୍ ॥
ସୁରାପଶ୍ଚୋଗ୍ରକର୍ମା ଚ ଶ୍ରୁତ୍ୱୈତତ୍ସକଳଂ ନରଃ ।
ସର୍ବପାପବିନିର୍ମୁକ୍ତଃ ସ୍ୱର୍ଗଲୋକେ ମହୀୟତେ ॥
ଆୟୁରାରୋଗ୍ୟମୈଶ୍ୱର୍ଯ୍ୟଂ ଧନଧାନ୍ୟ-ସୁତାଦିକମ୍ ।
ବଂଶଂ ଚୈବ ବ୍ୟବଚ୍ଛେଦୀ ପ୍ରାପ୍ନୋତି ଦ୍ୱିଜସତ୍ତମ !

ଅର୍ଥାତ୍ ଗୃହଗୋଷ୍ଠି ପ୍ରସଙ୍ଗରେ ଆରମ୍ଭ ହୋଇଥିବା ଏହି ମାର୍କଣ୍ଡେୟ ନାମକ ପୁରାଣକୁ ଶ୍ରବଣ କରିବାଦ୍ୱାରା ଶତକୋଟି କଳୁଷିତ ପାପ ନଷ୍ଟ ହୋଇଯାଏ । ତୁଳାକୁ ଯେଉଁପରି ପବନ ଉଡ଼ାଇ ନେଇଯାଏ, ଏହାକୁ ଶ୍ରବଣ କରିବାଦ୍ୱାରା ସେହିପରି ବ୍ରହ୍ମହତ୍ୟା ଜନିତ ପାପ ଓ ଅନ୍ୟାନ୍ୟ ବିବିଧ ଅଶୁଭ କର୍ମହେତୁକ ପାପ ଦୂରୀଭୂତ ହୁଏ । ଏହାର ଶ୍ରବଣଦ୍ୱାରା ପୁଷ୍କରତୀର୍ଥରେ ସ୍ନାନଜନିତ ପୁଣ୍ୟଲାଭ ହୁଏ । ବନ୍ଧ୍ୟା ଅଥବା ମୃତବତ୍ସା ସ୍ତ୍ରୀ ଏହି ପୁରାଣ ଶ୍ରବଣ କରିବାଦ୍ୱାରା ସର୍ବଲକ୍ଷଣ ସଂପନ୍ନ ପୁତ୍ର ଲାଭକରିବା ସଙ୍ଗେସଙ୍ଗେ ଧନଧାନ୍ୟ ଓ ସ୍ୱର୍ଗଲୋକ ଲାଭକରେ । ସୁରାପାୟୀ ଓ ଉଗ୍ରକର୍ମା ବ୍ୟକ୍ତି ଏହି ସଂପୂର୍ଣ୍ଣ ପୁରାଣଟିକୁ ଶ୍ରବଣ କରିବାଦ୍ୱାରା ସମସ୍ତ ପାପରୁ ମୁକ୍ତହୋଇ ସ୍ୱର୍ଗଲୋକରେ ପୂଜିତ ହୁଏ । ଏହି ପୁରାଣ ଶ୍ରବଣକାରୀ ବ୍ୟକ୍ତି ଆୟୁ, ଆରୋଗ୍ୟ, ଐଶ୍ୱର୍ଯ୍ୟ, ଧନ, ଧାନ୍ୟ, ପୁତ୍ର ଓ ବଂଶ ପ୍ରାପ୍ତହୁଏ ।

ଗଭୀର ଅନୁଧ୍ୟାନ କଲେ ଜଣାଯାଏ ଯେ, ଧର୍ମବିଶ୍ୱାସୀ ଭାରତୀୟ ହିନ୍ଦୁ ସମାଜରେ ମାର୍କଣ୍ଡେୟ ପୁରାଣକୁ ଲୋକପ୍ରିୟ କରାଇବାପାଇଁ ପୁରାଣକାରଙ୍କର ଏହା ଏକ ଚତୁର ଓ ବିବେକପୂର୍ଣ୍ଣ ପଦକ୍ଷେପ । ଦ୍ୱିତୀୟତଃ ଉକ୍ତ ପୁରାଣରେ ପ୍ରତିପାଦିତ ବିଭିନ୍ନ ଧର୍ମ ଓ ତତ୍ତ୍ୱମୂଳକ ବିଷୟବସ୍ତୁର ଶ୍ରବଣ ଓ ମନନ ଦ୍ୱାରା ବ୍ୟକ୍ତିର ଚିତ୍ତ ବିଶୁଦ୍ଧି ଓ ଚରିତ୍ରସଂସ୍କାର ଘଟିବା ସ୍ୱାଭାବିକ । ଏହାଦ୍ୱାରା ଏକ

ସୁସ୍ଥ ଓ ସୁସଭ୍ୟ ସମାଜ ଗଠିତ ହୋଇପାରିବ । ଏହି ଦୃଷ୍ଟିରୁ ମଧ୍ୟ ମାର୍କଣ୍ଡେୟ ପୁରାଣର ଫଳଶ୍ରୁତି ବା ଉପସଂହାରଭାଗ ଭାରତୀୟ ଜନଜୀବନରେ ବିଶେଷ ପ୍ରଭାବଶାଳୀ ଅଂଶ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ପରିଶେଷରେ ଏତିକିମାତ୍ର ଉଲ୍ଲେଖଯୋଗ୍ୟ ଯେ, ସମଗ୍ର ମାର୍କଣ୍ଡେୟ ପୁରାଣ ହେଉଛି ଭାରତୀୟ ସଂସ୍କୃତି ଓ ଆଧ୍ୟାତ୍ମିକ ଚିନ୍ତାଧାରାର ଏକ ବିଶାଳ ଭଣ୍ଡାର । ଏଥିମଧ୍ୟରେ ଭାରତୀୟ ଜନଜୀବନର ମହାନ୍ ସତ୍ୟ ଓ ଶାଶ୍ୱତ ଆତ୍ମାବିଷୟକ ବହୁମୂଲ୍ୟ ତତ୍ତ୍ୱରାଜି ସଞ୍ଚିତ ହୋଇ ରହିଛି । ଏହାକୁ ଅଧ୍ୟୟନ କରିବାଦ୍ୱାରା ଆର୍ଯ୍ୟାବର୍ତ୍ତ ଭୂଖଣ୍ଡର ଧାର୍ମିକ, ସାଂସ୍କୃତିକ, ଆଧ୍ୟାତ୍ମିକ ଓ ସାମାଜିକ ପରଂପରା ସଂପର୍କରେ ଯଥାର୍ଥ ଜ୍ଞାନ ଲାଭହୁଏ । ଏଥି ମଧ୍ୟରେ ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ପ୍ରଭୃତି ବିଭିନ୍ନ ବିଦ୍ୟାର ବିଶଦ୍ ବର୍ଣ୍ଣନା ସନ୍ନିବେଶିତ ହୋଇଛି । ଜନଜୀବନର ସମସ୍ତ ମୁଖ୍ୟ ପର୍ଯ୍ୟାୟର ଚିତ୍ର ଏଥି ମଧ୍ୟରେ ଅଙ୍କିତ ହୋଇଛି । ମାର୍କଣ୍ଡେୟ ପୁରାଣରେ ପାଠକମାନେ ସ୍ପଷ୍ଟ ହୃଦୟଙ୍ଗମ କରିପାରିବେ ଯେ, ବିଶ୍ୱର ବିଭିନ୍ନପ୍ରକାର ଜ୍ଞାନବିଜ୍ଞାନ, ମନୁଷ୍ୟ ମସ୍ତିଷ୍କର ବିବିଧକଳ୍ପନା ବା ଯୋଜନାରାଜିର ଅପୂର୍ବ ସମାବେଶ ତଥା ଜନଜୀବନର ସମସ୍ତ ବିଶିଷ୍ଟ ଅଙ୍ଗର ମନୋଜ୍ଞ ନିରୂପଣାତ୍ମକ ପ୍ରକାଶ ଏଥି ମଧ୍ୟରେ ସମ୍ଭବ ହୋଇଛି । ଯେଉଁ ଆଧ୍ୟାତ୍ମିକ ଓ ଦାର୍ଶନିକ ତତ୍ତ୍ୱରାଜି ଅତ୍ୟନ୍ତ ଗୂଢ଼ ତଥା କଠିନ ଏବଂ ଅନ୍ୟକୌଣସି ମାଧ୍ୟମରେ ହୃଦୟଙ୍ଗମ କରିବା କଷ୍ଟକର, ଉକ୍ତ ତତ୍ତ୍ୱରାଜିକୁ ସର୍ବଜନବୋଧ ଶୈଳୀ ଓ ସରଳଭାଷାରେ ବିଭିନ୍ନ ଆଖ୍ୟାନ ଛଳରେ ବୁଝାଇ ଦିଆଯାଇଛି । ଏହି ଦୃଷ୍ଟିରୁ ଭାରତବର୍ଷର ସ୍ୱରୂପ, ଏହାର ଜନଜୀବନ, ଆଧ୍ୟାତ୍ମିକ ଓ ଦାର୍ଶନିକ ସଂସ୍କୃତି ଇତ୍ୟାଦି ସଂପର୍କରେ ବାସ୍ତବ ଜ୍ଞାନଲାଭ କରିବା ନିମିତ୍ତ ମାର୍କଣ୍ଡେୟ ପୁରାଣର ଅଧ୍ୟୟନ ଓ ଅନୁଶୀଳନ ଏକାନ୍ତ ଅପରିହାର୍ଯ୍ୟ ।

# ସ୍କନ୍ଦ ପୁରାଣ
# ଏକ ପର୍ଯ୍ୟାଲୋଚନା

ଅଧ୍ୟାପକ ଶରତଚନ୍ଦ୍ର କର

ପୁରାଣ ହେଉଛି ପ୍ରାଚୀନ ଭାରତୀୟ ଜ୍ଞାନର ବିଶ୍ୱକୋଷ । ପ୍ରାଚୀନ ଭାରତର ସାମାଜିକ, ଆଧ୍ୟାତ୍ମିକ ଓ ରାଜନୈତିକ ଇତିହାସର ଉପାଦାନ ଏଥିରେ ପୂର୍ଣ୍ଣଭାବରେ ରହିଛି । କେବଳ ସେତିକି ନୁହେଁ । ଭାରତର ସମ୍ବିଧାନ ଓ ଭୂଗୋଳ, ଭାରତରେ ବିଭିନ୍ନ ଅଞ୍ଚଳରେ ବାସ କରୁଥିବା ବହୁ ପ୍ରାଚୀନ ଗୋଷ୍ଠୀର ଚିନ୍ତା ଓ ବିଶ୍ୱାସ·ପୁରାଣ ପୃଷ୍ଠାରେ ପ୍ରତିଫଳିତ ହୋଇଛି । ପୁରାଣରେ ଏହି ବୈଚିତ୍ର୍ୟ ଯୋଗୁଁ ସାଂପ୍ରତିକ କାଳରେ ପୁରାଣର ଆଲୋଚନା ଓ ଗବେଷଣା ପାଇଁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପଣ୍ଡିତମାନେ ଆଗ୍ରହ ପ୍ରକାଶ କରିଛନ୍ତି ।

**ସ୍କନ୍ଦପୁରାଣ ପରିଚୟ**—ସ୍କନ୍ଦ ପୁରାଣ ୧୮ଶ ପୁରାଣ ମଧ୍ୟରେ ତ୍ରୟୋଦଶ ସ୍ଥାନ ଅଧିକାର କରିଛି । ସର୍ବବୃହତ୍ତ ଏହି ପୁରାଣରେ ଶ୍ଳୋକସଂଖ୍ୟା ଏକାଅଶୀ ହଜାର । ସ୍କନ୍ଦ ପୁରାଣ କାର୍ତ୍ତିକେୟଙ୍କ ନାମରେ ନାମିତ ହେଲେ ବି ସ୍କନ୍ଦଙ୍କ ସହିତ ଏହି ପୁରାଣର ବିଶେଷ କିଛି ସଂପର୍କ ନାହିଁ । କାର୍ତ୍ତିକେୟଙ୍କ ମୁଖରେ 'ତତ୍ପୁରୁଷ କଳ୍ପ'ରେ ଥିବା ଶିବଙ୍କ ଦ୍ୱାରା କଥିତ ଧର୍ମ ସମ୍ବନ୍ଧୀୟ କେତେକ ଆଚରଣ ବିଧିକୁ ଏଥିରେ ନାନା ଉପାଖ୍ୟାନ ମାଧ୍ୟମରେ ବିସ୍ତାରିତ କରାଯାଇଛି । ଏ ସମ୍ବନ୍ଧରେ ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି—

"ଯଦା ମହେଶ୍ୱରାନ୍ଧର୍ମାନଧିକୃତ୍ୟ ଚ ଷଣ୍ମୁଖଃ ।
କଲ୍ପେ ତତ୍ପୁରୁଷେ ବୃତ୍ତଂ ଚରତୈରୂପ ବୃଂହିତଂ ॥

ସ୍କାନ୍ଦଂ ନାମ ପୁରାଣଂଚ ଏକାଶୀତ ନିଗଦ୍ୟତେ ।
ସହସ୍ରାଣି ଶତଂଚୈକମିହ ମର୍ତ୍ତ୍ୟେଷୁ ଗଦ୍ୟତେ ॥"

ପ୍ରବୃତ୍ତି ଦୃଷ୍ଟିରୁ ପୁରାଣ ଗୁଡ଼ିକୁ ମୁଖ୍ୟତଃ ୩ ଭାଗରେ ବିଭକ୍ତ କରାଯାଇ ଅଛି । ମତ୍ସ୍ୟ ଓ ପଦ୍ମ ପୁରାଣରେ ଏହି ବିଭାଗୀକରଣ ସ୍ଥାନ ପାଇଛି । ମତ୍ସ୍ୟ-ପୁରାଣରେ ବିଷ୍ଣୁ ଉପାସନାର ପ୍ରାଧାନ୍ୟ ଥିବା ପୁରାଣକୁ 'ସାତ୍ତ୍ୱିକ ପୁରାଣ', ଶିବଙ୍କ ଉପାସନାକୁ ପ୍ରାଧାନ୍ୟ ଦେଉଥିବା ପୁରାଣ ଗୁଡ଼ିକ ତାମସିକ ପୁରାଣ ଓ ବ୍ରହ୍ମାଙ୍କ ଉପାସନାକୁ ମୁଖ୍ୟସ୍ଥାନ ଦେଉଥିବା ଅବଶିଷ୍ଟ ପୁରାଣଗୁଡ଼ିକୁ ରାଜସିକ ପୁରାଣ ବୋଲି କୁହାଯାଇଛି । ମତ୍ସ୍ୟ ପୁରାଣରେ ଏହି ବିଭାଗୀକରଣ ପର୍ଯ୍ୟାପ୍ତ ନୁହେଁ । ପଦ୍ମ ପୁରାଣରେ ଉତ୍ତର ଖଣ୍ଡରେ ପୁରାଣ ଗୁଡ଼ିକୁ ସାତ୍ତ୍ୱିକ, ରାଜସିକ ଓ ତାମସିକ ଭେଦରେ ତିନି ଭାଗରେ ବିଭକ୍ତ କରାଯାଇଛି । ବିଷ୍ଣୁଙ୍କୁ ଶ୍ରେଷ୍ଠ ଉପାସ୍ୟ ଭାବରେ ଗ୍ରହଣ କରିଥିବା (୧) ବିଷ୍ଣୁ, (୨) ନାରଦୀୟ, (୩) ଭାଗବତ, (୪) ଗରୁଡ଼, (୫) ପଦ୍ମ, (୬) ବରାହ ସାତ୍ତ୍ୱିକ ପୁରାଣ ବିଭାଗ ଅନ୍ତର୍ଗତ । ଶିବ ସମ୍ପର୍କିତ, (୭) ମତ୍ସ୍ୟ, (୮) କୂର୍ମ, (୯) ଲିଙ୍ଗ, (୧୦) ଶିବ, (୧୧) ସ୍କନ୍ଦ, (୧୨) ଅଗ୍ନି ପୁରାଣ ତମଃ ପୁରାଣ ଅନ୍ତର୍ଭୁକ୍ତ ଓ ଅବଶିଷ୍ଟ (୧୩) ବ୍ରହ୍ମାଣ୍ଡ, (୧୪) ବ୍ରହ୍ମବୈବର୍ତ୍ତ, (୧୫) ମାର୍କଣ୍ଡେୟ, (୧୬) ଭବିଷ୍ୟ, (୧୭) ବାମନ, (୧୮) ବ୍ରହ୍ମ ପୁରାଣ ରାଜସିକ ପୁରାଣ ଭାବରେ ଗୃହୀତ । ବିଷ୍ଣୁ ପୁରାଣର ମୁଖବନ୍ଧରେ H. H. Wilson ରାଜସିକ ପୁରାଣକୁ ନାରୀ ଦେବତା ସଂପର୍କିତ ପୁରାଣ ଭାବରେ ଗ୍ରହଣ କରିଛନ୍ତି । ପୌରାଣିକ ପ୍ରବୃତ୍ତି ଦୃଷ୍ଟିରୁ ଆମର ଆଲୋଚ୍ୟ ସ୍କନ୍ଦ ପୁରାଣ ଶିବ ଉପାସନା ମୂଳକ ତଥା ତାମଶିକ ପୁରାଣ ଭାବରେ ଗୃହୀତ ହୋଇଛି ।

ସ୍କନ୍ଦ ପୁରାଣ ୧୮ଶ ପୁରାଣ ମଧ୍ୟରେ ସର୍ବବୃହତ୍ ପୁରାଣ ଓ ସମ୍ମିଳିତ ଭାବେ ଏହି ପୁରାଣ ସୃଷ୍ଟି ହୋଇଥିବା କଥା ପୁରାଣ ଆଲୋଚକମାନେ ଗ୍ରହଣ କରନ୍ତି ନାହିଁ । ସଂହିତା, ମହାତ୍ମ୍ୟ ଓ ଖଣ୍ଡର ସମବାୟରେ ଏହି ବିରାଟ

ପୁରାଣରେ କଳେବର ଗଢ଼ି ଉଠିଛି । ସାଧାରଣତଃ ସ୍କନ୍ଦ ପୁରାଣର ଦୁଇଗୋଟି ସଂସ୍କରଣ ଦୃଷ୍ଟିଗୋଚର ହୁଏ, ଗୋଟିଏ ହେଉଛି ସଂହିତାତ୍ମକ ଓ ଅନ୍ୟଟି ହେଉଛି ଖଣ୍ଡାତ୍ମକ । 'ସୂତ ସଂହିତା'ର ଉଲ୍ଲେଖ ଅନୁସାରେ ଏହି ପୁରାଣରେ ଛଅଟି ସଂହିତା ରହିଛି । ସେ ଗୁଡ଼ିକ ଯଥାକ୍ରମେ (୧) ସନତ୍ କୁମାର ସଂହିତା, (୨) ସୂତ ସଂହିତା, (୩) ଶଙ୍କର ସଂହିତା, (୪) ବୈଷ୍ଣବ ସଂହିତା, (୫) ବ୍ରାହ୍ମ ସଂହିତା (୬) ସୌର ସଂହିତା । ସଂହିତା ଗୁଡ଼ିକର ଶ୍ଳୋକ ସଂଖ୍ୟା ଯଥାକ୍ରମେ ୩୬,୦୦୦ (ଛତିଶ ହଜାର), ୬,୦୦୦ (ଛଅ ହଜାର), ୩୦,୦୦୦ (ତିରିଶ ହଜାର), ୫,୦୦୦ (ପାଞ୍ଚ ହଜାର), ୩,୦୦୦ (ତିନି ହଜାର), ୧,୦୦୦ (ଏକ ହଜାର), ଏହି ସଂହିତା ଗୁଡ଼ିକର ବିସ୍ତୃତ ବିବରଣୀ ନାରଦ ପୁରାଣରେ ମିଳିଥାଏ ।

'ଖଣ୍ଡାତ୍ମକ' ସଂସ୍କରଣରେ ସ୍କନ୍ଦ ପୁରାଣକୁ ସାତଗୋଟି ଖଣ୍ଡରେ ବିଭକ୍ତ କରାଯାଇଛି । ସେଗୁଡ଼ିକ ଯଥାକ୍ରମେ (୧) ମାହେଶ୍ୱର ଖଣ୍ଡ, (୨) ବୈଷ୍ଣବ ଖଣ୍ଡ, (୩) ବ୍ରହ୍ମା ଖଣ୍ଡ, (୪) କାଶୀ ଖଣ୍ଡ, (୫) ରେବା ଖଣ୍ଡ, (୬) ତାପୀ ଖଣ୍ଡ (୭) ପ୍ରଭାସ ଖଣ୍ଡ । କେହି କେହି ସଂକଳକ 'ତାପୀଖଣ୍ଡ ଓ ପ୍ରଭାସ ଖଣ୍ଡ'କୁ ଏକତ୍ର ଭାବରେ ଗ୍ରହଣ କରି ଖଣ୍ଡଟିର ନାମକରଣ କରିଛନ୍ତି 'ଅବନ୍ତିକା ଖଣ୍ଡ' ଓ ଖଣ୍ଡ ସଂଖ୍ୟା ଏହି ହେତୁ ଛଅ ବୋଲି କହିଛନ୍ତି । କିନ୍ତୁ ସ୍କନ୍ଦ ପୁରାଣର ରେବା ଖଣ୍ଡରେ ସ୍କନ୍ଦ ପୁରାଣ ୭ଟି ଖଣ୍ଡରେ ବିଭକ୍ତ ବୋଲି ସ୍ପଷ୍ଟ କୁହାଯାଇଛି ।

"ବିଭକ୍ତଂ ସପ୍ତଭିଃ ଖଣ୍ଡୈଃ ସ୍କାନ୍ଦଂ ଭଗ୍ୟବତାମ୍ବର ।
ତ ଦେକାଶୀତି ସାହସ୍ରଂ ସଂଖ୍ୟଯା ବୈ ନିରୂପିତମ୍ ।'
ସ୍କନ୍ଦ-ରେବାଖଣ୍ଡ, ୧ମ ଅଧ୍ୟାୟ ଶ୍ଳୋ-୨୨

'ସୂତ ସଂହିତାରେ ଶିବ ଉପାସନା ବିଷୟରେ ଅନେକ ବର୍ଣ୍ଣନା ରହିଛି । ବୈଦିକ ଓ ତାନ୍ତ୍ରିକ ଉପାସନାର ସମନ୍ୱୟ ଏଥିରେ ସାଧିତ ହୋଇଛି । ବିଜୟନଗର ସାମ୍ରାଜ୍ୟର ମନ୍ତ୍ରୀ ପଣ୍ଡିତ ମାଧବାଚାର୍ଯ୍ୟ ଏହି ସଂହିତା ଉପରେ 'ତାତ୍ପର୍ଯ୍ୟ ଦୀପିକା' ନାମକ ଏକ ବ୍ୟାଖ୍ୟା ରଚନା କରିଥିଲେ । ସୂତ ସଂହିତାର ବୈଦିକ ତଥା ତାନ୍ତ୍ରିକ ସମନ୍ୱୟବାଦର ପ୍ରଥମ ଆବିଷ୍କାରକ ଭାବେ ସେ

ଅସାମାନ୍ୟ ପ୍ରତିଷ୍ଠା ଲାଭ କରିଛନ୍ତି । ସୂତ ସଂହିତା ୪ ଖଣ୍ଡରେ ବିଭକ୍ତ (୧) ଶିବ ମାହାତ୍ମ୍ୟ ଖଣ୍ଡ :—ଏଥିରେ ଶୈବ ଧର୍ମ ଓ ଶିବ ଉପାସନାର ମହିମା ବିସ୍ତାରିତ ଭାବେ ବର୍ଣ୍ଣିତ ହୋଇଛି । (୨) ଜ୍ଞାନଯୋଗ ଖଣ୍ଡ—ଏଥିରେ ଆଗମ ଧର୍ମ ଓ ହଠ ଯୋଗ ସାଧନାର ସମନ୍ୱୟ ସାଧିତ ହୋଇଛି । (୩) ମୁକ୍ତି ଖଣ୍ଡ—ଏଥିରେ ମୁକ୍ତିଲାଭର ଉପାୟ ବର୍ଣ୍ଣିତ ହୋଇଛି । ନିଷ୍କାମ କର୍ମ, ସତ୍ୟ, ଅହିଂସା ଓ ମାନବ ସେବାକୁ ଦେବ ଉପାସନା ଓ କୃଚ୍ଛ୍ର ସାଧନା ଅପେକ୍ଷା ଅଧିକ ଗୁରୁତ୍ୱ ଦିଆଯାଇଛି । (୪) ଯଜ୍ଞ ବୈଭବ ଖଣ୍ଡ—ଏହା ଦୁଇଗୋଟି ଉପ-ବିଭାଗରେ ବିଭକ୍ତ (୧) ପୂର୍ବଭାଗ (୨) ଉତ୍ତର ଭାଗ ।

(କ) ପୂର୍ବ-ଭାଗରେ ଅଦ୍ୱୈତ ବେଦାନ୍ତର ତତ୍ତ୍ୱ ଉପରେ ଆଧାରିତ ଶୈବ ସାଧନାର ଆଧ୍ୟାତ୍ମିକ ବ୍ୟାଖ୍ୟା ରହିଛି ।

(ଖ) ଦ୍ୱିତୀୟ ଭାଗରେ ଦୁଇଗୋଟି ଗୀତା ରହିଛି । ପ୍ରଥମ ଗୀତା ୧୨ଶ ଅଧ୍ୟାୟ ବିଶିଷ୍ଟ ଓ ଏହାର ନାମ 'ବ୍ରହ୍ମଗୀତା', ୨ୟ ଗୀତା ୮ମ ଅଧ୍ୟାୟ ବିଶିଷ୍ଟ ଓ ଏହାର ନାମ 'ସୂତଗୀତା' । ଆଧ୍ୟାତ୍ମିକ ବିଷୟର ଉପସ୍ଥାପନ ଓ ବ୍ୟାଖ୍ୟା ସବୁ ଗୀତା ଭଳି ଏଥିରେ କରାଯାଇଛି ଓ ଶିବ ଯେ ସବୁକର୍ମର ସିଦ୍ଧିଦାତା ତାହା ଏଥିରେ ପ୍ରତିପାଦିତ ହୋଇଛି । ❊

"ପ୍ରସାଦ ଲଭ୍ୟସ୍ତୁ ହି ଧର୍ମ ସଂଚୟଃ
ପ୍ରସାଦ ଲଭ୍ୟସ୍ତୁ ହି ଦେବତାର୍ଚ୍ଚନମ୍ ।
ପ୍ରସାଦ ଲଭ୍ୟସ୍ତୁ ହି ଦେବତା ସ୍ମୃତିଃ
ପ୍ରସାଦ ଲଭ୍ୟସ୍ତୁ ହି ସର୍ବ ମୀରିତମ୍ ॥
ଶିବ ପ୍ରସାଦେନ ବିନା ନ ମୁକ୍ତୟଃ
ଶିବ ପ୍ରସାଦେନ ବିନା ନ ମୁକ୍ତୟଃ ।
ଶିବ ପ୍ରସାଦେନ ବିନା ନ ଦେବତାଃ
ଶିବ ପ୍ରସାଦେନ ହି ସର୍ବ ମାସ୍ତିକାଃ ॥"

---

❊ ଗୀତା ଦୁଇଟି ମହାଭାରତର 'ଭଗବତ୍ ଗୀତା' ପ୍ରଭାବରୁ ସୃଷ୍ଟି ହୋଇଥିବା ଅନୁମାନ କରାଯାଇପାରେ ।

ଶଙ୍କର ସଂହିତା ମଧ୍ୟ ଅନେକ ଖଣ୍ଡରେ ବିଭକ୍ତ ଓ ଏହାର ପ୍ରଥମ ଖଣ୍ଡ 'ଶିବ ରହସ୍ୟ ଖଣ୍ଡ' ଭାବରେ କଥିତ । ଏଥିରେ ସାତଟି କାଣ୍ଡ ରହିଛି । ସେଗୁଡ଼ିକ ଯଥାକ୍ରମେ, (୧) ସମ୍ଭବ କାଣ୍ଡ, (୨) ଅସୁର କାଣ୍ଡ, (୩) ମାହେନ୍ଦ୍ର କାଣ୍ଡ, (୪) ଯୁଦ୍ଧ କାଣ୍ଡ, (୫) ଦେବ କାଣ୍ଡ, (୬) ଦକ୍ଷ କାଣ୍ଡ, (୭) ଉପଦେଶ କାଣ୍ଡ । ସୌର ସଂହିତାରେ ଶିବପୂଜା ସମ୍ବନ୍ଧୀୟ ବର୍ଣ୍ଣନା ରହିଛି । 'ସନତ୍ କୁମାର ସଂହିତା' ବ୍ୟତୀତ ଅବଶିଷ୍ଟ ସଂହିତାଗୁଡ଼ିକର ସନ୍ଧାନ ମିଳେନାହିଁ । ଏହାର ଅଧ୍ୟାୟ ସଂଖ୍ୟା ୨୦ କିମ୍ବା ୨୨ ବୋଲି କୁହାଯାଇଛି ।

ଖଣ୍ଡାତ୍ମକ ଦୃଷ୍ଟିରୁ ସ୍କନ୍ଦ ପୁରାଣକୁ ୬ଗୋଟି ବିଭାଗରେ ବିଭକ୍ତ କରାଯାଇଛି ।

୧-**ମାହେଶ୍ୱର ଖଣ୍ଡ**--ଏଥିରେ କେଦାର ଖଣ୍ଡ ଓ କୁମାରିକା ଖଣ୍ଡ ନାମରେ ୨ଟି କ୍ଷୁଦ୍ରଖଣ୍ଡ ରହିଛି । ଦକ୍ଷ ଯଜ୍ଞ ଓ ସେଥିରେ ସତୀଙ୍କର ଦେହ-ତ୍ୟାଗ, ଶିବଙ୍କଦ୍ୱାରା ଦକ୍ଷର ହତ୍ୟା, ଲିଙ୍ଗ ସ୍ଥାପନା, ରାବଣ ଉପାଖ୍ୟାନ, ଗୁରୁଙ୍କ ଅବଜ୍ଞା ପ୍ରଦର୍ଶନ କରିଥିବାରୁ ଇନ୍ଦ୍ରଙ୍କର ରାଜ୍ୟଭଗ୍ନ, ସମୁଦ୍ର ମନ୍ଥନରେ ଲକ୍ଷ୍ମୀଙ୍କର ଆବିର୍ଭାବ, ଅମୃତ ବଣ୍ଟନ, ଶିବ ଲିଙ୍ଗ ଓ ଶିବ ପୂଜା ମହାତ୍ମ୍ୟ, ସୁତନୁ ଓ ନାରଦ ସଂବାଦ, ଶିବ ସହିତ ଶକ୍ତିର ବର୍ଣ୍ଣନା, ଅରୁଣାଚଳ ଶୈବ ପୀଠର ବର୍ଣ୍ଣନା ତଥା ଦାନ ଭେଦ ନିରୂପଣ ପ୍ରଭୃତି କେତେକ ପ୍ରସଙ୍ଗ ଏଥିରେ ଉପସ୍ଥାପିତ ହୋଇଛି ।

୨-**ବୈଷ୍ଣବ ଖଣ୍ଡ**—ଏହି ଖଣ୍ଡରେ ବେଙ୍କଟାଚଳର ବର୍ଣ୍ଣନା, ବରାହମନ୍ତ୍ର ସାଧନ ବିଧି, ରାମାନୁଜାଖ୍ୟ ଦ୍ୱିଜ ଚରିତ, ବଦରିକାଶ୍ରମର ମହାତ୍ମ୍ୟ, କାର୍ତ୍ତିକ ମହାତ୍ମ୍ୟ, ବୈଶାଖ ମାସରେ ସ୍ନାନ ମହତ୍ତ୍ୱ ବର୍ଣ୍ଣନ, ଜ୍ଞାନ ସ୍ୱରୂପ ନିରୂପଣ, ବୈରାଗ୍ୟ ଭକ୍ତି ନିରୂପଣ, କ୍ରିୟା ଯୋଗ ଅଧିକାର ପ୍ରଭୃତି ପ୍ରସଙ୍ଗ ବିସ୍ତାରିତ ଭାବେ ବର୍ଣ୍ଣିତ ହୋଇଛି । ଏତଦ୍‌ବ୍ୟତୀତ ଏହି ଖଣ୍ଡରେ ଅନ୍ତର୍ଭୁକ୍ତ ଉତ୍କଳ ଖଣ୍ଡରେ ଜଗନ୍ନାଥ ଦେବଙ୍କ ଆବିର୍ଭାବ, ରଥନିର୍ମାଣ ବିଧି, ରଥଯାତ୍ରା ବିଧି, ଶୟନୋତ୍ସବ ତଥା ମହାପ୍ରସାଦ ମହିମା ପାଞ୍ଚଗୋଟି ଦୀର୍ଘ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି । ବହୁ ବିସ୍ତାରିତ ଭାବେ ପୁରାଣକାର ଜଗନ୍ନାଥ ପୁରୀର ପୁଣ୍ୟ ଫଳପ୍ରଦ ମହିମା

ଓ ମନ୍ଦିରର ପୂଜାବିଧି ତଥା ରଥଯାତ୍ରା ପୂର୍ବରୁ ଆଚରଣୀୟ ବିଧି ବ୍ୟବସ୍ଥାର ବର୍ଣ୍ଣନା କରୁଛନ୍ତି ।

୩-**ବ୍ରହ୍ମ ଖଣ୍ଡ**—ଏହା ଦୁଇ ଖଣ୍ଡରେ ବିଭକ୍ତ (୧) ବ୍ରହ୍ମାରଣ୍ୟ ଖଣ୍ଡ (୨) ବ୍ରହ୍ମୋତ୍ତର ଖଣ୍ଡ । ପ୍ରଥମ ଖଣ୍ଡରେ ଧର୍ମାରଣ୍ୟ ନାମକ କ୍ଷେତ୍ରରେ ସର୍ବଶେଷ ବର୍ଣ୍ଣନା ରହିଛି । ଦ୍ୱିତୀୟଟିରେ ଉଜ୍ଜୟିନୀସ୍ଥ ମହାକାଳଙ୍କର ପ୍ରତିଷ୍ଠା ଓ ପୂଜାବିଧି ବର୍ଣ୍ଣିତ ହୋଇଛି ।

୪-**କାଶୀ ଖଣ୍ଡ**—କାଶୀର ମହିମା ଏଥିରେ ବିସ୍ତାରିତ ଭାବେ ଉପସ୍ଥାପିତ । ଶୈବ ପୀଠ ଗୁଡ଼ିକର ସୂକ୍ଷ୍ମାତି ସୂକ୍ଷ୍ମ ବର୍ଣ୍ଣନା ଏଥିରେ ରହିଛି ଓ ମାହେଶ୍ୱର ଉପାସନା ବିଷୟରେ କେତେକ ମହତ୍ତର ନିର୍ଦ୍ଦେଶ ମଧ୍ୟ ଏଥିରେ ଅଛି । କାଶୀର ପ୍ରାଚୀନ ଭୂଗୋଳ ଉପରେ ଏହା ଯଥେଷ୍ଟ ଆଲୋକପାତ କରିଛି । ବର୍ଣ୍ଣନା ଅନେକ ସ୍ଥଳରେ ବିରକ୍ତିକର ଓ ଅସ୍ୱାଭାବିକ ହେଲେ ବି ଏହାର ଐତିହାସିକ ଗୁରୁତ୍ୱକୁ ଅସ୍ୱୀକାର କରି ହେବ ନାହିଁ । 'ଅଗସ୍ତ୍ୟ ବୃତ୍ତାନ୍ତ'ରୁ ଦକ୍ଷିଣ ଭାରତରେ ହିନ୍ଦୁ ଧର୍ମର ପ୍ରସାର ବିଷୟରେ କ୍ଷୀଣ ଆଭାସ ମିଳେ । କାଶୀର ରାଜା ଦେବଦାସ ବୃତ୍ତାନ୍ତରୁ ବୌଦ୍ଧ ଧର୍ମର ପ୍ରାବଲ୍ୟ ପୂର୍ବରୁ କାଶୀଭଳି ପ୍ରସିଦ୍ଧ ନଗରୀରେ ଶୈବ ଉପାସନାରେ ଦେଖା ଯାଇଥିବା ଗ୍ଲାନିର ସୂଚନା ମିଳୁଛି । H. H. Willson ମନେକରନ୍ତି ଯେ କାଶୀ ଖଣ୍ଡର ଅର୍ଦ୍ଧାଧିକ ଅଂଶ ଗଜନୀର ମହମ୍ମଦ ବାରାଣସୀ ଆକ୍ରମଣ ପୂର୍ବରୁ ଲିଖିତ ହୋଇଥିଲା ।

୫-**ରେବା ଖଣ୍ଡ**—ନର୍ମଦାର ଉତ୍ପତ୍ତି ଓ ଏହାର ତୀରବର୍ତ୍ତୀ କ୍ଷେତ୍ର ଗୁଡ଼ିକର ବର୍ଣ୍ଣନା ଏଥିରେ ରହିଛି । ସତ୍ୟନାରାୟଣ ବିଷୟକ କିମ୍ବଦନ୍ତୀ ମଧ୍ୟ ବର୍ଣ୍ଣିତ ହୋଇଛି । ୧୮ଶ ପୁରାଣର ନାମୋଲ୍ଲେଖ ସହିତ ପୁରାଣ ସୃଷ୍ଟିର ହେତୁ, ଉଦ୍ଦେଶ୍ୟ ଓ ଲୋକ ସମାଜପ୍ରତି ଏହାର ଉପଯୋଗିତା ବିଷୟ ଏଥିରେ ସ୍ଥାନ ପାଇଛି । ପୁରାଣରେ ନାମ, ଲକ୍ଷଣ ଓ ଶ୍ଳୋକର ସଂଖ୍ୟା ତଥା ପୁରାଣ ସଂହିତାଗୁଡ଼ିକର ଉଲ୍ଲେଖ ଏଥିରେ ଥିବାରୁ ପୁରାଣର ପ୍ରବୃତ୍ତି ବିଷୟରେ ଏହି ଖଣ୍ଡର ଗୁରୁତ୍ୱ ରହିଛି ।

୭-**ଅବନ୍ତୀ ଖଣ୍ଡ**—ଜ୍ୟୋତିର୍ଲିଙ୍ଗ ସ୍ଥିତ ବଭିନ୍ନ ଶିବ ଲିଙ୍ଗର ଉତ୍ପତ୍ତିର ବର୍ଣ୍ଣନା ଏଥିରେ ଅଛି । ମହାକାଳେଶ୍ୱରଙ୍କର ବର୍ଣ୍ଣନା ଏଥିରେ ମୁଖ୍ୟ ଅଂଶ ଅଧିକାର କରିଛି । ସମାଲୋଚକମାନେ ଅବନ୍ତୀ ଖଣ୍ଡକୁ ତାପୀ ଖଣ୍ଡ ଓ ପ୍ରଭାସ ଖଣ୍ଡର ଏକୀଭୂତ ରୂପ ଭାବେ ଗ୍ରହଣ କରନ୍ତି । ଆଲୋଚନାର ସୁବିଧା ଦୃଷ୍ଟିରୁ ଅବନ୍ତୀଖଣ୍ଡର ଅଙ୍ଗ ବିଶେଷଭାବେ ୨ଟି ଖଣ୍ଡର ସଂକ୍ଷିପ୍ତ ଆଲୋଚନା ଦିଆଯାଇପାରେ ।

(କ) **ତାପୀ ଖଣ୍ଡ**—ନର୍ମଦାର ଉପନଦୀ 'ତାପୀ' କୂଳସ୍ଥ ବିଭିନ୍ନ ତୀର୍ଥ ଏଥିରେ ବର୍ଣ୍ଣିତ ହୋଇଛି । ନାରଦ ପୁରାଣ ମତରେ ଏହାର ୭ଷ୍ଠ ଖଣ୍ଡ, 'ନାଗର ଖଣ୍ଡ' ନାମରେ ପରିଚିତ । ଅଧୁନା ପ୍ରାପ୍ତ 'ନାଗର ଖଣ୍ଡରେ ୩ଟି ପରିଚ୍ଛେଦ ରହିଛି । ସେଗୁଡିକ ଯଥାକ୍ରମେ (i) ବିଶ୍ୱକର୍ମା ଉପାଖ୍ୟାନ (ii) ବିଶ୍ୱକର୍ମା ବଂଶୋପାଖ୍ୟାନ (iii) ହାଟକେଶ୍ୱର ରହସ୍ୟ । ଭାରତର ସାମାଜିକ ଅବସ୍ଥା ଉପରେ ଏହା ଯଥେଷ୍ଟ ଆଲୋକପାତ କରିଛି ।

(ଖ) **ପ୍ରଭାସ ଖଣ୍ଡ**—ଏଥିରେ ପ୍ରଭାସ କ୍ଷେତ୍ରର ବର୍ଣ୍ଣନା ବିସ୍ତୃତ ଭାବରେ ଦିଆଯାଇଛି । ଦ୍ୱାରକାର ପାରିପାର୍ଶ୍ୱିକ ଭୂଗୋଳ ଜାଣିବାରେ ଏହାର ଉପାଦେୟତା ରହିଛି । ସର୍ବବୃହତ୍ତ ମହାପୁରାଣ ସ୍କନ୍ଦ ପୁରାଣର ଏହା ସଂକ୍ଷିପ୍ତ ସାର ।

**ପୌରାଣିକ ପ୍ରବୃତ୍ତି**—'ବେଦା ପ୍ରତିଷ୍ଠିତାଃ ସର୍ବେ ପୁରାଣେ ନାତ୍ର ସଂଶୟଃ' ସବୁ ପୁରାଣ ବେଦରୁ ଉପାଦାନ ସଂଗ୍ରହ କରି ଗଢ଼ି ଉଠିଥିବା ଭଳି ସ୍କନ୍ଦ ପୁରାଣ ବୈଦିକ ଭିତ୍ତି ଉପରେ ପ୍ରତିଷ୍ଠିତ । ସବୁ ପୁରାଣର କର୍ତ୍ତା ବ୍ୟାସଦେବ ମଧ୍ୟ ଏହି ପୁରାଣର ସ୍ରଷ୍ଟା । ସଂସ୍କୃତ ସାହିତ୍ୟର ଆଲୋଚକମାନେ ବ୍ୟାସ ନାମକ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ସ୍ୱୀକାର କରନ୍ତି ନାହିଁ । ବ୍ୟାସ ଶବ୍ଦର ଅର୍ଥ ସଂଗ୍ରାହକ ବୋଲି କେତେକ ଆଲୋଚକ କହିଛନ୍ତି । ବର୍ତ୍ତମାନ ଏହା ପରାଶର ପୁତ୍ର ଓ ଶୁକଦେବଙ୍କର ପିତା ମହାତ୍ମା କୃଷ୍ଣଦ୍ୱୈପାୟନଙ୍କ ପ୍ରତି ନିର୍ଦ୍ଦିଷ୍ଟ ହୋଇଛି । ବ୍ୟାସଦେବ ବେଦ, ଉପନିଷଦ୍ ଓ ଷଡ଼ଦର୍ଶନର ତତ୍ତ୍ୱକୁ ତାଙ୍କର ଶିଷ୍ୟମାନଙ୍କୁ ବୁଝାଇ ଦେଇଥିଲେ । ପରେ ତାଙ୍କର ଶିଷ୍ୟ ପ୍ରଶିଷ୍ୟମାନେ ପୁରାଣ ଗୁଡ଼ିକ ରଚନା କରିଥିବାର ଅନୁମାନ କରାଯାଇ

ଯାଉରେ । ରୋମହର୍ଷଣ ବା ଲୋମହର୍ଷଣ ଏହି ଶିଷ୍ୟ ପରଂପରାର ଜଣେ ପ୍ରସିଦ୍ଧ ବ୍ୟକ୍ତି । ଏହାଙ୍କୁ ପୁଣି ସୂତ କୁହା ଯାଇଥାଏ । ଏହି ସୂତ ଶବ୍ଦ ପୁଣି ଏକ ଉପାଧିରେ ପରିଣତ ହୋଇଛି । ବାୟୁ ପୁରାଣରେ ସୂତ ଶବ୍ଦର ଅର୍ଥବିସ୍ତାର ଘଟିଛି । ସୂତମାନେ ବଂଶାନୁକ୍ରମିକ ଭାବେ ରାଜାମାନଙ୍କର ପରାକ୍ରମର ବିବରଣୀ ବ୍ରାହ୍ମଣମାନଙ୍କ ଆଗରେ ମଧ୍ୟ ପ୍ରକାଶ କରିବାର ଅଧିକାର ପାଇଥିଲେ । ପୁରାଣ ପ୍ରବକ୍ତା ବ୍ୟାସଙ୍କର ୪ ଜଣ ଶିଷ୍ୟ ଥିବାର ପ୍ରମାଣ ମିଳେ । ବିଷ୍ଣୁ ପୁରାଣରେ ବିଭିନ୍ନ ପ୍ରବକ୍ତାମାନଙ୍କର ନାମ ଅଛି । ମୈତ୍ରେୟ, ସସପାୟନ, ଅକୃତବଂଶ ଓ ରୋମହର୍ଷଣ ପୁରାଣ ସଂହିତାଗୁଡ଼ିକ ରଚନା କରି ଥିଲେ । ପୁରାଣ ସଂହିତା ଗୁଡ଼ିକ କାଳ ଗର୍ଭରେ ବିଲୁପ୍ତ । ଏହି ସଂହିତା ଚତୁଷ୍ଟୟ ଯେ ପୌରାଣିକ ସୃଷ୍ଟିର ଉତ୍ସ ଏକଥା ଅସ୍ୱୀକାର କରି ହେବନାହିଁ । Ancient and Hindu Mythology ଗ୍ରନ୍ଥରେ Vans Kennedy ସ୍କନ୍ଦ ପୁରାଣରେ ଥିବା ୬ଟି ସଂହିତାକୁ ଏହାର ପ୍ରାଚୀନତମ ନମୁନା ଭାବରେ ଗ୍ରହଣ କରିଛନ୍ତି । କିନ୍ତୁ ବିଷ୍ଣୁପୁରାଣର ମୁଖବନ୍ଧରେ H. H. Wilson ସଂହିତା ଗୁଡ଼ିକୁ ପରବର୍ତ୍ତୀ ପ୍ରକ୍ଷେପ ଭାବରେ ଗ୍ରହଣ କରିଛନ୍ତି ।

ଐଶ୍ୱରିକ ଶକ୍ତିର ବିଶ୍ୱବ୍ୟାପକତା ଏବଂ ସେମାନଙ୍କ ଗୁଣ ତଥା ଶକ୍ତିର ମାନବୀକରଣ, ହିନ୍ଦୁ ପୁରାଣରେ ଅନ୍ୟାନ୍ୟ ଦେବଦେବୀଙ୍କର ଉଲ୍ଲେଖ କିମ୍ବା ସୂଚନା ବେଦରେ ଅଛି । କିନ୍ତୁ ବେଦର ଦେବତା ଗୁଡ଼ିକ ସବୁ ଗୃହ-ଦେବତା । ଏମାନଙ୍କୁ ବ୍ୟକ୍ତିଗତ ଜୀବନର ଉନ୍ନତି ଲାଗି ପ୍ରାର୍ଥନା କରାଯାଏ । ଏହି ଦେବତାଗୁଡ଼ିକ ଅଦୃଶ୍ୟ ଦେବତା । ବୈଦିକ ଧର୍ମରେ ଦେବତାର ସ୍ଥୂଳ ରୂପରେଖା ପ୍ରାପ୍ତ ନାହିଁ । ପରେ ବିଶ୍ୱପ୍ରକାଶର ବହିରାଗତ ରୂପରୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରର କଳ୍ପନା କରାଗଲା । ଅଷ୍ଟାଦଶ ପୁରାଣ ଗୁଡ଼ିକ କୌଣସି ଏକ ମୂଳ ପୁରାଣର କଥାବସ୍ତୁ ଉପରେ ନିର୍ଭରଶୀଳ । ପୁରାଣରେ ଅନ୍ତର୍ନିହିତ ବର୍ଣ୍ଣନା ଓ କଥାବସ୍ତୁ ଉପସ୍ଥାପନାରେ ବୈଚିତ୍ର୍ୟହୀନତା ଏହାର ପ୍ରମାଣ ।

ଅମର ସିଂହ କୃତ 'ଅମର କୋଷ' ଗ୍ରନ୍ଥରେ ପୁରାଣରେ ପାଞ୍ଚଗୋଟି ଲକ୍ଷଣ ଦିଆ ଯାଇଛି । ବିଷ୍ଣୁ, ମତ୍ସ୍ୟ, ବାୟୁ, ସ୍କନ୍ଦ ଓ ଅନ୍ୟ କେତେକ ପୁରାଣରେ ଏହା ଅବିକୃତ ଭାବେ ଉଦ୍ଧୃତ ହୋଇଛି ।

"ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋମନ୍ୱନ୍ତରାଣିଚ ।
ବଂଶାନୁଚରିତଂ ଚୈବ ପୁରାଣଂ ପଞ୍ଚଲକ୍ଷଣଂ ।।

ଅମର ସିଂହଙ୍କର କାଳକୁ ଐତିହାସିକମାନେ ଖ୍ରୀଷ୍ଟପୂର୍ବ ୫୭ ବର୍ଷ ବୋଲି କହିଛନ୍ତି । ପୁରାଣ ଗୁଡ଼ିକ ତାଙ୍କ ବେଳକୁ ପରିବର୍ତ୍ତିତ ହୋଇ ଯେ ନୂତନ ଆକାର ଧାରଣ କରି ନ ଥିବ ତା'ର ସମ୍ଭାବନା କରି ହୁଏ ନାହିଁ । ବିଷ୍ଣୁ ପୁରାଣ ବ୍ୟତୀତ ଏହି ପଞ୍ଚଲକ୍ଷଣ ଅନ୍ୟ କେଉଁ ପୁରାଣରେ ସମ୍ପୂର୍ଣ୍ଣ ରକ୍ଷିତ ହୋଇ ନାହିଁ ।

Vans Kennedy ପୁରାଣକୁ ଧର୍ମ ସଂପର୍କୀୟ ନିର୍ଦ୍ଦେଶାବଳୀ ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି କହିଛନ୍ତି । ଏଗୁଡ଼ିକ ଅନୁଚ ସାଂପ୍ରଦାୟିକ ପ୍ରୟୋଜନ ବୋଧରୁ ସୃଷ୍ଟି ହୋଇଛି । ଆଲୋଚକମାନେ ପୁରାଣର ଆରମ୍ଭ ଗ୍ରୀସ୍ ପୁରାଣର ପ୍ରଭାବରୁ ହୋଇଥିବାର ଅନୁମାନ କରନ୍ତି । ଗ୍ରୀକ୍‌ବୀର ହର୍କୁଲେସ୍ ହିନ୍ଦୁ ପୁରାଣର ବଳଦେବ ଚରିତ୍ରର ସମଗୋତ୍ରୀୟ ବୋଲି କୁହାଯାଇଛି । ଧର୍ମ ଓ ବିଶ୍ୱବୋଧ ପାଇଁ ପୁରାଣ ବେଦଠାରେ ଋଣୀ । ପ୍ରାଥମିକ ଓ ମୌଳିକ ସୃଷ୍ଟି ତତ୍ତ୍ୱ ସାଂଖ୍ୟ ଦର୍ଶନରୁ ପୁରାଣକୁ ଆସିଛି ବୋଲି ଅନେକ ପଣ୍ଡିତ କହିଛନ୍ତି । ଏହି ଦୃଷ୍ଟିରୁ ଦେଖିଲେ ପୁରାଣ ମୌଳିକ ସୃଷ୍ଟି ନୁହେଁ ।

ଈଶ୍ୱର ସତ୍ତାର ବିଶ୍ୱବ୍ୟାପକତା (Pantheism) ହେଉଛି ସବୁ ପୁରାଣର ମୂଳ କଥା । ବିଶ୍ୱବ୍ରହ୍ମାଣ୍ଡର ପ୍ରତ୍ୟେକ ବସ୍ତୁ ତାହାଙ୍କଠାରୁ ସୃଷ୍ଟ, ତାଙ୍କର ସ୍ୱରୂପ ଓ ତାଙ୍କଠାରେ ଲୀନ ହେବା ବିଷୟ ସବୁ ପୁରାଣରେ ବର୍ଣ୍ଣିତ ହୋଇଛି । ଏଗୁଡ଼ିକରେ ଅନ୍ଧବିଶ୍ୱାସ, ସାଂପ୍ରଦାୟିକ ସଂକୀର୍ଣ୍ଣତା ତଥା ଧାର୍ମିକ ଅନୁଦାରତା ପୂରି ରହିଥିବାରୁ ପୁରାଣ ଗୁଡ଼ିକରେ ବର୍ଣ୍ଣନା ଓ ଉପସ୍ଥାପନାର ଭିନ୍ନତା ଦେଖାଯାଏ । କିନ୍ତୁ ଜଣେ ପରମ ପୁରୁଷ ବା ବିଶ୍ୱମୂର୍ତ୍ତିର କଳ୍ପନାମୂଳରେ ମହାଭାରତ ଓ ରାମାୟଣର ପ୍ରଭାବ ପଡ଼ିଥିବାର ଅନୁମାନ କରାଯାଇ ପାରେ ।

**କାଳ କଳନା—**

ପୁରାଣର କାଳ ବିଷୟରେ ପୁରାଣ ସମ୍ପୂର୍ଣ୍ଣ ନୀରବ । କିନ୍ତୁ ଏଥିରେ ସନ୍ନିବେଶିତ ଘଟଣା ପରିସ୍ଥିତି, କିମ୍ବଦନ୍ତୀ ଓ ସ୍ଥାନର ବର୍ଣ୍ଣନାରୁ ଏହାର କାଳ ବିଷୟରେ ଧାରଣା କରି ହୁଏ । ପୁରାଣ ଗୁଡ଼ିକ ବିଭିନ୍ନ କାଳରେ ଓ ବିଭିନ୍ନ ପରିସ୍ଥିତିରେ ରଚିତ । ଶଂକରାଚାର୍ଯ୍ୟଙ୍କ ପୂର୍ବରୁ ଏଗୁଡ଼ିକର ଅସ୍ତିତ୍ୱ ନ ଥିଲି ବୋଲି ଅନ୍ତର୍ନିହିତ ପ୍ରମାଣ ବଳରେ ପଣ୍ଡିତମାନେ ସ୍ଥିର କରିଛନ୍ତି । ଶଂକରାଚାର୍ଯ୍ୟଙ୍କ କାଳ ୮ମ ଶତାବ୍ଦୀ, ଏତଦ୍‌ବ୍ୟତୀତ ରାମାନୁଜ (୧୨ଶ ଶତାବ୍ଦୀ) ମାଧବାଚାର୍ଯ୍ୟ (୧୩ଶ ଶତାବ୍ଦୀ) ବଲ୍ଲଭାଚାର୍ଯ୍ୟ (୧୬ଶ ଶତାବ୍ଦୀ)ଙ୍କ ମତବାଦର ପ୍ରତିଫଳନ ଓ ମୀମାଂସା ଅଧିକାଂଶ ପୁରାଣରେ ରହିଛି । ଏଥିରୁ ଅନୁମାନ କରାଯାଏ ଯେ ପୁରାଣର ସୃଷ୍ଟି ପରଂପରା ସୁପ୍ରାଚୀନ ନୁହେଁ ଅର୍ଥାତ୍. ପୁରାଣଗୁଡ଼ିକ ନବମରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ରଚିତ ହୋଇଛି ।

ଭବିଷ୍ୟତ ରାଜାମାନଙ୍କର ଗ୍ରଜତ୍ୱ ବିଷୟକ ବିବରଣୀର ଉଲ୍ଲେଖ ଅନେକ ପୁରାଣରେ ରହିଛି । ଏଗୁଡ଼ିକ ନିର୍ବିବାଦରେ ଅର୍ବାଚୀନ ପ୍ରକ୍ଷେପ ଭାବରେ ଗ୍ରହଣ କରାଯାଇ ପାରେ । ରାଜାଙ୍କର ପରିତୋଷ ବିଧାନ ନିମିତ୍ତ ବୋଧ ହୁଏ ପରେ କେହି କେହି ପଣ୍ଡିତ ପୁରାଣଗୁଡ଼ିକରେ, ସେମାନଙ୍କର ନାମଗୁଡ଼ିକ ସଂଯୋଜିତ କରିଛନ୍ତି । ପ୍ରତ୍ୟେକ ପୁରାଣରେ କେତେକ ଋଷିଙ୍କ ଅନୁରୋଧରେ ଜଣେ ପୁରାଣବିତ୍ ପୁରାଣର ବିସ୍ତୃତ କଥାବସ୍ତୁକୁ ଉପସ୍ଥାପିତ କରିଛନ୍ତି । ସାଧାରଣତଃ ବ୍ୟାସଙ୍କ ଶିଷ୍ୟ ରୋମହର୍ଷଣଙ୍କ ମୁଖରେ ଏଗୁଡ଼ିକ ବର୍ଣ୍ଣିତ ହୋଇଛି । ଏଥିରୁ ଅନୁମାନ କରାଯାଇ ପାରେ ଯେ ପୁରାଣର ପରଂପରା ଅତି ପ୍ରାଚୀନ ହେଲେ ବି ଏଗୁଡ଼ିକ ଲିଖିତ ରୂପରେ ଲୋକ ଲୋଚନକୁ ଆସିଲା ବେଳକୁ ଏଥିରେ ଥିବା ପ୍ରାଚୀନତାର ଉପାଦାନ ଗୁଡ଼ିକ ପରବର୍ତ୍ତୀ ପ୍ରକ୍ଷେପଦ୍ୱାରା ନବୀକୃତ ହୋଇଛି । କିନ୍ତୁ ବିଷ୍ଣୁପୁରାଣର ମୁଖବନ୍ଧରେ ପୌରାଣିକ ପରଂପରାର ପ୍ରାଚୀନତା ସ୍ୱୀକାର କରି H. H. Wilson କହନ୍ତି—

"We do not know for certain whether there was realy an Original Puran of such an early

date from which the present ones were derived, but there is no denying the fact that the extant of Puranic works preserve in them many traditions which come down from very early times and possibly then from the prevedic days.''

ପୁରାଣର କାଳର ବିଭାଜନରେ ଏହି ଦୁରୂହତା ସ୍କନ୍ଦ ପୁରାଣ କ୍ଷେତ୍ରରେ ମଧ୍ୟ ଦେଖା ଯାଉଛି । ସ୍କନ୍ଦ ପୁରାଣର ବିରାଟ ବପୁ, ବୈଚିତ୍ର୍ୟମୟତା, ଓ ଏହାର ବୈବ-ବୈଷ୍ଣବ ପ୍ରକୃତି ଏହାର କାଳ କଳନାରେ ଘୋର ଅନ୍ତରାୟ ହୋଇପଡ଼ିଛି । ବଳଦେବ ଉପାଧ୍ୟାୟ ସ୍କନ୍ଦ ପୁରାଣ ଉପରେ 'କାରାଡ ଅର୍ଜୁନୀୟମ୍' ଓ କାଦମ୍ବରୀର ପ୍ରଭାବ ପଡ଼ିଛି ବୋଲି ସପ୍ରମାଣ ଉଲ୍ଲେଖ କରିଛନ୍ତି । * ପ୍ରାଚୀନ ନିବନ୍ଧ ଗ୍ରନ୍ଥ ଗୁଡ଼ିକରେ ସ୍କନ୍ଦ ପୁରାଣର ଅନେକ ଶ୍ଳୋକ ଉଦ୍ଧୃତ ହୋଇଥିବାର ଦେଖାଯାଏ । ସ୍କନ୍ଦର ବିଶାଳ ରୂପକୁ ଦୃଷ୍ଟିରେ ରଖିଲେ, ଏଥିରେ ଅନେକ ଅଂଶ ପରବର୍ତ୍ତୀ କାଳରେ ସଂଯୋଜିତ ହୋଇଥିବାର ଅନୁମାନ ଦୃଢ଼ ହୋଇ ଉଠେ । ଡକ୍ଟର ହରପ୍ରସାଦ ଶାସ୍ତ୍ରୀ ନେପାଳ ରାଜ ଦରବାରର ପାଠାଗାରରୁ ପ୍ରାପ୍ତ ସ୍କନ୍ଦ ପୁରାଣର ଏକ ତାଳପତ୍ର ପାଣ୍ଡୁଲିପି ଉପରେ ଆଧାର କରି ଏହାର ରଚନା କାଳକୁ ୭ମ ଶତାବ୍ଦୀ ବୋଲି ଗ୍ରହଣ କରିଛନ୍ତି । ବଳଦେବ ଉପାଧ୍ୟାୟ ଏହି ପୁରାଣର ରଚନାକାଳକୁ ୭ମରୁ ନବମ ଶତାବ୍ଦୀ ମଧ୍ୟରେ ସୀମିତ କରିଛନ୍ତି । କିନ୍ତୁ ପାଶ୍ଚାତ୍ୟ ବିଦ୍ୱାନଗଣ ଏଥିରେ ଥିବା ଜଗନ୍ନାଥ ମନ୍ଦିର ବିଷୟକ ବିବରଣୀରୁ ଏହାର ରଚନା କାଳକୁ ୧୩ଶ ଶତାବ୍ଦୀ ବୋଲି କହିଛନ୍ତି ।

ଶୈବ ପ୍ରବଣତାକୁ ବାଦ୍ ଦେଲେ ସ୍କନ୍ଦ ପୁରାଣର ବୈଷ୍ଣବ ଖଣ୍ଡର ରଚନାକାଳକୁ ୧୩ଶ ଶତାବ୍ଦୀ କିମ୍ବା ପରବର୍ତ୍ତୀ ବୋଲି କୁହାଯିବ । ଶ୍ରୀମନ୍ଦିରର ପୂଜାବିଧି, ଜଗନ୍ନାଥଙ୍କର ରଥଯାତ୍ରା, ରୋହିଣୀକୁଣ୍ଡ ମହାତ୍ମ୍ୟ ଓ ମହାପ୍ରସାଦର ମହତ୍ତ୍ୱ ଅତି ବିସ୍ତାରିତ ଭାବେ ଏଥିରେ ବର୍ଣ୍ଣିତ । ଏ ବର୍ଣ୍ଣନା

* ପୁରାଣ ବିମର୍ଷ-ବଳଦେବ ଉପାଧ୍ୟାୟ ପୃ—୫୫୯ ଦ୍ରଷ୍ଟବ୍ୟ

ଏତେ ପ୍ରାଞ୍ଜଳ ଓ ଆକର୍ଷଣୀୟ ହୋଇଛି ଯେ ଏହାର ରଚୟିତା ଯେ ଓଡ଼ିଶାର ଜଣେ ଜଗନ୍ନାଥ ତତ୍ତ୍ୱବିତ୍ ପଣ୍ଡିତ, ଏହା ପ୍ରମାଣ କରିବାର ଆବଶ୍ୟକତା ରହେ ନାହିଁ । ଜଗନ୍ନାଥ ମନ୍ଦିରର ପ୍ରତିଷ୍ଠାକାଳ ୧୨୩୪ ଖ୍ରୀଷ୍ଟାବ୍ଦ ହେଲେ ସ୍କନ୍ଦ ପୁରାଣର ବୈଷ୍ଣବ ଖଣ୍ଡ.. ୧୩ଶ ଶତାବ୍ଦୀରେ ରଚିତ ହୋଇଛି । ପୁନଶ୍ଚ ବୈଷ୍ଣବ ଖଣ୍ଡ ଅନ୍ତର୍ଭୁକ୍ତ ରାମାନୁଜାଖ୍ୟ ଦ୍ୱିଜ ବୃତ୍ତାନ୍ତ ରାମାନୁଜାଚାର୍ଯ୍ୟଙ୍କର ଜୀବନୀ ଓ ଧର୍ମ ସାଧନା ବିଷୟରେ ସମ୍ପୂର୍ଣ୍ଣ ଧାରଣା ଦେଇଥାଏ । ରାମାନୁଜଙ୍କର ପ୍ରକଟକାଳ ୧୨ଶ ଶତାବ୍ଦୀ ହେଲେ ସ୍କନ୍ଦ ପୁରାଣର ଏହି ଅଂଶ ୧୨ଶ ଶତାବ୍ଦୀ ପରେ ଅର୍ଥାତ୍ ୧୩ଶ ଶତାବ୍ଦୀ ପରେ ରଚିତ ହୋଇଛି ।

## ସ୍କନ୍ଦ ପୁରାଣର ବିଶେଷତ୍ୱ :—

ଭାରତର ଶୈବ ତଥା ବୈଷ୍ଣବ ତୀର୍ଥଗୁଡ଼ିକର ବର୍ଣ୍ଣନା ଏହି ପୁରାଣର ମୁଖ୍ୟ ପ୍ରତିପାଦିତ ବିଷୟ । ଭାରତୀୟ ତୀର୍ଥଗୁଡ଼ିକର ବର୍ଣ୍ଣନା ପାଇଁ ପୁରାଣକାର ବହୁ କିମ୍ବଦନ୍ତୀର ଆଶ୍ରୟ ଗ୍ରହଣ କରିଛନ୍ତି । ଏହା ମୁଖ୍ୟତଃ ଶୈବପୁରାଣ ହେଲେ ବି ଏଥିରେ ବୈଷ୍ଣବ ତୀର୍ଥର ବର୍ଣ୍ଣନା ରହିଛି । ବୈଷ୍ଣବ ଖଣ୍ଡରେ ବେଙ୍କଟାଚଳ, ଜଗନ୍ନାଥ ପୁରୀ, ବଦ୍ରୀନାରାୟଣ ମହାତ୍ମ୍ୟ ବର୍ଣ୍ଣିତ ହୋଇଛି ଓ ଶୈବ ତଥା ବୈଷ୍ଣବ ଧର୍ମର ସୁନ୍ଦର ଓ ସମାନ୍ତରାଳ ବର୍ଣ୍ଣନା ଦିଆଯାଇଛି । ପୁରାଣକାର ଶୈବ ଓ ବୈଷ୍ଣବ ଧର୍ମର ସମୀକରଣ ସମ୍ଭବ କରିଛନ୍ତି । କାଶୀଖଣ୍ଡରେ ଉଲ୍ଲେଖ ଅଛି—

"ଯଥା ଶିବସ୍ତଥା ବିଷ୍ଣୁର୍ଯଥା ବିଷ୍ଣୁସ୍ତଥା ଶିବଃ ।
ଅନ୍ତରଂ ଶିବ ବିଷ୍ଣୋଶ୍ଚ ମନାଗପି ନ ବିଦ୍ୟତେ ।।"

ଅର୍ଥାତ୍ ଯେଉଁଠାରେ ଶିବ ସେଠାରେ ବିଷ୍ଣୁ ଓ ଯେଉଁଠାରେ ବିଷ୍ଣୁ ସେଠାରେ ଶିବ ରହିଛନ୍ତି । ଏମାନଙ୍କ ମଧ୍ୟରେ ସାମାନ୍ୟତମ ବ୍ୟବଧାନ ସୁଦ୍ଧା ନାହିଁ । ଅନ୍ୟତ୍ର ମଧ୍ୟ କୁହାଯାଇଛି :—

'ଯୋ ବିଷ୍ଣୁଃ ସଃ ଶିବୋଜ୍ଞେୟୋ ଯଃ ଶିବୋ ବିଷ୍ଣୁରେବ ସଃ ।'

—ମହେଶ୍ୱର ଖଣ୍ଡ—

ଯେ ବିଷ୍ଣୁ ଅଟନ୍ତି ତାଙ୍କୁ ଶିବବୋଲି ଜାଣିବ ଓ ଯେ ଶିବ ତାଙ୍କୁ ମଧ୍ୟ ବିଷ୍ଣୁ ବୋଲି ଜାଣିବ ।

ପୁରାଣକାର ପରମ ସହିଷ୍ଣୁତା ଓ ନିରାପକ୍ଷଭାବ ଅବଲମ୍ବନ ପୂର୍ବକ ଶୈବ ଓ ବୈଷ୍ଣବ କ୍ଷେତ୍ରଗୁଡ଼ିକର ବର୍ଣ୍ଣନା କରିଛନ୍ତି । କୌଣସି ଧର୍ମ ସମ୍ପ୍ରଦାୟ ଧର୍ମ କ୍ଷେତ୍ର ବିଷୟରେ ହେୟ ମନୋବୃତ୍ତି ପୋଷଣ କରିନାହାନ୍ତି । ଧର୍ମାନୁଷ୍ଠାନ ପ୍ରତି ଘୃଣା କିମ୍ବା ଅସୂୟା ପ୍ରଦର୍ଶିତ ହୋଇନାହିଁ । ଏଥିରେ ଏକ ହଜାରରୁ ଊର୍ଦ୍ଧ୍ୱ ତୀର୍ଥର ବର୍ଣ୍ଣନା ରହିଛି । ବର୍ଣ୍ଣନା ପ୍ରସଙ୍ଗରେ କବି ବ୍ରହ୍ମା, ବିଷ୍ଣୁ, ଶିବ, ଇନ୍ଦ୍ର, ଗନ୍ଧର୍ବ, ଋଷି, ମୁନି, ଦାନବ ପ୍ରଭୃତିଙ୍କର ଚରିତ୍ର ଅବତାରଣା କରିଛନ୍ତି । କିନ୍ତୁ କୌଣସି ଦେବତାଙ୍କ ଗୌଣତ୍ୱ କଳ୍ପନା ସୂଚିତ କରାଯାଇ ନାହିଁ । ସାମ୍ପ୍ରଦାୟିକ ସଙ୍କୀର୍ଣ୍ଣତାର ଊର୍ଦ୍ଧ୍ୱରେ ରହି ଲେଖକ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର (ଭାରତୀୟ ସଂସ୍କୃତିରେ କଳ୍ପିତ ଦେବତାତ୍ରୟ) ଙ୍କ ମହାତ୍ମ୍ୟ ଓ ଉପାସନା ବିଧି ଉପରେ ଆଲୋକପାତ କରିଛନ୍ତି । ମାହେଶ୍ୱର ଖଣ୍ଡର ଏକ ଉପବିଭାଗ କୌମାରିକା ଖଣ୍ଡରେ ସାମ୍ପ୍ରଦାୟିକ ଭେଦଭାବର ନିନ୍ଦାକରାଯାଇଛି । ରାଜା କରନ୍ଧମ ସାମ୍ପ୍ରଦାୟିକ ଭେଦଭାବରେ ଭ୍ରମିତ ହୋଇ ମହାକାଳଙ୍କୁ ଶ୍ରେଷ୍ଠ ଉପାସ୍ୟ କିଏ ବୋଲି ପ୍ରଶ୍ନ ପଚାରିଛନ୍ତି—

'କେଚିତ୍ ଶିବଂ ସମାଶ୍ରିତ୍ୟ ବିଷ୍ଣୁମାଶ୍ରିତ୍ୟ ବେଧସମ୍ ।
ବର୍ଣ୍ଣୟନ୍ତି ପରେ ମୋକ୍ଷଂ ବ୍ରୂହି କସ୍ମାଦ୍ ମନ୍ୟ ସେ ।'

ଏହାର ଉତ୍ତରରେ ମହାକାଳ ବ୍ରହ୍ମା, ବିଷ୍ଣୁ ଓ ଶିବ ଏକ ଓ ଅଭିନ୍ନ ବୋଲି କହିଛନ୍ତି । ନୈମିଷ୍ୟାରଣ୍ୟର ଋଷିଗଣ ଥରେ ଏହି ତିନିଶକ୍ତି ମଧ୍ୟରେ ବଡ଼ କିଏ ବୋଲି ଜାଣିବାପାଇଁ ବ୍ରହ୍ମ ଲୋକରେ ପ୍ରବେଶ ହେଲେ । ସେଠାରେ ବ୍ରହ୍ମା ଅନନ୍ତବିଷ୍ଣୁ ଓ ଆଦ୍ୟ ଅନ୍ତହୀନ ଶିବଙ୍କୁ ପ୍ରଣାମ କରୁଥିବା ବିଷୟ ଅବଗତ ହୋଇ ବୈକୁଣ୍ଠକୁ ଫେରି ଆସିଲେ । ସେଠାରେ ବିଷ୍ଣୁ ବ୍ରହ୍ମା ଓ ଶିବଙ୍କୁ ସନ୍ତୁଷ୍ଟ କରିବାପାଇଁ ସ୍ତୁତିପାଠ କରୁଥିବା ଶ୍ରବଣ କରି କୈଳାସ ପର୍ବତରେ ଋଷିଗଣ ଉପସ୍ଥିତ ହୋଇଛନ୍ତି । ସେଠାରେ ମହେଶ୍ୱର ଓ

ପାର୍ବତୀଙ୍କର କଥୋପକଥନରୁ ଶିବ, ବିଷ୍ଣୁ ଓ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିବାପାଇଁ ଏକାଦଶୀବ୍ରତ ପାଳନ କରିବା ଓ ଜାଗରଣ ହୋଇ ବିଷ୍ଣୁଙ୍କ ମନ୍ଦିରରେ ନୃତ୍ୟ କରିବାକଥା ଶୁଣିଛନ୍ତି । ଏହି କଥା ତ୍ରିବଣିକର ଋଷିମାନଙ୍କର ଭ୍ରମ ଦୂରୀଭୂତ ହୋଇଛି । ବ୍ରହ୍ମା, ବିଷ୍ଣୁ ଓ ଶିବ ଯେ ଏକ ପରମାଶକ୍ତିର ରୂପାନ୍ତର ତାହା ହୃଦୟଙ୍ଗମ କରିଛନ୍ତି । ସୃଷ୍ଟିର ସର୍ଜନା, ପାଳନ ଓ ସଂହାର ଉଦ୍ଦେଶ୍ୟରେ ପରମପିତା ଏହି ତିନି ରୂପରେ ନିଜକୁ ପ୍ରକାଶିତ କରିଛନ୍ତି ଏବଂ କାର୍ଯ୍ୟ ଶେଷରେ ଏହି ତ୍ରିଶକ୍ତି ତାଙ୍କ ଅଙ୍ଗରେ ଲୀନ ହୋଇଯାଆନ୍ତି । ଅଜ୍ଞାନ ଜଡ଼ତାଗ୍ରସ୍ତମାନବ ପକ୍ଷରେ ଏହି ଆଧ୍ୟାତ୍ମିକ ତତ୍ତ୍ୱ ବୁଝିବା କଠିନ ବ୍ୟାପାର । ପ୍ରତ୍ୟେକ ପୁରାଣରେ ଏହି ସିଦ୍ଧାନ୍ତ ଗୃହୀତ ହୋଇଥିଲେ ସ୍ୱ ଇଷ୍ଟଦେବଙ୍କର ପ୍ରାଧାନ୍ୟ ବିସ୍ତାରଲାଗି ପୁରାଣରେ ଅନ୍ୟଦେବତା, ଧର୍ମ ଓ ସମ୍ପ୍ରଦାୟର ନିନ୍ଦା କରାଯାଇଛି । କିନ୍ତୁ ସ୍କନ୍ଦ ପୁରାଣ ଏହି ଦୃଷ୍ଟିରୁ ଚରମ ଉଦାରତା ଓ ମହନୀୟତା ପ୍ରଦର୍ଶନ କରିଛି । ଅଷ୍ଟାଦଶ ପୁରାଣମଧ୍ୟରେ ସ୍କନ୍ଦପୁରାଣ ଏକମାତ୍ର ପୁରାଣ ଯେଉଁଥିରେ ଶୈବ ଓ ବୈଷ୍ଣବ ସାଧନାର ନିରପେକ୍ଷ ଉପସ୍ଥାପନା ସମ୍ଭବ ହୋଇଛି ।

ରାମାନୁଜ ଦ୍ୱିଜ ଉପାଖ୍ୟାନ ବର୍ଣ୍ଣନା ପ୍ରସଙ୍ଗରେ ବୈଷ୍ଣବ ବା ବିଷ୍ଣୁ ଭକ୍ତଙ୍କର ଯୋଗ୍ୟତା ବିଷୟରେ ଅନେକ କଥା କୁହାଯାଇଛି । ଯେଉଁ ଲୋକ ସବୁପ୍ରାଣୀଙ୍କର ହିତ କାମନା କରେ, ଈର୍ଷା, ଦ୍ୱେଷ ଓ ପରଶ୍ରୀକାତରତାରହିତ ସେହି ବ୍ୟକ୍ତି ବାସ୍ତବିକ ବୈଷ୍ଣବ ପଦବୀର ଯୋଗ୍ୟ । ବିଷ୍ଣୁଭକ୍ତ କାୟ, ମନ ଓ ବାକ୍ୟରେ କାହାକୁ ଦୁଃଖ ଦେବାକଥା ଚିନ୍ତା ମଧ୍ୟ କରିବା ଉଚିତ ନୁହେଁ ବୋଲି ଏଥିରେ କୁହାଯାଇଛି । ପୂଜ୍ୟପୂଜାର ବ୍ୟତିକ୍ରମ ନକରି ଗୁଣୀ ଲୋକର ପ୍ରଶଂସା ଓ ଶତ୍ରୁ-ମିତ୍ର ନିର୍ବିଶେଷରେ ସମସ୍ତଙ୍କପ୍ରତି ସମଦୃଷ୍ଟି ହେବା ତଥା ପରର ଦୁଃଖରେ ଦୁଃଖୀ ଓ ପର ସୁଖରେ ସୁଖୀ ହେବା ବୈଷ୍ଣବର ଗୁଣାଦିକ ମହତ୍ତ୍ୱର କେତୋଟି ଦିଗବୋଲି ଏଥିରେ କୁହାଯାଇଛି । ପରିପୂର୍ଣ୍ଣ ଆତ୍ମସମର୍ପଣରେ ବୈଷ୍ଣବର ସାଧନାର ସମାପ୍ତି ଘଟିବାକଥା ମଧ୍ୟ ଏଥିରେ ସୂଚିତ ହୋଇଛି । ମାୟା ମୋହ ପରିତ୍ୟାଗ କରିଥିବା ଲୋକ ହିଁ ପ୍ରକୃତ ବୈଷ୍ଣବ ପଦର ଅଧିକାରୀ । ଜ୍ଞାନ, ଯୋଗ ଓ ନିଷ୍କାମ କର୍ମ ମୁକ୍ତିର ପନ୍ଥା ଭାବରେ ନିର୍ଦ୍ଦେଶିତ ହୋଇଛି ।

ବୌଦ୍ଧ ଦର୍ଶନରେ ଆଠଗୋଟି ସତ୍‌ମାର୍ଗ ଏଥିରେ ପୌରାଣିକ ରୂପ ନେଇଥିବା ଭଳି ମନେହୁଏ । ପାଲିଭାଷାରେ ଲିଖିତ 'ଧମ୍ମପଦ'ର ନୀତି ଉପଦେଶଗୁଡ଼ିକ ଏଥିରେ ଅବିକୃତ ଭାବେ ବର୍ଣ୍ଣିତ ହୋଇଛି । ସତ୍ୟ, ଅହିଂସା, ସଦାଚାର ଓ କରୁଣାକୁ ସ୍କନ୍ଦପୁରାଣରେ ମାନବିକ ସାଧନାରେ ଶୀର୍ଷସ୍ଥାନ ଦିଆଯାଇଛି । ଭାରତର ଅସଂଖ୍ୟ ନଦ ନଦୀ, ତୀର୍ଥ ଓ ସ୍ଥାନର ମହିମାର ଅମୃତ ଗାଥାରେ ସ୍କନ୍ଦ ପୁରାଣର ପୃଷ୍ଠା ମୁଖରିତ ହୋଇ ଉଠିଛି । ସ୍କନ୍ଦ ପୁରାଣ ଭାରତୀୟ ତୀର୍ଥ-ଦର୍ଶନପାଇଁ ଏକ ବର୍ଣ୍ଣନାତ୍ମକ ନିର୍ଦ୍ଦେଶିକା ପୁସ୍ତକ କହିଲେ ଅତ୍ୟୁକ୍ତି ହେବନାହିଁ । କେବଳ କଳେବର ଦୃଷ୍ଟିରୁ ନୁହେଁ ବିଷୟ ବୈଚିତ୍ର୍ୟ ଦୃଷ୍ଟିରୁ ସ୍କନ୍ଦ ପୁରାଣର ସ୍ଥାନ ପୁରାଣମାନଙ୍କ ମଧ୍ୟରେ ସ୍ୱତନ୍ତ୍ର ।

## ସ୍କନ୍ଦ ପୁରାଣ ଓ ପୁରୁଷୋତ୍ତମ କ୍ଷେତ୍ର—

ବୈଷ୍ଣବ ଖଣ୍ଡରେ ପାଞ୍ଚଗୋଟି ଦୀର୍ଘ ଅଧ୍ୟାୟରେ ଜଗନ୍ନାଥ ପୁରୀର କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣିତ । ବ୍ରହ୍ମାଙ୍କର ପ୍ରାର୍ଥନାରେ ବିଷ୍ଣୁଙ୍କର ପ୍ରକଟହେବା, ରଥନିର୍ମାଣ, ରଥଯାତ୍ରା ମହୋତ୍ସବବିଧି, ଭଗବାନଙ୍କର ଶୟନ ବିଧି ଓ ମହାପ୍ରସାଦ ନିର୍ମାଲ୍ୟର ପବିତ୍ରତା ବର୍ଣ୍ଣନାରେ ଉକ୍ତ ପାଞ୍ଚଗୋଟି ଅଧ୍ୟାୟ ବ୍ୟୟିତ ହୋଇଛି । ସ୍କନ୍ଦପୁରାଣ ଏକମାତ୍ର ପୁରାଣ ଯେଉଁଥିରେ କି ଏହାର ଶୈବ ପ୍ରକୃତି ସତ୍ତ୍ୱେ ବୈଷ୍ଣବ ତୀର୍ଥର ଏଭଳି ଉଦାର ବର୍ଣ୍ଣନା ରହିଛି । କବି ବଦରିକାଶ୍ରମକୁ ଶ୍ରେଷ୍ଠ ବୈଷ୍ଣବ କ୍ଷେତ୍ରଭାବରେ ବର୍ଣ୍ଣନା କରିଥିଲେ ହେଁ; ଜଗନ୍ନାଥ ଧାମର ମହତ୍ତ୍ୱ ବର୍ଣ୍ଣନାରେ ତାଙ୍କର ଲେଖନୀ ଅଜସ୍ରସ୍ରାବୀ ହୋଇ ଉଠିଛି ।

ମୁନିବୃନ୍ଦ ପୁରାଣବକ୍ତା ଜୈମିନୀଙ୍କୁ ଯେଉଁ କ୍ଷେତ୍ରରେ ଭଗବାନ୍ ବିଷ୍ଣୁ ମାନବୀୟ ଲୀଳା ବିସ୍ତାରପାଇଁ ଦାରୁମୂର୍ତ୍ତିଧାରଣ କରିଛନ୍ତି ଏବଂ ଯାହାର ଦର୍ଶନ ମାତ୍ରେ ମୁକ୍ତି ଓ ସବୁ ତୀର୍ଥାଟନଫଳ ଲଭିହେବ, ତାହା ବିଷୟରେ ବିଶଦ ଭାବେ କହିବାକୁ ଅନୁରୋଧ କରିଛନ୍ତି । ଦିବ୍ୟଜ୍ୟୋତି ସ୍ୱରୂପ ନାରାୟଣ କାହିଁକି ଓ କିପରି ଦାରୁମୟ ହୋଇ ପ୍ରକାଶିତ ହେଲେ ତାହା ମଧ୍ୟ ଜିଜ୍ଞାସା କରିଛନ୍ତି । ମହର୍ଷି ଜୈମିନୀ ପୁରୁଷୋତ୍ତମର ରହସ୍ୟ ବର୍ଣ୍ଣନା କରିବାପୂର୍ବରୁ

ସମସ୍ତଙ୍କୁ ବୈଷ୍ଣବ ଜନ-ସୁଲଭ ଅନୁରାଗୀ ଓ ନିରହଙ୍କାର ହେବାପାଇଁ ଉପଦେଶ ଦେଇଥିଲେ ଓ ଏକଦା ସ୍କନ୍ଦ (କାର୍ତ୍ତିକେୟ)ଙ୍କ ଦ୍ୱାରା କଥିତ କଥା ଉଚ୍ଚାର କରିଥିଲେ । ଜଗନ୍ନାଥ ପୁରୀର ମାହାତ୍ମ୍ୟରେ ସ୍କନ୍ଦ ପୁରାଣ ମୁଖରିତ ହୋଇ ଉଠିଛି । ଜୈମିନୀ କ୍ଷେତ୍ରର ଉତ୍ପତ୍ତି ବିଷୟରେ କହିଛନ୍ତି—

"ଅହୋ ତତ୍ପରମଂ କ୍ଷେତ୍ରଂ ବିସ୍ତୃତଂ ଦଶଯୋଜନମ୍ ।
ତୀର୍ଥରାଜସ୍ୟ ସଲିଳାଦୁତ୍ଥିତଂ ବାଲୁକାଚିତମ୍ ॥
ନୀଳାଚଳେନ ମହତା ମଧ୍ୟସ୍ଥେନ ବିରାଜିତମ୍ ।
ଏକ ସ୍ତନମିବ ପୃଥ୍ୱ୍ୟାଃ ସୁଦୂରାତ୍ପରି ଭାବିତମ୍ ॥
ବାରାହ ରୂପିଣା ପୂର୍ବମ୍ ସମୁଦ୍ଧୃତ୍ୟ ବସୁନ୍ଧରାମ୍ ।
ସର୍ବତଃ ସୁସମାଂ କୃତ୍ୱା ପର୍ବତୈଃ ସୁସ୍ଥିରୀକୃତମ୍ ॥
ସୃଷ୍ଟ୍ୱା ଚରାଚରଂ ସର୍ବ ତୀର୍ଥାନି ସରିଦବ୍ଧିକାନ୍ ।
କ୍ଷେତ୍ରାଣି ଚ ଯଥା ସ୍ଥାନଂ ସନ୍ନିବେଶ୍ୟ ଯଥା ପୁରାଃ ।"

ସ୍କନ୍ଦ-ବୈଷ୍ଣବ ଖଣ୍ଡ, ୫ମ ଅଧ୍ୟାୟ, ଶ୍ଳୋକ ୧୧-୧୪

ଅର୍ଥାତ୍, ଦଶଯୋଜନ ପର୍ଯ୍ୟନ୍ତ ବିସ୍ତୃତ ଏହି କ୍ଷେତ୍ର ସର୍ବୋତ୍ତମ କ୍ଷେତ୍ର । ତୀର୍ଥରାଜର ଜଳରୁ ଉତ୍ଥିତ ବାଲୁକାମୟ ଭୂମିର ମଧ୍ୟଭାଗରେ ଥିବା ନୀଳାଚଳରେ ଏହି କ୍ଷେତ୍ର ବିରାଜିତ । ଏହା ଦୂରରୁ ପୃଥ୍ୱୀଦେବୀଙ୍କର ଏକ ସ୍ତନ ଭଳି ପ୍ରତୀୟମାନ ହେଉଛି । ପୂର୍ବେ ବରାହରୂପୀ ବିଷ୍ଣୁ ବସୁନ୍ଧରାକୁ ଧାରଣ କରି ପ୍ରତ୍ୟେକ ସ୍ଥାନକୁ ସମତଳ କରିଦେବା ଫଳରେ ଏହି ପର୍ବତ ସୁସ୍ଥିର ହୋଇଥିଲା । ଚରାଚର ସୃଷ୍ଟି ଓ ସମସ୍ତ ତୀର୍ଥ, ନଦୀ, ସାଗର ଓ କ୍ଷେତ୍ର ସୃଷ୍ଟି ପରେ ଏହାକୁ ଯଥାସ୍ଥାନରେ ସନ୍ନିବେଶିତ କରାଗଲା ।

ସୃଷ୍ଟି ଭାରରେ ପୀଡ଼ିତ ହୋଇ ବ୍ରହ୍ମା ଭଗବାନ୍ ବିଷ୍ଣୁଙ୍କୁ ସୃଷ୍ଟି ରକ୍ଷା ଲାଗି ପ୍ରାର୍ଥନା କଲେ । ବ୍ରହ୍ମାଙ୍କ ପ୍ରାର୍ଥନାରେ ବିଷ୍ଣୁ ତୁଷ୍ଟ ହୋଇ ସ୍ୱୟଂ ତାଙ୍କ ନିକଟରେ ଆବିର୍ଭୂତ ହେଲେ । ସ୍କନ୍ଦ ପୁରାଣ ଭାଷାରେ—

ଏବଂ ସଂସ୍ତୂୟମାନସ୍ତୁ ବ୍ରହ୍ମଣା ଗରୁଡ଼ଧ୍ୱଜଃ ।
ନୀଳ ଜୀମୂତ ସଙ୍କାଶଃ ଶଙ୍ଖ ଚକ୍ରାଦ୍ୟ ଚହ୍ନିତଃ ॥

ପତଗେନ୍ଦ୍ର ମସାରୂଢ଼ଃ ସ୍ଫୁରଦ୍‌ବଦନ ପଙ୍କଜଃ ।
ଅବଗସୀଦ୍ ଦ୍ୱିଜଶ୍ରେଷ୍ଠା ଜାବଷ୍ଣୁଃ ସ୍ଫୁରତାଧରଃ ॥'
ବୈଷ୍ଣବ ଖଣ୍ଡ ୫ମ ଅଧ୍ୟାୟ,
ଶ୍ଳୋକ ୨୫-୨୭ ।

ଅର୍ଥାତ୍, ଏହପର ବ୍ରହ୍ମାଂକ ଦ୍ୱାରା କଥିତ ହୋଇ ଭଗବାନ୍ ଗରୁଡ଼-ଧ୍ୱଜ ନୀଳମେଘ ସଦୃଶ କାନ୍ତିଧାରଣ କରି, ଶଙ୍ଖ, ଚକ୍ର, ଗଦାଦି ଚିହ୍ନଦ୍ୱାରା ଶୋଭିତ ହୋଇ, ପତଗେନ୍ଦ୍ର (ଗରୁଡ଼) ପୃଷ୍ଠରେ ପ୍ରସ୍ଫୁଟିତ ମୁଖାରବିନ୍ଦ ଓ ସ୍ଫୁରିତ ଅଧର ହୋଇ କହିଲେ—

"ସାଗରସ୍ୟୋତ୍ତରେ ତୀରେ ମହାନଦ୍ୟାସ୍ତୁ ଦକ୍ଷିଣେ ।
ସ ପ୍ରଦେଶଃ ପୃଥିବ୍ୟାଂହି ସର୍ବତୀର୍ଥ ଫଳପ୍ରଦ ॥
ତତ୍ର ଯେ ମନୁଜା ବ୍ରହ୍ମାନ୍ନିବସନ୍ତି ସୁବୁଦ୍ଧୟଃ ।
ଜନ୍ମାନ୍ତର କୃତାନାଂଚ ପୁଣ୍ୟାନାଂ ଫଳ ଭାଗିନଃ ॥
ନାଽଲ୍ପ ପୁଣ୍ୟାଃ ପ୍ରଜାୟନ୍ତେ ନାଽଭକ୍ତା ମୟିପଦ୍ମଜ ।
ଏକାମ୍ରକାନନ ନାଦ୍ୟା ବଦକ୍ଷିଣୋ-ଦଧିତୀର ଭୂଃ ॥
ପଦାତ୍ପଦାତ୍ ଶ୍ରେଷ୍ଠତମଃ କ୍ରମାତ୍ପରମ ପାବନଃ ।
ସିନ୍ଧୁତୀରେ ତୁ ଯୋ ବ୍ରହ୍ମାନ୍ ରାଜତେ ନୀଳ ପର୍ବତଃ ॥
ପୃଥିବ୍ୟାଂ ଗୋପିତଂ ସ୍ଥାନଂ ତବ ଚ୍ୟାଽପି ସୁଦୁର୍ଲଭମ୍ ।
ସୁର ସୁରଣାଂ ଦୁଜ୍ଞେୟଂ ମାୟୟାଽଚ୍ଛାଦିତଂ ମମ ॥"
ସ୍କନ୍ଦପୁରାଣ, ବୈଷ୍ଣବ ଖଣ୍ଡ ୫ମ ଅଧ୍ୟାୟ,
ଶ୍ଳୋକ ୩୧-୩୫ ।

ଅର୍ଥାତ୍, ଏହି ସାଗରର ଉତ୍ତର ତୀରରେ ମହାନଦୀର ଦକ୍ଷିଣ ଦିଗରେ ଏହି ଜଗନ୍ନାଥ କ୍ଷେତ୍ର ବିଦ୍ୟମାନ । ଏହା ସବୁ ତୀର୍ଥର ଫଳ ପ୍ରଦାନରେ ସମର୍ଥ । ପବିତ୍ର ହୃଦୟ ହୋଇ ମନୁଷ୍ୟ ଏହି କ୍ଷେତ୍ରରେ ବାସକଲେ ସେ ଅଶେଷ ଜନ୍ମର ପୁଣ୍ୟଫଳ ଲାଭକରେ । ଅଳ୍ପପୁଣ୍ୟ ମାନବ ଏଠାରେ ଜନ୍ମ ହୁଅନ୍ତି ନାହିଁ ଏବଂ ଏଠାରେ ସମସ୍ତେ ମୋର ଭକ୍ତ ଅଟନ୍ତି । ଏକାମ୍ରକାନନ

(ଭୁବନେଶ୍ୱର)ଠାରୁ ଆରମ୍ଭ କରି ଦକ୍ଷିଣ ସମୁଦ୍ରର ତୀର ପର୍ଯ୍ୟନ୍ତ ବିସ୍ତୃତ ଏହି ଭୂମି ପ୍ରତିପଦରେ ପୁଣ୍ୟ ଫଳ ପ୍ରଦାନ ପାଇଁ ସମର୍ଥ ଓ ପରମ ପବିତ୍ର ଅଟେ । ସିନ୍ଧୁତୀରବର୍ତ୍ତୀ ଏହି ନୀଳଶୈଳ ପୃଥିବୀର ପରମ ଦୁର୍ଲ୍ଲଭ ଓ ଗୋପନୀୟ ସ୍ଥାନ । ଏହା ମୋର ମାୟାରେ ଆଚ୍ଛାଦିତ ହୋଇଥିବାରୁ ସୁର ଓ ଅସୁର ତଥା ମାନବମାନଂକର ଅଗୋଚରରେ ରହିଛି ।

ପୁରାଣକାର ପ୍ରସଙ୍ଗକ୍ରମେ ରୋହିଣୀକୁଣ୍ଡର ମହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ନୀଳାଦ୍ରିର ଅଭ୍ୟନ୍ତରରେ, କଳ୍ପଦ୍ରୁମ ମୂଳରେ ବାରୁଣୀ (ପଶ୍ଚିମ) ଦିଗରେ ରୋହିଣୀ କୁଣ୍ଡ ନାମରେ ଖ୍ୟାତ ଏକ କୁଣ୍ଡ ରହିଛି । ତାହାର ତଟଭୂମିରେ ବାସ କରୁଥିବା ବିଷ୍ଣୁଙ୍କୁ ଚର୍ମଚକ୍ଷୁରେ ଦର୍ଶନ କରୁଥିବା ଲୋକ ଓ ଏହାର ଜଳ ସ୍ପର୍ଶରେ ଅଳ୍ପପୁଣ୍ୟବାନ୍ ବ୍ୟକ୍ତି ସାଯୁଜ୍ୟ-ଲାଭକରିବ । ବିଷ୍ଣୁଂକର ମାୟାରେ ପୁରୁଷୋତ୍ତମ କ୍ଷେତ୍ର ଶ୍ରୁତି, ସ୍ମୃତି, ଇତିହାସ ଓ ପୁରାଣରେ ଗୋପନୀୟଥିବା କଥାମଧ ଏଥିରେ ବର୍ଣ୍ଣିତ ହୋଇଛି ।

ରଥ ନିର୍ମାଣ ପ୍ରସଙ୍ଗରେ ଏଥିରେ ସ୍ପଷ୍ଟ ଉଲ୍ଲେଖ ରହିଛି ଯେ ଦୁକୂଳ ଓ ରତ୍ନମାଳାରେ ରଥ ଗୁଡ଼ିକ ଭୂଷିତ ହେବ । ଜଗନ୍ନାଥଙ୍କର ରଥ 'ଗରୁଡ଼ଧ୍ୱଜ' ସୁଭଦ୍ରାଙ୍କର ରଥ 'ପଦ୍ମଧ୍ୱଜ' ଓ ବଳରାମଙ୍କ ରଥ 'ତାଳଧ୍ୱଜ' ଦ୍ୱାରା ଚିହ୍ନିତ ହେବ ବୋଲି ଏଥିରେ କୁହାଯାଇଛି । ଜଗନ୍ନାଥ, ସୁଭଦ୍ରା ଓ ବଳଦେବଙ୍କର ରଥର ପକ୍ଷ ଗୁଡ଼ିକର ସଂଖ୍ୟା ଯଥାକ୍ରମେ ଷୋହଳ, ବାଆର, ଚଉଦ ଓ ଚକଗୁଡ଼ିକର ସଂଖ୍ୟା ତଦନୁସାରେ ଷୋହଳ, ବାଆର ଓ ଚଉଦ ହେବ ବୋଲି ସ୍କନ୍ଦ ପୁରାଣରେ ଉଲ୍ଲେଖ ରହିଛି । ଜଗନ୍ନାଥ, ସୁଭଦ୍ରା ଓ ବଳରାମଙ୍କ ରଥର ବିସ୍ତାର ଯଥାକ୍ରମେ ଷୋହଳ, ବାଆର ଓ ଚଉଦ ହେବ ବୋଲି ନିର୍ଦ୍ଦେଶିତ ହୋଇଛି । ରଥ ନିର୍ମାଣବିଧି ପ୍ରସଙ୍ଗରେ ରଥର ଆକୃତି ଉପକରଣ, ସାଜ ସଜ୍ଜା ଓ ଏଥିରେ ପଦ୍ମ, ସ୍ୱସ୍ତିକ, କୁମ୍ଭ ପ୍ରଭୃତିର ଚିତ୍ର ଅଂକିତ ହୋଇ ଏଗୁଡ଼ିକ ଶୋଭିତ ହେବ ବୋଲି ଏଥିରେ ସ୍ପଷ୍ଟ ଉଲ୍ଲେଖ ରହିଛି । ରଥକୁ ସୁଦୃଢ଼ କରି ନିର୍ମାଣ କରିବା ପାଇଁ ଏଥିରେ ସତର୍କବାଣୀ ଶୁଣାଇ ଦିଆଯାଇଛି । ରଥ ଟାଣିଲାବେଳେ ଅତି ସାବଧାନତା ଅବଲମ୍ବନ କରିବା ପାଇଁ

ଏଥିରେ ନିର୍ଦ୍ଦେଶ ଅଛି । ନହେଲେ ଯେଉଁ ବିପର୍ଯ୍ୟୟ ଘଟିବ ତା'ର ବର୍ଣ୍ଣନା ଦେଇ ସ୍କନ୍ଦ ପୁରାଣ ଲେଖିଛି—

"ଈଷା ଭଙ୍ଗେ ଦ୍ୱିଜ ଭୟଂ ଭଗ୍ନେଽକ୍ଷେ କ୍ଷତ୍ରିୟକ୍ଷୟଃ ।
ତୁଲା ଭଂଗେ ବୈଶ୍ୟନାଶଃ ଶମ୍ୟା ଶୂଦ୍ର ଭୟଂ ଭବେତ୍ ॥
ଧୁରାଭଂଗେ ତ୍ୱନାବୃଷ୍ଟିଃ ପୀଠ ଭଙ୍ଗେ ପ୍ରଜାଭୟମ୍ ।
ପର ଚକ୍ରାଗମଂ ବିଦ୍ୟା ଚକ୍ରଭଂଗେ ରଥସ୍ୟତୁ ॥
ଧ୍ୱଜସ୍ୟ ପତନେ ବିପ୍ରା ନୃପୋଽନ୍ୟୋ ଜାୟତେ ଧ୍ରୁବମ୍ ।
ପ୍ରତିମା ଭଙ୍ଗତାସ୍ୱାଂତୁ ରାଜ୍ଞୋମରଣମାଦ୍ଦିଶେତ୍ ॥"

ସ୍କନ୍ଦପୁରାଣ-ବୈଷ୍ଣବଖଣ୍ଡ ୫ମ ଅଧ୍ୟାୟ
ଶ୍ଳୋକ ୭୧-୭୩

'ବୈଶାଖସ୍ୟାଽମଳେ ପକ୍ଷେ ତୃତୀୟା ପାପ ନାଶିନୀ' ତିଥିରେ ରଥଯାତ୍ରା ଅନୁଷ୍ଠିତ ହେବ ବୋଲି ସ୍କନ୍ଦ ପୁରାଣ କହୁଛି । ଶୟନୋତ୍ସବ ବିଷୟରେ ବିସ୍ତୃତ ବିବରଣୀ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ । ଚତୁର୍ମାସ୍ୟାରେ ପୁରୁଷୋତ୍ତମ କ୍ଷେତ୍ରରେ ବାସ କରିବାର ଫଳ ବିଷୟରେ ପୁରାଣକାର ବିସ୍ତୃତାକାରରେ ବର୍ଣ୍ଣନା କରିଛନ୍ତି । ଚତୁର୍ମାସ୍ୟାରେ ଜଗନ୍ନାଥଙ୍କ ଦର୍ଶନ କଲେ ଯେଉଁ ପୁଣ୍ୟ ମିଳେ ତାହା ଅନ୍ୟ ମାସ ଗୁଡ଼ିକରେ ଦର୍ଶନର ପୁଣ୍ୟଠାରୁ ଅଧିକ । ଚତୁର୍ମାସ୍ୟାରେ ଏହି କ୍ଷେତ୍ରରେ ନିବାସ କଲେ ସବୁକ୍ଷେତ୍ରରେ ବାସ କରିବାର ଫଳ ମିଳେ । ଆଷାଢ଼ ଶୁକ୍ଳପକ୍ଷ ଏକାଦଶୀରେ ଏହି ଶୟନ ମହୋତ୍ସବ ଅନୁଷ୍ଠିତ ହୁଏ ।

ଜଗନ୍ନାଥ ଧର୍ମ ଓ ସଂସ୍କୃତି ଉପରେ ଆଧାରିତ ୫ମ ଅଧ୍ୟାୟରେ ଜଗନ୍ନାଥଙ୍କର ମହାପ୍ରସାଦର ମହତ୍ତ୍ୱ କଥିତ ହୋଇଛି । ଦରିଦ୍ର, କୃପଣ, ଗୃହସ୍ଥ, ପ୍ରଭୁ, ବିଦେଶୀ କିମ୍ବା ସ୍ୱଦେଶୀ ବିପ୍ରଙ୍କର ମହାପ୍ରସାଦ ସେବନ ପାଇଁ ସମସ୍ତେ ଯୋଗ୍ୟ ବୋଲି କୁହାଯାଇଛି । ଜାତି, ବଂଶ, ଧର୍ମ ଓ ପଦମର୍ଯ୍ୟାଦାର ବିଚାର ନ କରି ସମସ୍ତେ ଅହଂକାର ଶୂନ୍ୟ ହୋଇ ନିର୍ବିକାର ଚିତ୍ତରେ ଗଙ୍ଗାଜଳ ପରି ପବିତ୍ର ମହାପ୍ରସାଦ ସେବା କରିବା ପାଇଁ ଜୈମିନି କହିଛନ୍ତି ।

ଏହା ସର୍ବ ରୋଗହାରୀ, ପୁତ୍ର, ପୁତ୍ରୀବୃଦ୍ଧିକାରୀ, ଦାରିଦ୍ର୍ୟ ଦୂରୀକରଣ ସମର୍ଥ ଓ ଆୟୁପ୍ରଦ ଅଟେ । ଅପରିମିତ ତେଜ ସଂପନ୍ନ ବିଷ୍ଣୁଙ୍କର ଏହି ମହାପ୍ରସାଦ ସେବନରେ ଅଶେଷ ପାପ ମୋଚନ ହେବ ବୋଲି ଏଥିରେ ବର୍ଣ୍ଣିତ ହୋଇଛି । ମହାପ୍ରସାଦ ନିନ୍ଦାରେ କୁମ୍ଭୀପାକ ନର୍କରେ ପତିତ ହେବା କଥା ମଧ୍ୟ କୁହାଯାଇଛି ।

ବହୁ ସମୟ ପର୍ଯ୍ୟନ୍ତ ରକ୍ଷିତ, ଶୁଷ୍କ, ଦୂର ଦେଶରୁ ଆନୀତ ଓ କେଉଁ ସ୍ଥାନରୁ ପ୍ରାପ୍ତ ହେଉ ଥାଉ ପଛକେ ମହାପ୍ରସାଦ ନିର୍ବିକାରରେ ସେବନୀୟ । ଉପବାସୀ, ଅଶୁଚିଗ୍ରସ୍ତା ନାରୀ ଏହାକୁ ଭକ୍ଷଣ କରି ଭଗବତ୍ ସାନ୍ନିଧ ଲଭ କରିବ । କୁକୁର ମୁଖରୁ ପତିତ ମହାପ୍ରସାଦ କଣିକାକୁ, ବ୍ରାହ୍ମଣ ଭକ୍ଷଣ କରିବା ପାଇଁ ଏଥିରେ ନିର୍ଦ୍ଦେଶିତ ହୋଇଛି ।' ଗଙ୍ଗାଜଳ ସଦୃଶ ପବିତ୍ର ଏହି ମହାପ୍ରସାଦର ଦର୍ଶନରେ ସ୍ୱର୍ଗପ୍ରାପ୍ତି ଓ ଭକ୍ଷଣରେ ଅଶେଷ ପାପର ବିନାଶ ହେବ ବୋଲି କୁହାଯାଇଛି । ସ୍କନ୍ଦ ପୁରାଣ ଭାଷାରେ—

"ଚିରସ୍ଥମପି ସଂଶୁଷ୍କଂ ନୀତଂ ବା ଦୂର ଦେଶତଃ ।
ଯଥାତଥୋପଯୁକ୍ତଂ ତତ୍ସର୍ବ ପାପାପନୋଦନଂ ॥
କୁକୁରସ୍ୟ ମୁଖାଦ୍ ଭ୍ରଷ୍ଟଂ ତଦନ୍ନଂ ପତିତଂ ଯଦି ।
ବ୍ରାହ୍ମଣେନାଽପି ଭୋକ୍ତବ୍ୟମିତରେଷ୍ଟାଂ ତୁକା କଥା ॥
ଉଚ୍ଛିଷ୍ଟୋ ବା ଭୁକ୍ତବାନ୍ ବାଽପି ନୋପବାସଂ ଚ କୁର୍ବତା ।
ଅଶୁଚିବାପ୍ୟ ନାତ୍ରାପି ମନସା ପାପମାଚରନ୍ ।
ପ୍ରାପ୍ତ ମାତ୍ରେଣ ଭୋକ୍ତବ୍ୟଂ ନାଽତ୍ର କାର୍ଯ୍ୟା ବିଚାରଣା ॥
ନୈବେଦ୍ୟାନଂ ଜଗଦ୍‌ଭର୍ତ୍ତୁର୍ଗାଙ୍ଗ ବାରି ସମଂ ସ୍ମୃତମ୍ ।
ଦୃଷ୍ଟୈଃ ସ୍ୱର୍ଗାଦି ସଂପ୍ରାପ୍ତି ଭକ୍ଷଣାଚ୍ଛାଽଘ ନାଶନମ୍ ॥"

ସ୍କନ୍ଦ ବୈଷ୍ଣବ ଖଣ୍ଡ ୯ମ ଅଧ୍ୟାୟ ଶ୍ଳୋକ···୧୭-୧୯

ମୂଳତଃ ଶୈବ ପୁରାଣ ଭାବରେ ଗୃହୀତ ହେଲେ ହେଁ ଆଧ୍ୟାତ୍ମିକ ସାଧନା ଦୃଷ୍ଟିରୁ ଉଦାର ମନୋବୃତ୍ତି ପୋଷଣ କରି ପୁରାଣକାର ଏଥିରେ ବୈଷ୍ଣବ କ୍ଷେତ୍ର ଓ ବିଷ୍ଣୁ ଉପାସନା ପଦ୍ଧତିର ଉପସ୍ଥାପନା କରିଛନ୍ତି । ଜଗନ୍ନାଥ

ସଂସ୍କୃତର ବିସ୍ତୃତ ବିବରଣୀ ଏଥିରେ ରହିଥିବାରୁ ସ୍କନ୍ଦ ପୁରାଣ ଉତ୍କଳୀୟଙ୍କ ପକ୍ଷରେ ଅତି ମୂଲ୍ୟବାନ୍ ଓ ଆକର୍ଷଣୀୟ ହୋଇ ଉଠିଛି କହିଲେ ଅତ୍ୟୁକ୍ତି ହେବନାହିଁ ।

---

**ସହାୟକ ଗ୍ରନ୍ଥସୂଚୀ :**


୧ । ସ୍କନ୍ଦ ପୁରାଣ—ସଂକଳକ ପଣ୍ଡିତ ଶ୍ରୀ ରାମ ଶର୍ମା ଆଚାର୍ଯ୍ୟ

ଖ୍ୱାଜା କୁତୁବ୍, ବରେଲି ।

୨ । ପୁରାଣ ବିମର୍ଶ—ଡକ୍ଟର ବଳଦେବ ଉପାଧ୍ୟାୟ

୩ । ବିଷ୍ଣୁପୁରାଣ ମୁଖବନ୍ଧ—H. H. Wilson.

୪ । History of Indian Philosophy Part III—
By Surendranath Dasgupta.

୫ । History of Sanskrit Literature—
By A. A. Macdonal

୬ । A History of Sanskrit Literature—
By Varada Chari

# ପ୍ରାଚୀନ ଜ୍ଞାନକୋଷ-
# ଅଗ୍ନି ପୁରାଣ

ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ

## ପୁରାଣ କଣ ?

'ପୁରାଣ' ଶବ୍ଦର ଅର୍ଥ ହେଉଛି ପ୍ରାଚୀନ । ପ୍ରାଚୀନ ବିଷୟମାନଙ୍କୁ ପୁରାଣରେ ଲୋକପ୍ରିୟ ଶୈଳୀରେ ଏପରି ପରିବେଷିତ ହୋଇଥାଏ ଯେ, ତାହା ନିତ୍ୟ ନୂତନ ମନେ ହୁଏ । ତେଣୁ ନିରୁକ୍ତକାର 'ପୁରାଣ' ଶବ୍ଦର ବ୍ୟାଖ୍ୟା କରି କହିଛନ୍ତି—

'ପୁରା ନବଂ ଭବତି ଇତି ପୁରାଣମ୍' (୧)

ବାୟୁ ପୁରାଣରେ ପୁରାଣ ଶବ୍ଦର ସଂଜ୍ଞା ନିମ୍ନପ୍ରକାରେ ଦେଖିବାକୁ ମିଳେ—

"ଯସ୍ମାତ୍ ପୁରା ହ୍ୟନତୀଦଂ ପୁରାଣଂ ତେନଂ ତତ୍ ସ୍ମୃତମ୍ ।
ନିରୁକ୍ତମସ୍ୟ ଯୋ ବେଦ ସର୍ବପାପୈଃ ପ୍ରମୁଚ୍ୟତେ । (୨)

ଏଥିରୁ ଜଣାଯାଏ ଯେ, ପ୍ରାଚୀନ କାଳରେ ପୁରାଣ ଅନୁଶୀଳନ ଉପରେ ଲୋକେ ଗୁରୁତ୍ୱ ଆରୋପ କରୁଥିଲେ ଏବଂ ପୁରାଣର ତାତ୍ପର୍ଯ୍ୟ ଅବବୋଧ ଦ୍ୱାରା ସମସ୍ତପାପ ଦୂରୀଭୂତ ହୁଏ ବୋଲି ଧାରଣା ପୋଷଣ କରୁଥିଲେ । ପ୍ରାଚୀନ ପରମ୍ପରା ଏଥିରେ ସଂରକ୍ଷିତ ହୋଇଥିବାରୁ ବା ପ୍ରାଚୀନ ପରମ୍ପରାର ରୂପରେଖ ଏଥିରୁ ଯଥାର୍ଥ ଭାବରେ ମିଳୁଥିବାରୁ ଏହାକୁ ପୁରାଣ କୁହାଯାଏ । ତେଣୁ 'ପଦ୍ମ ପୁରାଣ'ରେ କୁହାଯାଇଛି—

---

୧ । ନିରୁକ୍ତ (୩ । ୧୯)
୨ । ବାୟୁ (୧ । ୨୦୩)

'ପୁରା ପରମ୍ପରା ବକ୍ଷି ପୁରାଣଂ ତେନ ତତ୍ ସ୍ମୃତମ୍' (୩)

ବ୍ରହ୍ମାଣ୍ଡପୁରାଣରେ ମଧ୍ୟ ପୁରାଣର ପ୍ରାଚୀନତା ସ୍ୱୀକାର କରି ତାହାର ପରିଭାଷା କରାଯାଇଛି...

'ଯସ୍ମାତ୍ ପୁରା ହ୍ୟଭୂଚ୍ଚୈତତ୍ ପୁରାଣଂ ତେନ ତତ୍ ସ୍ମୃତମ୍ ।
ନିରୁକ୍ତମସ୍ୟ ଯୋ ବେଦ ସର୍ବପାପୈଃ ପ୍ରମୁଚ୍ୟତେ ।। (୪)

ଭାରତୀୟ ଦୃଷ୍ଟିକୋଣରେ ପୁରାଣ ହେଉଛି ବେଦ ପରେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ରଚନା ଓ ପଞ୍ଚମବେଦ । ବେଦୋକ୍ତ ପୁରାତନତତ୍ତ୍ୱ ସମୂହକୁ ନୂତନ ବା ନବ ଭାବରେ ଅନୁରଞ୍ଜିତକରି ପୁରାଣ ତା'ର ନାମକୁ ଚରିତାର୍ଥ କରୁଅଛି । ତେଣୁ ଶତପଥ ଓ ବୃହଦାରଣ୍ୟକ ଉପନିଷଦରେ ପୁରାଣ ମଧ୍ୟ ବେଦ ସହିତ ସମୁତ୍ପନ୍ନ ହୋଇଥିବା କଥା ଉଲ୍ଲେଖ ହୋଇଛି । (୫) ଏଥିରୁ ପୁରାଣର ପ୍ରାଚୀନତା ଓ ମହତ୍ତ୍ୱ ସ୍ୱତଃ ପ୍ରତିପନ୍ନ ହୁଏ । ଏପରିକି ବେଦସମୂହ ପୁରାଣ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ବେଦାର୍ଥ ଅପେକ୍ଷା ପୁରାଣାର୍ଥକୁ ଗୁରୁତ୍ୱ ଦିଆଯାଇଛି । (୬) ତେଣୁ ମହାଭାରତରେ କୁହାଯାଇଛି—

'ଇତିହାସ ପୁରାଣାଭ୍ୟାଂ ବେଦଂ ସମୁପବୃଂହୟେତ୍ ।
ବିଭେତ୍ୟଳ୍ପଶ୍ରୁତାଦ୍ ବେଦୋ ମାମୟଂ ପ୍ରହରିଷ୍ୟତି ।।

---

୩ । ପଦ୍ମ ପୁରାଣ (୫ । ୨ । ୫୩)

୪ । ବ୍ରହ୍ମାଣ୍ଡ ପୁରାଣ (୧ । ୧ । ୧୭୩)

୫. ଶତପଥ—୧୪ । ୬ । ୧୦ । ୬
ବୃହଦାରଣ୍ୟକ—୨ । ୪ । ୧୦

୬. ବେଦାର୍ଥାଦଧିକଂ ମନ୍ୟେ ପୁରାଣାର୍ଥଂ ବରାନନେ ।
ବେଦାଃ ପ୍ରତିଷ୍ଠିତାଃ ସର୍ବେ ପୁରାଣେ ନାତ୍ର ସଂଶୟଃ ।।
—ନାରଦୀୟ ପୁରାଣ—୨ । ୨୪ । ୧୭

ଅର୍ଥାତ୍ ଇତିହାସ ଓ ପୁରାଣ ଦ୍ୱାରା ବେଦକୁ ସମ୍ୟକ୍ ଭାବରେ ପୁଷ୍ଟ କରିବା ଉଚିତ୍ । ଅନ୍ୟଥା ନାସ୍ତିକମାନେ ମୋତେ ପ୍ରହାର କରିବେ ବୋଲି ବେଦ ଭୟ କରିଥାଆନ୍ତି ।

ଏଥିରୁ ଜଣାଯାଏ ଯେ, ପୁରାଣ ହେଉଛନ୍ତି ବେଦାର୍ଥର ପରିପୂରକ । ତେଣୁ ପୁରାଣର ଅନ୍ୟତମ ବ୍ୟୁତ୍ପତ୍ତି ହେଉଛି—'ପୁରାଣାତ୍ ପୁରାଣମ୍' । ବୈଦିକ ସାହିତ୍ୟର ଦୁରୂହତା, ଦୁରଧିଗମତା, ଓ ବେଦାର୍ଥ ନିର୍ଣ୍ଣୟରେ ମନୀଷୀମାନଙ୍କ ମଧ୍ୟରେ ମତଭେଦ ତଥା ସର୍ବୋପରି ବୈଦିକ ସାହିତ୍ୟ ଅନୁଶୀଳନ ସକାଶେ ସ୍ୱତନ୍ତ୍ର ପାଣ୍ଡିତ୍ୟପୂର୍ଣ୍ଣ ଶିକ୍ଷା ଆବଶ୍ୟକ ହେଉଥିବାରୁ ଏବଂ ଏହା କେବଳ ବ୍ରାହ୍ମଣମାନଙ୍କ ଦ୍ୱାରା ଅଧୀତବ୍ୟ ବୋଲି କୁହାଯାଇ ଗୋଟିଏ ଶ୍ରେଣୀ ବିଶେଷର ଗ୍ରନ୍ଥ ଭାବରେ ସୀମାବଦ୍ଧ ହୋଇଯିବା ଫଳରେ ବିପୁଳ ଜନତାର ଅଭିରୁଚିକୁ ଲକ୍ଷ୍ୟରଖି ପୁରାଣ ସାହିତ୍ୟ ଏକ ଉଦାର ଦୃଷ୍ଟି କୋଣରୁ ରଚିତ ହୋଇଥିଲା ଏବଂ ଏଥିରେ ଜ୍ଞାନରାଜ୍ୟର ବିଭିନ୍ନ ବିଷୟ ଉପନିବଦ୍ଧ ରହିଥିଲା ।

## ପୁରାଣ ପଞ୍ଚଲକ୍ଷଣ ଓ ପୁରାଣର ପରିଭାଷା—

ସଂସ୍କୃତ ସାହିତ୍ୟରେ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କଠାରୁ ପୁରାଣର ପ୍ରଭେଦ ଦର୍ଶାଇବା ସକାଶେ ପାଞ୍ଚଗୋଟି ଲକ୍ଷଣ ନିର୍ଦ୍ଦିଷ୍ଟ ହୋଇଛି । ସେହି ପାଞ୍ଚୋଟି ହେଉଛି—

"ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋ ମନ୍ୱନ୍ତରାଣି ଚ ।
ବଂଶାନୁଚରିତଂ ଚୈବ ପୁରାଣଂ ପଞ୍ଚଲକ୍ଷଣମ୍ ॥"

ଅର୍ଥାତ୍, (୧) ସର୍ଗ ବା ସୃଷ୍ଟି, (୨) ପ୍ରତିସର୍ଗ ବା ସୃଷ୍ଟିର ବିସ୍ତାର, ଲୟ ଓ ପୁନଃ ସୃଷ୍ଟି (୩) ସୃଷ୍ଟି ଆରମ୍ଭର ବଂଶାବଳୀ; (୪) ମନ୍ୱନ୍ତର ବା କେଉଁ କେଉଁ ମନୁ କେବେ କେବେ ଥିଲେ ଓ ସେ ସମୟରେ ଘଟିଥିବା ଘଟଣାବଳୀ; ଏବଂ (୫) ବଂଶାନୁଚରିତ ବା ସୂର୍ଯ୍ୟବଂଶୀୟ ଓ ଚନ୍ଦ୍ରବଂଶୀୟ ରାଜାମାନଙ୍କର ବର୍ଣ୍ଣନା—ଏହି ପାଞ୍ଚୋଟି ହେଉଛି ପୁରାଣର ବର୍ଣ୍ଣନୀୟ ମୁଖ୍ୟ ବିଷୟ ।

ଏହି ଲକ୍ଷଣ ପ୍ରାୟ ଅଧିକାଂଶ ପୁରାଣରେ ସମର୍ଥିତ ହୋଇଥିବା ଜଣାଯାଏ । (୭) କିନ୍ତୁ ପୁରାଣମାନଙ୍କରେ ଏହି ପାଞ୍ଚୋଟି ବିଷୟ ବ୍ୟତୀତ ଆହୁରି ଅନେକ କଥା ବର୍ଣ୍ଣିତ ହୋଇଥାଏ । ଏହାର ପକୃଷ୍ଟ ଉଦାହରଣ ହେଉଛି ଆମ୍ଭର ଆଲୋଚ୍ୟ ଅଗ୍ନି ପୁରାଣ । କାବ୍ୟମୀମାଂସାରେ ରାଜଶେଖର କିନ୍ତୁ ଉପର୍ଯ୍ୟୁକ୍ତ ପାଞ୍ଚୋଟି ଲକ୍ଷଣକୁ ଦ୍ୱି ପ୍ରକାରାନ୍ତରରେ ଗ୍ରହଣ କରିଛନ୍ତି (୮) ମାତ୍ର ଅର୍ଥଶାସ୍ତ୍ରର ଜୟମଙ୍ଗଳା ଟୀକାରେ ଉଦ୍ଧୃତ ଏକ ପ୍ରାଚୀନ ଶ୍ଳୋକରେ ସୃଷ୍ଟି, ପ୍ରବୃତ୍ତି, ସଂହାର, ଧର୍ମ ଓ ମୋକ୍ଷ ଏହି ପଞ୍ଚ ପ୍ରୟୋଜନକୁ ନେଇ ପଞ୍ଚ-ଲକ୍ଷଣାତ୍ମକ ପୁରାଣ ବ୍ରହ୍ମାଙ୍କ ଦ୍ୱାରା କଥିତ ହୋଇଥିବା ଉଲ୍ଲେଖ ଅଛି । (୯) ଏହି ପାଞ୍ଚଟି ଲକ୍ଷଣ ପୁରାଣ ପଞ୍ଚଲକ୍ଷଣ ନାମରେ ପ୍ରସିଦ୍ଧି ଲାଭ କରିଥିଲେ ସୁଦ୍ଧା ଉପପୁରାଣ ସହିତ ଅନ୍ୟତ୍ର ହୋଇଯାଉଥିବା କଥା ଭାଗବତ ଓ ବ୍ରହ୍ମବୈବର୍ତ୍ତ ପୁରାଣକାର ଲକ୍ଷ୍ୟ କରିଛନ୍ତି । ତେଣୁ ଭାଗବତରେ ପଞ୍ଚଲକ୍ଷଣ

୭. ମାର୍କଣ୍ଡେୟ ପୁରାଣ (୧୩୪ । ୧୩), ଅଗ୍ନି ପୁରାଣ (୧ । ୧୪), ଦେବୀ ଭାଗବତ (୧ । ୨ । ୨୮), ଭବିଷ୍ୟ ପୁରାଣ (୧ । ୨ । ୨-୫), ବ୍ରହ୍ମାଣ୍ଡପୁରାଣ (୧ । ୧ । ୩୭-୩୮), ବ୍ରହ୍ମବୈବର୍ତ୍ତପୁରାଣ (୪ । ୧୩୩ । ୭), ଗରୁଡ଼ପୁରାଣ (୧ । ୨୧୫ । ୧୪), କୂର୍ମପୁରାଣ (୧ । ୧ । ୧୨), ମତ୍ସ୍ୟ (୫୩ । ୬୫), ଶିବ ପୁରାଣ (୫ । ୧ । ୩୭), ସ୍କନ୍ଦପୁରାଣ (୭ । ୨ । ୮୪), ବରାହପୁରାଣ (୨ । ୪), ବିଷ୍ଣୁପୁରାଣ (୩ । ୬ । ୨୫), ସୌରପୁରାଣ (୯ । ୪) ଇତ୍ୟାଦି

୮. ସର୍ଗଃ ପ୍ରତିସଂହାରଃ କଳ୍ପୋ ମନ୍ୱନ୍ତରାଣି ବଂଶବିଧିଃ
ଜଗତୋ ଯତ୍ର ନିବଦ୍ଧଂ ତଦ୍ୱିଜ୍ଞେୟଂ ପୁରାଣମିତି ॥
(କାବ୍ୟମୀମାଂସା)

୯. ସୃଷ୍ଟି ପ୍ରବୃତ୍ତି ସଂହାରଧର୍ମ ମୋକ୍ଷ ପ୍ରୟୋଜନମ୍ ।
ବ୍ରହ୍ମଭିର୍ବିବିଧୈଃ ପ୍ରୋକ୍ତଂ ପୁରାଣଂ ପଞ୍ଚଲକ୍ଷଣମ୍ ॥
(କୌଟିଲ୍ୟ ଅର୍ଥଶାସ୍ତ୍ର, ଜୟମଙ୍ଗଳା ଟୀକା ୧ । ୫)

ପରିବର୍ତ୍ତେ ଦଶ ଲକ୍ଷଣ (୧୦) ଉକ୍ତ ହୋଇଛି । ଏଥିରେ ବୃତ୍ତି ବା ଜୀବିକା, ରକ୍ଷା ବା ଭଗବାନଙ୍କର ଅବତାର, ମୁକ୍ତି, ହେତୁ ବା ଜୀବ, ଓ ଅପାଶ୍ରୟ ବ୍ରହ୍ମ ବିଷୟ ଅଧିକ ପ୍ରଯୋଗ କରାଯାଇଛି । ମତ୍ସ୍ୟ ପୁରାଣରେ ପୁରାଣର ପଞ୍ଚ ଲକ୍ଷଣ କୁହାଗଲାପରେ ଅନ୍ଧୁର କେତେକ ପ୍ରଣିଧାନ ଯୋଗ୍ୟ ବିଷୟ ଉଲ୍ଲେଖ କରାଯାଇଛି ଯାହାକି ପୁରାଣର ସଂଜ୍ଞା ନିରୂପଣରେ ଅତ୍ୟନ୍ତ ସହାୟକ ହୋଇଥାଏ । ମତ୍ସ୍ୟ ପୁରାଣ ଅନୁସାରେ ବ୍ରହ୍ମା, ବିଷ୍ଣୁ, ସୂର୍ଯ୍ୟ ଓ ଶିବଙ୍କର ମାହାତ୍ମ୍ୟ କୀର୍ତ୍ତନ ସହ ଭୁବନର ସୃଷ୍ଟି ଓ ଲୟ ଇତ୍ୟାଦି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଯେଉଁଥିରେ ଧର୍ମ, ଅର୍ଥ, କାମ ଓ ମୋକ୍ଷ ବିଷୟ ବର୍ଣ୍ଣିତ ହୋଇଥାଏ ଏବଂ ତାହାର ଅନୁଷ୍ଠାଚରଣ କଲେ ଯେଉଁ ଫଳାଫଳ ହେବ ତାହାର ଉଲ୍ଲେଖ କରାଯାଇଥାଏ—ତାହାହିଁ ହେଉଛି ପୁରାଣ ।

## ପୁରାଣର ବର୍ଗୀକରଣ—

ପଦ୍ମ ପୁରାଣରେ ଅଷ୍ଟାଦଶ ପୁରାଣକୁ ସାତ୍ତ୍ୱିକ, ରାଜସ ଓ ତାମସ ଭେଦରେ ବର୍ଗୀକରଣ କରାଯାଇ ପ୍ରତି ବର୍ଗରେ ଛଅଗୋଟି ଲେଖାଏଁ ପୁରାଣକୁ ଅନ୍ତର୍ଭୁକ୍ତ କରାଯାଇଛି । ସାତ୍ତ୍ୱିକ ପୁରାଣରେ ଭଗବାନ ବିଷ୍ଣୁଙ୍କ ମାହାତ୍ମ୍ୟ ସମଧିକ ଭାବରେ ବର୍ଣ୍ଣିତ, ରାଜସ ପୁରାଣମାନଙ୍କରେ ବ୍ରହ୍ମାଙ୍କ ପ୍ରାଧାନ୍ୟ ବର୍ଣ୍ଣିତ ଓ ତାମସ ପୁରାଣମାନଙ୍କରେ ଭଗବାନ ଶଙ୍କରଙ୍କର ମହତ୍ତ୍ୱ କଥିତ

---

୧୦ । ସର୍ଗୋଽସ୍ୟାଥ ବିସର୍ଗଶ୍ଚ ବୃତ୍ତିରକ୍ଷାନ୍ତରାଣି ଚ ।
ବଂଶୋ ବଂଶାନୁଚରିତଂ ସଂସ୍ଥା ହେତୁରପାଶ୍ରୟଃ ॥
ଦଶଭିର୍ଲକ୍ଷଣୈର୍ଯୁକ୍ତଂ ପୁରାଣଂ ତଦ୍ୱିଦୋ ବିଦୁଃ
କେଚିତ୍ ପଞ୍ଚବିଧଂ ବ୍ରହ୍ମନ୍ ମହଦଲ୍ପବ୍ୟବସ୍ଥୟା ॥

(ଭାଗବତ, ୧୧ । ୭ । ୯-୧୦

ହୋଇଥାଏ । (୧୧) ଏତଦ୍ ବ୍ୟତୀତ କେତେକ ମିଶ୍ରିତ ପୁରାଣରେ ସରସ୍ୱତୀ ପ୍ରଭୃତି ଦେବୀଙ୍କର ମାହାତ୍ମ୍ୟ ବର୍ଣ୍ଣିତ ହୋଇଥିବା ଦେଖାଯାଏ ।

ପଦ୍ମ ପୁରାଣ ଅନୁସାରେ ପୁରାଣମାନଙ୍କର ବର୍ଗକୁ (୧୨) ନିମ୍ନଲିଖିତ ପ୍ରକାରେ ଦର୍ଶାଯାଇ ପାରେ—

| ସାତ୍ତ୍ୱିକ | ରାଜସ | ତାମସ |
|---|---|---|
| ୧ । ବିଷ୍ଣୁ | ୧ । ବ୍ରହ୍ମାଣ୍ଡ | ୧ । ମତ୍ସ୍ୟ |
| ୨ । ନାରଦ | ୨ । ବ୍ରହ୍ମବୈବର୍ତ୍ତ | ୨ । କୂର୍ମ |
| ୩ । ଭାଗବତ | ୩ । ମାର୍କଣ୍ଡେୟ | ୩ । ଲିଙ୍ଗ |
| ୪ । ଗରୁଡ଼ | ୪ । ଭବିଷ୍ୟ | ୪ । ଶିବ |
| ୫ । ପଦ୍ମ | ୫ । ବାମନ | ୫ । ସ୍କନ୍ଦ |
| ୬ । ବରାହ | ୬ । ବ୍ରହ୍ମ | ୬ । ଅଗ୍ନି |

ଉପର୍ଯ୍ୟୁକ୍ତ ବର୍ଗରୁ ଜଣାଯାଏ ଯେ ଅଗ୍ନି ପୁରାଣ ହେଉଛି ତାମସ ବର୍ଗର ଅନ୍ତର୍ଗତ । ମେଷ ବାହନ, ଲୋଳଜିହ୍ୱ, ସର୍ବଭକ୍ଷ ଅଗ୍ନିଦେବ ଯେ କି ତମ ମଧ୍ୟରେ ହିଁ ନିଜର ଆଲୋକଦୀପ୍ତ ବିଗ୍ରହ ପ୍ରଦର୍ଶନ କରିଥାଆନ୍ତି, ତାହାଙ୍କର ମାହାତ୍ମ୍ୟ ତମୋରାଶି ମଧ୍ୟରେ ହିଁ ପ୍ରକଟିତ ହୋଇଥାଏ । ଅଗ୍ନି

---

୧୧ । ସାତ୍ତ୍ୱିକେଷୁ ପୁରାଣେଷୁ ମାହାତ୍ମ୍ୟମଧିକଂ ହରେଃ ।
ରାଜସେଷୁ ଚ ମାହାତ୍ମ୍ୟମଧିକଂ ବ୍ରହ୍ମଣୋ ବିଦୁଃ ॥
ତଦ୍ୱଦଗ୍ନେଶ୍ଚ ମାହାତ୍ମ୍ୟଂ ତାମସେଷୁ ଶିବସ୍ୟ ଚ ।
ସଂକୀର୍ଣ୍ଣେଷୁ ସରସ୍ୱତ୍ୟାଃ ପିତୃଣାଂ ଚ ନିଗଦ୍ୟତେ ॥
(ମତ୍ସ୍ୟପୁରାଣ, ୫୩।୬୮-୬୯)

୧୨ । ମାତ୍ସ୍ୟଂ କୌର୍ମଂ ତଥା ଲୈଙ୍ଗ ଶୈବଂ ସ୍କାନ୍ଦଂ ତଥୈବଚ ।
ଆଗ୍ନେୟଂ ଚ ଷଡ଼େତାନି ତାମସାନି ନିବୋଧ ମେ ॥
ବୈଷ୍ଣବଂ ନାରଦୀୟଂ ଚ ତଥା ଭାଗବତଂ ଶୁଭମ୍ ।
ଗାରୁଡ଼ ଚ ତଥା ପାଦ୍ମଂ ବାରାହଂ ଶୁଭଦର୍ଶନେ ।
ସାତ୍ତ୍ୱିକାନି ପୁରାଣାନି ବିଜ୍ଞେୟାନି ଶୁଭାନି ବୈ ॥
ବ୍ରହ୍ମାଣ୍ଡଂ ବ୍ରହ୍ମବୈବର୍ତ୍ତଂ ମାର୍କଣ୍ଡେୟଂ ତଥୈବଚ ।
ଭବିଷ୍ୟଂ ବାମନଂ ବ୍ରାହ୍ମଂ, ରାଜସାନି ନିବୋଧ ମେ ॥
(ପଦ୍ମପୁରାଣ, ଉତ୍ତରଖଣ୍ଡ, ୨୬୩। ୧-୮୪)

ବୈଦିକ ବେଦ ଦୃଷ୍ଟିରେ ଅତ୍ୟନ୍ତ ପ୍ରାଚୀନ ହେଲେ ହେଁ ଆଲୋଚ୍ୟ ପୁରାଣଟି କିନ୍ତୁ ଅର୍ବାଚୀନ ବୋଲି ସର୍ବସମ୍ମତ । ଏହା ଶିବ ଭକ୍ତିମୂଳକ ପୁରାଣ ହୋଇଥିବାରୁ ତାମସ କୋଟିର ଅନ୍ତର୍ଗତ ।

## ଅଗ୍ନି ପୁରାଣ—

ଅଗ୍ନି ପୁରାଣରେ କେତେ ଶ୍ଲୋକ ଅଛି ସେ ବିଷୟରେ ବିଭିନ୍ନ ପୁରାଣରେ ମତଭେଦ ଦେଖାଯାଏ । ସମସ୍ତ ପୁରାଣ ସର୍ବସମ୍ମତ ଭାବରେ ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ଶ୍ଲୋକ ଥିବା କଥା କହୁଥିଲେ ଏବଂ ତଦନୁସାରେ ସେହି ପରିମାଣର ଶ୍ଲୋକ ଆମର ଆଲୋଚ୍ୟ ଅଗ୍ନି ପୁରାଣରେ ଦେଖାଯାଇଥିଲେ ଏହାର ପ୍ରାମାଣିକତା ନେଇ କୌଣସି ସଂଶୟ ସୃଷ୍ଟି ହେବାର ଅବକାଶ ନାହିଁ । କିନ୍ତୁ ଏଥିରେ ଭାଗବତ ଅନୁସାରେ ୧୫ ହଜାର ପାଞ୍ଚଶହ ଶ୍ଲୋକ, ଦେବୀ ଭାଗବତ ଅନୁସାରେ ୧୬ ହଜାର, ମତ୍ସ୍ୟ ଓ ସ୍କନ୍ଦପୁରାଣ ଅନୁସାରେ ୧୬ ହଜାର, ନାରଦୀୟ ପୁରାଣ ପ୍ରକାରେ ୧୨ ହଜାର ଶ୍ଲୋକ ଥିବା କୁହାଯାଇଛି । ଉପଲବ୍ଧ ଅଗ୍ନି ପୁରାଣରେ ମଧ୍ୟ ଏଥିରେ ମୋଟ ୧୨ ହଜାର ଶ୍ଲୋକ ଥିବା କଥା ଉଲ୍ଲିଖିତ ହୋଇଛି । ଅଗ୍ନି ପୁରାଣର ପ୍ରକାଶିତ ବିଭିନ୍ନ ସଂସ୍କରଣମାନଙ୍କ ମଧ୍ୟରୁ ବିବ୍ଲିଓଥିକା ଇଣ୍ଡିକା ଗ୍ରନ୍ଥମାଳା, ଆନନ୍ଦାଶ୍ରମ ଗ୍ରନ୍ଥମାଳା, ବମ୍ବେ ବେଙ୍କଟେଶ୍ୱର ଗ୍ରନ୍ଥମାଳା ଓ ଚୌଖମ୍ବା ଗ୍ରନ୍ଥମାଳାରେ ପ୍ରକାଶିତ ସଂସ୍କରଣ ପ୍ରଧାନ । ଆନନ୍ଦାଶ୍ରମ ସଂସ୍କରଣ ଅପେକ୍ଷା ବିବ୍ଲିଓଥିକା ସଂସ୍କରଣ ଏବଂ ତଦପେକ୍ଷା ଚୌଖମ୍ବା ସଂସ୍କରଣ ଅଧିକ ଶୁଦ୍ଧ ହୋଇଥିବାରୁ ଏଠାରେ ଚୌଖମ୍ବା ସଂସ୍କରଣ ବ୍ୟବହୃତ ହୋଇଛି ।

ମତ୍ସ୍ୟ ଓ ସ୍କନ୍ଦ ପୁରାଣ ଅନୁସାରେ ଯେଉଁ ପୁରାଣରେ ଈଶାନକଳ୍ପ ବିଷୟ ରହିଛି ଓ ଯାହା ଅଗ୍ନିଙ୍କ ଦ୍ୱାରା ବଶିଷ୍ଠଙ୍କ ପ୍ରତି କଥିତ ହୋଇଛି—ତାହା ହେଉଛି ଅଗ୍ନି ପୁରାଣ । (୧୩) କିନ୍ତୁ ଅଧୁନା ଉପଲବ୍ଧ ଅଗ୍ନି ପୁରାଣରେ ଯଦ୍ୟପି

---

୧୩ । ଯତ୍ତଦ୍ ଈଶାନକଂ କଳ୍ପଂ ଈଶାନକଳ୍ପସ୍ୟ ବୃତ୍ତାନ୍ତମଧିକୃତ୍ୟଚ ।
ବଶିଷ୍ଠାୟାଗ୍ନିନା ପ୍ରୋକ୍ତମାଗ୍ନେୟଂ ତତ୍ପ୍ରଚକ୍ଷତେ ॥
(ମତ୍ସ୍ୟ ୫୩।୨୮, ସ୍କନ୍ଦ ୭।୧।୨।୪୭)

ବଶିଷ୍ଠଙ୍କ ପ୍ରତି ଅଗ୍ନିଙ୍କ କଥନ ରହିଛି ତଥାପି ଏଥିରେ ଈଶାନକଳ୍ପ ବିଷୟ ଦେଖାଯାଏ ନାହିଁ, ତେଣୁ ବର୍ତ୍ତମାନ ଉପଲବ୍ଧ ଅଗ୍ନି ପୁରାଣକୁ ମତ୍ସ୍ୟ ଓ ସ୍କନ୍ଦ ପୁରାଣ ବର୍ଣ୍ଣିତ ଅଗ୍ନି ପୁରାଣ ବୋଲି ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହଁନ୍ତି। ବିଭିନ୍ନ ସ୍ମୃତି ଗ୍ରନ୍ଥମାନଙ୍କରେ ଅଗ୍ନିପୁରାଣର ବାକ୍ୟ ବୋଲି ମିଳୁଥିବା ଅଂଶ ବିଶେଷ ବର୍ତ୍ତମାନର ଅଗ୍ନିପୁରାଣ ସଂସ୍କରଣରେ ଦେଖାଯାଏ ନାହିଁ। ଏତଦ୍‌ବ୍ୟତୀତ ବିଭିନ୍ନ ସ୍ମୃତି ନିବନ୍ଧରେ 'କୁରୁଶାର୍ଦ୍ଦୂଳ, ବୀର, ରାଜନ୍, ନୃପ, ରାଜେନ୍ଦ୍ର ଇତ୍ୟାଦି ସମ୍ବୋଧନ କରି ଅମ୍ବରୀଷଙ୍କୁ ବଶିଷ୍ଠ ଧର୍ମବିଷୟକ ଉପଦେଶ ଦେଇଥିବା ଜଣାଯାଏ। (୧୪) ପୁଣି ତୀର୍ଥ ଚିନ୍ତାମଣିରେ ଅଗ୍ନି-ପୁରାଣରୁ ଉଦ୍ଧୃତ ଗୋଟିଏ ଶ୍ଳୋକକୁ 'ଧୂର୍ଜଟି ବକ୍ତା' ଥିବା ଏବଂ ଅନ୍ୟ ଗୋଟିଏ ଶ୍ଳୋକରୁ 'ଗଙ୍ଗାଙ୍କୁ ବକ୍ତ୍ରୀ କହୁଥିବା' ଜଣାଯାଏ। (୧୫) କିନ୍ତୁ ବର୍ତ୍ତମାନ ପ୍ରକାଶିତ ଅଗ୍ନିପୁରାଣରେ ବଶିଷ୍ଠ ଅମ୍ବରୀଷଙ୍କ କଥୋପକଥନ କିମ୍ବା ବଶିଷ୍ଠ ଗଙ୍ଗାଙ୍କ କଥୋପକଥନ କିମ୍ବା ଧୂର୍ଜଟିବକ୍ତାଥିବା ଦେଖିବାକୁ ମିଳେ ନାହିଁ। ଏଥିରୁ ବର୍ତ୍ତମାନ ଉପଲବ୍ଧ ଅଗ୍ନିପୁରାଣଟି ଯେ ଅର୍ବାଚୀନ ଏବଂ ଏତଦ୍‌ଭିନ୍ନ ଯେ ଅନ୍ୟ ଏକ ପ୍ରାଚୀନ ଅଗ୍ନି ପୁରାଣ ଥିଲା—ଏହା ସ୍ପଷ୍ଟ ଜଣାଯାଏ।

**ରଚନାକାଳ :—**

ଅଗ୍ନିପୁରାଣରେ କାବ୍ୟଶାସ୍ତ୍ରୀୟ ଅଂଶର ବିବେଚନା ପ୍ରସଙ୍ଗରେ ବିଦ୍ୱାନ-ମାନେ ଏହାର ନିର୍ମାଣକାଳ ସମ୍ବନ୍ଧରେ ଏକପ୍ରକାର ଅନୁମାନ କରନ୍ତି। ସେମାନଙ୍କ ମତରେ ଅଗ୍ନିପୁରାଣରେ ସାହିତ୍ୟଶାସ୍ତ୍ରୀୟ ଭାଗ ଦଣ୍ଡୀଙ୍କ କାବ୍ୟାଦର୍ଶ ଅପେକ୍ଷା ଅର୍ବାଚୀନ। ଦଣ୍ଡୀଙ୍କ ସମୟ ୭ମ ଶତାବ୍ଦୀ ବୋଲି ଗ୍ରହଣ କରାଯାଏ। ପୁଣି ଅନ୍ୟ ପକ୍ଷରେ ଅଗ୍ନିପୁରାଣ ହେଉଛି ଭୋଜରାଜଙ୍କ ସରସ୍ୱତୀ କଣ୍ଠା-ଭରଣର ପ୍ରଧାନ ଉପଜୀବ୍ୟ। ଭୋଜରାଜଙ୍କ ସମୟ ୧୧ ଶ ଶତାବ୍ଦୀ। ଅତଏବ

---

୧୪। ଦ୍ରଷ୍ଟବ୍ୟ ଦାନସାଗର, ଚତୁର୍ବର୍ଗଚିନ୍ତାମଣି, କୃତ୍ୟରତ୍ନାକର, ଦାନକ୍ରିୟା କୌମୁଦୀ, ହରିଭକ୍ତି ବିଳାସ, ସ୍ମୃତିତତ୍ତ୍ୱ, କାଳସାର ଇତ୍ୟାଦି।

୧୫। ତୀର୍ଥ ଚିନ୍ତାମଣି ପୃ. ୨୦୭ ଓ ୨୬୩।

ଅଗ୍ନି ପୁରାଣରେ ଏହାକୁ ୭ମ ରୁ ୧୧ଶ ଶତାବ୍ଦୀ ମଧ୍ୟରେ ରଚିତ ହୋଇଥିବା କୁହାଯାଏ (୧୬) । ତନ୍ତୁ କେତେକଙ୍କ ମତରେ ଅଗ୍ନିପୁରାଣ ହେଉଛି ଦଣ୍ଡୀଙ୍କର ପୂର୍ବବର୍ତ୍ତୀ (୧୭) । ଡକ୍ଟର ସୁଶୀଲ କୁମାର ଦେ ଅଗ୍ନିପୁରାଣ ରଚନାକାଳ ନବମଶତାବ୍ଦୀର ପ୍ରାରମ୍ଭ ବୋଲି କହନ୍ତି (୧୮) । ପୁରାଣ ବିଷୟରେ ମହା ପଣ୍ଡିତ ଡକ୍ଟର ଆର୍.ସି. ହାଜରା କୁଟିଳ୍ ମତଭେଦ ଥିଲେ ମଧ୍ୟ ଅଗ୍ନିପୁରାଣକୁ ନବମ ଶତାବ୍ଦୀର ରଚନା ବୋଲି ସ୍ୱୀକାର କଲେ ବିଶେଷ ମତଭେଦର ଆଶଙ୍କା ନାହିଁ ବୋଲି କହିଛନ୍ତି (୧୯) । ଏହି ମତକୁ ସ୍ୱୀକାର କରିନେବାରେ ଅନ୍ୟ କେତେକ ସମର୍ଥକ ଆନୁଷଙ୍ଗିକ ଉପାଦାନ ମଧ୍ୟ ମିଳି ଯାଉଛି । ଅପର ବିଦ୍ୟା ମଧ୍ୟରେ ବିସ୍ତୃତ ଭାବରେ ଉଲ୍ଲିଖିତ ଛନ୍ଦବିଦ୍ୟା ୮ମ ଶତାବ୍ଦୀ ପୂର୍ବରୁ ପୁରାଣମାନଙ୍କରେ ସ୍ଥାନ ପାଇ ନ ଥିଲା । ଏହି ବିଷୟ ଅଗ୍ନି ପୁରାଣରେ ଆଲୋଚିତ ହୋଇଥିବାରୁ ଅଗ୍ନି ପୁରାଣ ନବମ ଶତାବ୍ଦୀର ରଚନା ବୋଲି କୁହାଯାଇ ପାରେ ।

---

୧୬. Dr. P.V. Kane—History of Sanskrit Poetics, pp. 2-5

୧୭. କନ୍ହୈୟାଲାଲ ପୋଦ୍ଦାର—'ସଂସ୍କୃତ ସାହିତ୍ୟକା ଇତିହାସ', ପୃ.୮୬.

୧୮. Dr. S. K. De—Sanskrit Poetics, Vol I. P. 104.

୧୯. Dr. R. C. Hazra—

"Inspite of these differences of opinions, there can be no serious objection if we hold that 'the present Agni Puran was compiled some time during the ninth century"—(Studies in the Puranic Records on Hindu Rites and Customs, p. 138. )

## ଅଗ୍ନି ପୁରାଣ ଓ ବହ୍ନି ପୁରାଣ—

ବିଭିନ୍ନ ପୁରାଣମାନଙ୍କରେ ଗରୁଡ଼ ପୁରାଣକୁ ଯେପରି ଗରୁଡ଼, ଗାରୁଡ଼, ତାର୍କ୍ଷ୍ୟ, ବୈନତେୟ ଇତ୍ୟାଦି କୁହାଯାଇଛି, ଅଗ୍ନି ପୁରାଣକୁ ସେହିପରି ଅଗ୍ନି, ଆଗ୍ନେୟ, ଅଗ୍ନି-ଉକ୍ତ, ବହ୍ନି ପୁରାଣ ଇତ୍ୟାଦି ନାମରେ ମଧ୍ୟ ଅଭିହିତ କରାଯାଇଛି । କିନ୍ତୁ ବହ୍ନି ପୁରାଣ ନାମରେ ଅଗ୍ନି ପୁରାଣଠାରୁ ସ୍ୱତନ୍ତ୍ର ଆଉ ଏକ ପୁରାଣ ରହିଛି । ପୁରାଣ ବିଶାରଦ୍ ଡକ୍ଟର ହାଜରା ଏହି ବହ୍ନି ପୁରାଣକୁ ହିଁ ଅଗ୍ନି ପୁରାଣର ମୂଳ ରୂପ ବୋଲି ମତ ଦିଅନ୍ତି (୨୦) ତାଙ୍କ ମତରେ ଅଗ୍ନି-ପୁରାଣର ପ୍ରାଚୀନ ନାମ ହେଉଛି ବହ୍ନି ପୁରାଣ । ବିଷ୍ଣୁ ପୁରାଣରେ ଯେପରି ବିଷ୍ଣୁ ମହିମା, ଶିବ ପୁରାଣରେ ଯେପରି ଶିବ ରହସ୍ୟ ସ୍ଥାନ ପାଇଛି, ଏହି ବହ୍ନି ପୁରାଣରେ ସେହିପରି ଅଗ୍ନିଙ୍କ ମହିମା ବିଶେଷ ଭାବରେ ସ୍ଥାନ ପାଇଥିଲା । ବର୍ତ୍ତମାନ ପ୍ରଚଳିତ ଅଗ୍ନି ପୁରାଣରେ କର୍ମକାଣ୍ଡ ଓ ତନ୍ତ୍ରର ପ୍ରାଧାନ୍ୟ ଦେଖାଯାଏ । ଏଥିରେ ଥିବା ଦୀକ୍ଷା ବିଧି, ରତ୍ନ ପରୀକ୍ଷା, କୋଷ ବ୍ୟାକରଣାଦି ବିଭିନ୍ନ ପରସ୍ପର ଅସଂଲଗ୍ନ ବିଷୟ ସମୂହକୁ ଦେଖି ବଲ୍ଲାଳସେନ ତାଙ୍କର 'ଦାନ ସାଗର'ରେ ଏହାକୁ ପୁରାଣ ଭାବରେ ଗ୍ରହଣ କରି ନାହାନ୍ତି । (୨୧)

---

୨୦ । Dr. R. C. Hazra—"Discovery of the Genuine Agneya—Poorana" (Journal of the Oriental Institute, Borroda, Vol. VI, No 4) and studies in the genuine Agneya Porana (Our Heritage, Vol V, No, 2)

୨୧ । ତାର୍କ୍ଷ୍ୟଂ ପୁରାଣମପରଂ ବ୍ରାହ୍ମମାଗ୍ନେୟମେବ ଚ ।
ତ୍ରୟୋବିଂଶତିସାହସ୍ରଂ ପୁରାଣମପି ବୈଷ୍ଣବମ୍ ॥
ଷଟ୍ ସାହସ୍ରମିତ ଲିଙ୍ଗଂ ପୁରାଣମପରଂ ତଥା ।
ଦୀକ୍ଷା ପ୍ରତିଷ୍ଠା ପାଷଣ୍ଡ ମୁକ୍ତି ରତ୍ନପରୀକ୍ଷଣୈଃ ॥
ମୃଷାବଂଶାନୁଚରିତୈଃ କୋଷବ୍ୟାକରଣାଦିଭିଃ ।
ଅସଙ୍ଗତ କଥାବନ୍ଧ ପରସ୍ପର ବିରୋଧିତଃ ॥
ତନ୍ମୀନ କେତନାଦୀନାଂ ଭଣ୍ଡପାଷଣ୍ଡଲିଙ୍ଗିନାମ୍ ।
ଲୋକବଞ୍ଚନମାଲୋକ୍ୟ ସର୍ବମେବାବଧୀରିତମ୍ ॥

## ଅଗ୍ନି ପୁରାଣ—ଏକ ପ୍ରାଚୀନ ଜ୍ଞାନକୋଷ—

ମଧ୍ୟକାଳୀନ ଭାରତବର୍ଷର ଯେଉଁ ସବୁ ବିଷୟରେ ଲୋକ ରୁଚି ଥିଲା, ଅଗ୍ନି ପୁରାଣ ହେଉଛି—ତାହାର ଏକ ଜ୍ଞାନକୋଷ । ଧର୍ମ, ଦର୍ଶନ, ରାଜନୀତି, ସମାଜନୀତି, କାବ୍ୟତତ୍ତ୍ୱ, ନାଟକ ପ୍ରକରଣ, କୋଷ, ଛନ୍ଦ, କଳା ଓ ବିଜ୍ଞାନ ପ୍ରଭୃତି ଜ୍ଞାନରାଜ୍ୟର ବିଭିନ୍ନ ବିଭାଗ ଉପରେ ଶ୍ଳୋକସଂଗ୍ରହ ଦ୍ୱାରା ସମୃଦ୍ଧ ହୋଇଥିବାରୁ ଅଗ୍ନିପୁରାଣକୁ ଏକ ଜ୍ଞାନକୋଷ ( Encyclopaedia ) କହିବାରେ ବହୁତ ସଙ୍ଗତି ରହିଛି । ଏଥିର ମୋଟ ୩୮୨ ( ମାହାତ୍ମ୍ୟକୁ ମିଶାଇଲେ ୩୮୩ ) ଅଧ୍ୟାୟରେ ସର୍ବମୋଟ ୧୧, ୪୫୭ ଶ୍ଳୋକ ଥିବା ଆନନ୍ଦାଶ୍ରମ ସଂସ୍କରଣ ଓ ପଣ୍ଡିତ ବଳଦେବ ଉପାଧ୍ୟାୟଙ୍କ ସମ୍ପାଦିତ ଚୌଖମ୍ବା ସଂସ୍କରଣରେ ଦେଖାଯାଏ । ପ୍ରଫେସର୍ ଉଇଲସନଙ୍କ ଅନୁକ୍ରମଣିକା ଅନୁସାରେ ଅଗ୍ନିପୁରାଣର ଶ୍ଳୋକସଂଖ୍ୟା ୧୨,୦୦୦ । ବିଭିନ୍ନ ପୁରାଣମାନଙ୍କରେ ଏହି ଶ୍ଳୋକ ସଂଖ୍ୟା ବିଷୟରେ ମତାନୈକ୍ୟ ଥିବା ପୂର୍ବରୁ ସୂଚିତ ହୋଇଛି ! ଅଗ୍ନି ପୁରାଣର ଶ୍ଳୋକସଂଖ୍ୟା ମତ୍ସ୍ୟପୁରାଣ ( ୫୩ । ୧୨-୫୩ ) ଅନୁସାରେ ୧୬ ହଜାର, ସ୍କନ୍ଦ ପୁରାଣ ( ୭।୨।୨୭-୨୮ ) ଅନୁସାରେ ୧୬ ହଜାର, ଭାଗବତ ( ୧୨।୧୩।୪-୯ ) ଅନୁସାରେ ୧୫ ହଜାର ୪ ଶହ, ନାରଦ ପୁରାଣ ( ୧୦୦।୧୩ ) ଅନୁସାରେ ୧୫ ହଜାର ଓ ଅଗ୍ନି ପୁରାଣ ( ୨୭୨। ୧୦-୧୧ ) ଅନୁସାରେ ୧୨ ହଜାର ବୋଲି ଉଲ୍ଲେଖ ମିଳୁଛି । ଏଥିରୁ ଅଗ୍ନି ପୁରାଣୋକ୍ତ ସଂଖ୍ୟା ୧୨ ହଜାର ହୋଇଥିବାରୁ ଉଇଲସନ୍ ତଦନୁସାରେ ପାଠ ଗ୍ରହଣ କରି ତାଙ୍କର ଅନୁକ୍ରମଣୀର ଶ୍ଳୋକ ସଂଖ୍ୟା ୧୨ ହଜାର ବୋଲି ନିର୍ଦ୍ଧାରଣ କରିଛନ୍ତି । ଏହି ନିର୍ଦ୍ଧାରିତ ସଂଖ୍ୟାଠାରୁ ପଣ୍ଡିତ ବଳଦେବଙ୍କ ସଂସ୍କରଣରେ ପ୍ରାୟ ୫୦୦ ଶ୍ଳୋକ କମ୍ ଥିଲେ ହେଁ ତାହା ଉକ୍ତ ସଂଖ୍ୟାର ନିକଟବର୍ତ୍ତୀ ହୋଇଥିବାରୁ ଏବଂ ଅଗ୍ନି ପୁରାଣ ପରି ବିଭିନ୍ନ ବିଷୟକ ବିପୁଳ ଶ୍ଳୋକ ସଂଗ୍ରହ ମଧ୍ୟରେ ଏହି ସଂଖ୍ୟା ପରିମାଣତଃ କମ୍ ହୋଇଥିବାରୁ—ଏହି ବ୍ୟବଧାନକୁ ନଗଣ୍ୟ ବୋଲି ଗ୍ରହଣ କରାଯାଇପାରେ । ଏଥିରେ ଆଲୋଚିତ ଜ୍ଞାନରାଜ୍ୟର ବିବିଧତା ଓ ବ୍ୟାପକତା ସମ୍ବନ୍ଧରେ ଏକ ସ୍ଥୂଳ ଧାରଣା ଦେବା ସକାଶେ ଏହାର ବିଷୟାବଳୀକୁ ସଂକ୍ଷେପରେ ନିମ୍ନଲିଖିତ ପ୍ରକାରେ ବର୍ଗୀକରଣ ଦ୍ୱାରା ଦେଖାଇଦିଆ ଯାଇପାରେ—

୧ । ଏହାର ପ୍ରଥମ ଶ୍ଳୋକରେ ଶ୍ରୀ, ସରସ୍ୱତୀ, ଗୌରୀ ପ୍ରମୁଖ ଦେବୀ ଏବଂ ଗଣେଶ, ସ୍କନ୍ଦ, ଈଶ୍ୱର, ବ୍ରହ୍ମା, ବହ୍ନି, ଇନ୍ଦ୍ର, ବାସୁଦେବ ପ୍ରମୁଖ ଦେବଙ୍କ ଉଦ୍ଦେଶ୍ୟରେ ନମସ୍କ୍ରିୟା ଦ୍ୱାରା ମଙ୍ଗଳାଚରଣ କରାଯାଇଛି । ତା'ପରେ ସାରାତ୍ସାର । ସ୍ୱୟଂ ଜଗତ୍ ସ୍ରଷ୍ଟା ବିଷ୍ଣୁଙ୍କ ବିଷୟରେ ଜ୍ଞାନ ହିଁ ସାରତ୍ସାର । ସୂତ ଏହି ଜ୍ଞାନ ବ୍ୟାସଙ୍କଠାରୁ, ବ୍ୟାସ ବଶିଷ୍ଠଙ୍କଠାରୁ ଓ ବଶିଷ୍ଠ ଅଗ୍ନିଙ୍କଠାରୁ ଲାଭ କରିଥିଲେ । ଅତଏବ ଏହି ଜ୍ଞାନର ପ୍ରଥମ- ପ୍ରବକ୍ତା ଅଗ୍ନି ହୋଇଥିବାରୁ ତଦୁକ୍ତ ତତ୍ତ୍ୱସମ୍ପୃକ୍ତ ପୁରାଣ ଅଗ୍ନିପୁରାଣ ନାମରେ କଥିତ । ତା'ପରେ ବିଦ୍ୟା ଦ୍ୱିବିଧ, ପରା ଓ ଅପରା, ସେଥିରୁ ଅପରା ବିଦ୍ୟା ହେଉଛନ୍ତି—ଚାରି ବେଦ, ଷଡ଼ଙ୍ଗ, କୋଷ, ମୀମାଂସା, ଧର୍ମଶାସ୍ତ୍ର, ପୁରାଣ, ଆୟୁ, ବୈଦ୍ୟକ, ଗାନ୍ଧର୍ବ, ଧନୁର୍ବେଦ, ଅର୍ଥଶାସ୍ତ୍ର ଇତ୍ୟାଦି ଏବଂ ପରାବିଦ୍ୟା ହେଉଛି ସେହି, ଯାହା ଦ୍ୱାରା ବ୍ରହ୍ମଙ୍କୁ ଜାଣି ହୁଏ । ତେଣୁ ଅଗ୍ନି ପୁରାଣରେ ଏହି ପରା ଓ ଅପରା ବିଦ୍ୟା କହିବାକୁ ଯାଇ ଜ୍ଞାନ ରାଜ୍ୟର ବିଭିନ୍ନ ବିଷୟକୁ ଅନ୍ତର୍ଭୁକ୍ତ କରାଯାଇଛି ।

୨ । ଅବତାର ବର୍ଣ୍ଣନା—ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ପରଶୁରାମ, ରାମ, କୃଷ୍ଣ, ବୁଦ୍ଧ ଓ କଳ୍କି—ଏହି ଦଶ ଅବତାରଙ୍କ ବର୍ଣ୍ଣନା ୧୫ ଅଧ୍ୟାୟ ( ୨ୟଠାରୁ ୧୬ଶ ) ମଧ୍ୟରେ କରାଯାଇଛି ।

୩ । ରାମାୟଣ, ମହାଭାରତ ଓ ହରିବଂଶର ସାର ବର୍ଣ୍ଣିତ ହୋଇଛି ।

୪ । ସୃଷ୍ଟି ବର୍ଣ୍ଣନା, ସ୍ୱାୟମ୍ଭୁବ ବଂଶ ବର୍ଣ୍ଣନା, କଶ୍ୟପ ବଂଶ ବର୍ଣ୍ଣନା ପ୍ରଭୃତି ୧୭ଶ ଠାରୁ ୨୦ଶ ଅଧ୍ୟାୟ ମଧ୍ୟରେ ବର୍ଣ୍ଣନା କରାଯାଇଛି ।

୫ । ତନ୍ତ୍ର ସମେତ ବିଭିନ୍ନ ପୂଜା ବିଷୟରେ ପ୍ରାୟ ଅନ୍ୟୂନ ୮୫ ଅଧ୍ୟାୟ ଲେଖା ଯାଇଛି । ଏଥିରେ ମନ୍ତ୍ର, ମୁଦ୍ରା, ଦୀକ୍ଷା ଓ ମଣ୍ଡଳ ବିଷୟରେ ପର୍ଯ୍ୟାପ୍ତ ଆଲୋଚନା କରାଯାଇଛି ।

୬ । ପ୍ରାୟ ୭ଟି (୧୦୩-୧୪୯) ଅଧ୍ୟାୟରେ କୁବ୍ଜିକା, ଅଷ୍ଟାକ୍ଷର ଦେବୀ, ତ୍ରିପୁରା ପୂଜା, ସଂଗ୍ରାମ ବିଜୟ ପୂଜା, ଲକ୍ଷ କୋଟି ହୋମ ପ୍ରଭୃତି ବିସ୍ତୃତ ଭାବେ ବର୍ଣ୍ଣିତ । ପ୍ରାୟ ସତେଇଶି (୩୦୦-୩୨୬) ଅଧ୍ୟାୟରେ ସୂର୍ଯ୍ୟ, ଲକ୍ଷ୍ମୀ, ତ୍ରିପୁରା, ଗଣେଶ, ବାଗୀଶ୍ୱରୀ ପ୍ରଭୃତିଙ୍କ ମନ୍ତ୍ରାଦି ବର୍ଣ୍ଣନ ସହ ତାନ୍ତ୍ରିକ ପୂଜାର ଉଲ୍ଲେଖ ଅଛି । ଅଧ୍ୟାୟ ୩୨୭ ଦେବାଳୟ ମାହାତ୍ମ୍ୟରେ ବିଭିନ୍ନ ଦେବଦେବୀ ପୂଜାର ଫଳ ବର୍ଣ୍ଣିତ ହୋଇଛି ।

୭ । ଭୁବନ କୋଷ—ଚଉଦ (୧୦୭-୧୨୦) ଗୋଟି ଅଧ୍ୟାୟରେ ବିଭିନ୍ନ ଦ୍ୱୀପ, ବୃତ୍ତ ଓ ବର୍ଷମାନଙ୍କର ବର୍ଣ୍ଣନା ପ୍ରସଙ୍ଗରେ ପୁଷ୍କର, ବଦରୀ, ପ୍ରୟାଗ ପ୍ରଭୃତି ସ୍ଥାନ ଓ ଗଙ୍ଗା, ନର୍ମଦା, ପ୍ରଭୃତି ନଦୀ ଓ ସେହି ସବୁ ସ୍ଥାନରେ ଧାର୍ମିକ ମହତ୍ତ୍ୱର ଉଲ୍ଲେଖ ହୋଇଛି । ଏହାକୁ ଭୁବନକୋଷ କୁହାଯାଏ ।

୮ । **ଗ୍ରହ ଓ ସେମାନଙ୍କର ପ୍ରଭାବ**—ବାଇଶଟି (୧୨୧-୧୪୨) ଅଧ୍ୟାୟରେ ମନୁଷ୍ୟର କର୍ମ ଉପରେ ଗ୍ରହମାନଙ୍କର ପ୍ରଭାବ ବର୍ଣ୍ଣିତ ହୋଇଛି । ଏହାଛଡ଼ା ଶତ୍ରୁଜୟ ପାଇଁ ଯୁଦ୍ଧ ଜୟାର୍ଣ୍ଣବ' ଅନୁସାରେ କେତେକ ଚକ୍ର ଓ ମନ୍ତ୍ର ଉଲ୍ଲେଖ କରାଯାଇଛି ।

୯ । ମନ୍ୱନ୍ତରର ବର୍ଣ୍ଣନା ୧୫୦ ତମ ଅଧ୍ୟାୟରେ ହୋଇଛି ।

୧୦ । **ଧର୍ମଶାସ୍ତ୍ର**—ବିଭିନ୍ନ ଧର୍ମଶାସ୍ତ୍ର ବିଷୟ ୨୪ଟି (୧୫୧-୧୭୪) ଅଧ୍ୟାୟରେ ମନୁ, ନାରଦ, ଯାଜ୍ଞବଲ୍କ୍ୟ ପ୍ରଭୃତି ପ୍ରାୟ କୋଡ଼ିଏଟି ସ୍ମୃତି ଗ୍ରନ୍ଥରୁ ସଂକଳିତ ହୋଇ ଏଥିରେ ସ୍ଥାନ ପାଇଛି ।

୧୧ । **ବ୍ରତ ଓ ପୂଜା**—ବିଭିନ୍ନ ଦେବଦେବୀଙ୍କର ବ୍ରତ ଓ ପୂଜା ବିଷୟ ପ୍ରାୟ ଛବିଶି (୧୭୫-୨୦୦) ଅଧ୍ୟାୟରେ ବର୍ଣ୍ଣିତ ।

୧୨ । ରାଜଧର୍ମ—ସାମ, ଦାନ, ଷଡ଼ଗୁଣ ପ୍ରଭୃତି ରାଜଧର୍ମ ବିଷୟ ପାଞ୍ଚଗୋଟି (୨୩୮-୨୪୨) ଅଧ୍ୟାୟରେ ବର୍ଣ୍ଣିତ ।

୧୩ । ଧନୁର୍ବିଦ୍ୟା—ଚାରିଗୋଟି (୨୪୯-୨୫୨) ଅଧ୍ୟାୟରେ ବର୍ଣ୍ଣିତ ।

୧୪ । ବଂଶ ବର୍ଣ୍ଣନା—ନ ( ୨୭୩-୨୭୮ ) ଅଧ୍ୟାୟରେ ସୂର୍ଯ୍ୟ, ସୋମ, ଯଦୁ, ପୁରୁ ପ୍ରଭୃତି ରାଜବଂଶ ବର୍ଣ୍ଣିତ ହୋଇଛି ।

୧୫ । ଆୟୁର୍ବେଦ—ପ୍ରାୟ କୋଡ଼ିଏ ( ୨୭୯-୨୯୮ ) ଅଧ୍ୟାୟରେ ଆୟୁର୍ବିଜ୍ଞାନ ବିଷୟ କୁହାଯାଇଛି । ମନ୍ତ୍ର ଦ୍ୱାରା ସର୍ପଦଂଶନର ପ୍ରତୀକାର ଇତ୍ୟାଦି ମଧ୍ୟ ଉଲ୍ଲେଖ ହୋଇଛି ।

୧୬ । ଛନ୍ଦ—ପିଙ୍ଗଳ ଛନ୍ଦଃ ସୂତ୍ର ଅନୁସାରେ ଛନ୍ଦୋବିଜ୍ଞାନ ପାଇଁ ପ୍ରାୟ ଆଠ ( ୩୨୮-୩୩୫ ) ଅଧ୍ୟାୟ ବିନିଯୋଗ ହୋଇଛି ।

୧୭ । ଶିକ୍ଷା—ଗୋଟିଏ (୩୩୬) ଅଧ୍ୟାୟରେ ପାଣିନୀୟ ଶିକ୍ଷାର ସାର ସଂଗ୍ରହ ହୋଇଛି ।

୧୮ । କାବ୍ୟ, ନାଟକ ଓ ଅଳଙ୍କାର ଶାସ୍ତ୍ର—ପ୍ରାୟ ଏଗାର ( ୩୩୭-୩୪୭ ) ଅଧ୍ୟାୟରେ କାବ୍ୟଲକ୍ଷଣ, ନାଟକ ନିରୂପଣ, ରସ ନିରୂପଣ, ଶବ୍ଦାର୍ଥାଲଙ୍କାର ଇତ୍ୟାଦି ବିବେଚିତ ହୋଇଛି ।

୧୯ । ଏକାକ୍ଷର କୋଷ :—୩୪୮ ତମ ଅଧ୍ୟାୟରେ ଏକାକ୍ଷର କୋଷ ଦିଆଯାଇଛି ।

୨୦ । କୌମାର ବ୍ୟାକରଣ --ପ୍ରାୟ ଏଗାର ( ୩୪୯-୩୫୯ ) ଅଧ୍ୟାୟରେ କୌମାର ବ୍ୟାକରଣକୁ ସଂକ୍ଷେପରେ କୁହାଯାଇଛି ।

୨୧ । ଅମରକୋଷ—ଅଠର ( ୩୬୦-୩୬୭ ) ଅଧ୍ୟାୟରେ ସମ୍ପୂର୍ଣ୍ଣ ଅମରକୋଷକୁ ସଂକ୍ଷିପ୍ତ କରାଯାଇଛି ।

୨୨ । ନରକ—୩୭୧ ତମ ଅଧ୍ୟାୟରେ ବିଭିନ୍ନ ନରକ ବିଷୟ କୁହାଯାଇଛି ।

୨୩ । ଯୋଗ—ପ୍ରାୟ ପାଞ୍ଚ ( ୩୭୨-୩୭୬ ) ଅଧ୍ୟାୟରେ ଯମ, ନିୟମ, ଆସନ, ପ୍ରାଣାୟାମ, ଧ୍ୟାନ, ଧାରଣା ଓ ସମାଧି ବିଷୟ ଉଲ୍ଲେଖ ହୋଇଛି ।

୨୪ । ବେଦାନ୍ତ :—ବ୍ରହ୍ମଜ୍ଞାନ ନିର୍ଣ୍ଣୟ ହିଁ (୩୭୭-୩୭୯) ଅଧ୍ୟାୟରେ ଓ ଅଦ୍ୱୈତ ବ୍ରହ୍ମବିଜ୍ଞାନ (୩୮୦) ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ।

୨୫ । ଗୀତାସାର ଓ ଯମଗୀତା—ଏ ଦୁଇଟି ଯଥାକ୍ରମେ ୩୮୧ ଓ ୩୮୨ ତମ ଅଧ୍ୟାୟରେ ରହିଛି ।

ତା'ପରେ ଆଉ ଏକ ଅଧ୍ୟାୟରେ ଅଗ୍ନି ପୁରାଣ ମାହାତ୍ମ୍ୟ ବର୍ଣ୍ଣିତ ହୋଇ ଗ୍ରନ୍ଥର ପରିସମାପ୍ତି ଘଟିଛି ।

## ଓଡ଼ିଆ ପୁରାଣ :—

ଅଗ୍ନି ପୁରାଣର ଉପର୍ଯ୍ୟୁକ୍ତ ବିଷୟ ବିବେଚନାରୁ ସ୍ପଷ୍ଟ ଜଣାଯାଏ ଯେ, ଜ୍ଞାନରାଜ୍ୟର ବିଭିନ୍ନ ବିଭବକୁ ସଂକ୍ଷିପ୍ତ ଆକାରରେ ଏକତ୍ର ପାଇବା ପାଇଁ ବର୍ତ୍ତମାନ ଯେପରି ବିଭିନ୍ନ ଭାଷାରେ ଏନ୍‌ସାଇକ୍ଲୋପେଡ଼ିଆ ବା ଜ୍ଞାନକୋଷ-ମାନ ପ୍ରଣୟନ ଦିଗରେ ଗୁରୁତ୍ୱ ଆରୋପ ହେଉଛି, ପ୍ରାଚୀନ ଭାରତରେ ବିଭିନ୍ନ ଶାସ୍ତ୍ରର ସାରସଙ୍କଳନ ଦ୍ୱାରା ଜ୍ଞାନରାଜ୍ୟର ବିଭିନ୍ନ ବିଷୟ ଉପରେ ଏକ ସ୍ଥୂଳ ଅଥଚ ବିଶଦ ଜ୍ଞାନ ଅର୍ଜନ କରିବା ନିମନ୍ତେ ଅଗ୍ନି ପୁରାଣ ହେଉଛି ସେହିପରି ଏକ ସ୍ମରଣୀୟ ଉଦ୍ୟମ । ଭାରତୀୟ ପରମ୍ପରାରେ କୋଷ, ବ୍ୟାକରଣ, ଜ୍ୟୋତିର୍ବିଦ୍ୟା, ଆୟୁର୍ବିଜ୍ଞାନ ପ୍ରଭୃତି ସକଳ ବିଷୟକୁ ନିଜର ସ୍ମୃତିକୋଷର ସମ୍ପତ୍ତି କରିବା ନିମନ୍ତେ ସେଗୁଡ଼ିକୁ ପଦ୍ୟରେ ପ୍ରଣୟନ କରାଯାଉଥିଲା । ଆଜିର କମ୍ପ୍ୟୁଟର ଯୁଗରେ ଏପରି ପ୍ରଚେଷ୍ଟାକୁ ଏକ ଅନା-ବଶ୍ୟକ ମାନସିକ ଭାରବହନ ବୋଲି ମନେ କରାଯାଉଥିଲେ ମଧ୍ୟ ଆବଶ୍ୟକ-ବେଳେ ଏହାର ପ୍ରତ୍ୟକ୍ଷ ଉପଯୋଗିତା ଅନୁଭବସିଦ୍ଧ ଓ ପ୍ରାଚୀନ ପାଣ୍ଡିତ୍ୟ ପରମ୍ପରାର ଅନୁସରଣୀୟ ଆଦର୍ଶ । ବିଭିନ୍ନ ଶାସ୍ତ୍ରରୁ ଶ୍ଳୋକ ସଂଗ୍ରହ କରି ସେଗୁଡ଼ିକୁ ଆୟତ୍ତ କରି ସମସ୍ତ ବିଦ୍ୟାରେ ନିଜର ପାଟବ ପ୍ରଦର୍ଶନ ନିମନ୍ତେ ଓ ସର୍ବତନ୍ତ୍ର ସ୍ୱତନ୍ତ୍ର ଭାବରେ ପ୍ରତିଷ୍ଠିତ ହେବା ପାଇଁ 'ଅଗ୍ନି ପୁରାଣ' ସଙ୍କଳନ ସେହି ଗୌରବୋଜ୍ଜ୍ୱଳ ଭାରତୀୟ ପାଣ୍ଡିତ୍ୟ ପରମ୍ପରାରୁ ପ୍ରସୂତ ଏକ ଅପରିହାର୍ଯ୍ୟ କରାବଲମ୍ବ ।

ଓଡ଼ିଆ ଭାଷାରେ ଏହାର ଅନୁବାଦ ପାଇଁ ସେପରି ନିଷ୍ଠାର ସହ ଉଦ୍ୟମ ହୋଇ ନାହିଁ । ଓଡ଼ିଆ ଭାଷା ଓ ସାହିତ୍ୟର ଗୌରବସ୍ତମ୍ଭ ସାରଳା ମହାଭାରତକୁ ସଂଶୋଧନ କରିବା ଦିଗରେ ଯେଉଁ ଜାତି ସରକାରୀ ଉଦ୍ୟମ କରି ମଧ୍ୟ ବିଫଳ ହେଲା, ଯେଉଁଠାରେ ବଳରାମ ଦାସଙ୍କ 'ଦାଣ୍ଡୀ ରାମାୟଣ' ବର୍ତ୍ତମାନ ପର୍ଯ୍ୟନ୍ତ ସମ୍ପାଦିତ ହୋଇ ପାରିନାହିଁ, ଯେଉଁ ଦେଶରେ ଜଗନ୍ନାଥ-ଦାସଙ୍କ ଓଡ଼ିଆ ଭାଗବତକୁ ସଂସ୍କୃତ ପୁରାଣର ଆଦର୍ଶରେ ସଂଯମିତ କରି ଶୁଦ୍ଧ ସଂସ୍କରଣ ନାମରେ ପ୍ରଚଳିତ ହୁଏ, ଯେଉଁ ଜାତିର ସରକାରୀ ପୃଷ୍ଠ-ପୋଷକତା ଲବ୍ଧ ଗବେଷଣା ପ୍ରତିଷ୍ଠାନମାନଙ୍କଠାରୁ ଅଶୁଦ୍ଧ ଅଥଚ ବହୁ ବ୍ୟୟସାଧ୍ୟ ପୁସ୍ତକମାନ ପ୍ରକାଶିତ ହୁଏ । ଏବଂ ତାକୁ କେହି ପଢ଼ନ୍ତି ନାହିଁ କିମ୍ବା ପଢ଼ିଲେ କ'ଣ କ୍ଷତି ରହିଲା ତାହା ଜାଣିବା ପାଇଁ ସମର୍ଥ ହୁଅନ୍ତି ନାହିଁ ଅଥବା ଜାଣିଲେ କହିବା ପାଇଁ ଓ ଲେଖିବା ପାଇଁ ସାହସ କରନ୍ତି ନାହିଁ, ସେପରି ଏକ ନିଷ୍ଟିତ ଜାତି ଦ୍ୱାରା କୌଣସି ନିଷ୍ଣାତ କାମ ଆଶା କରାଯାଇ ନ ପାରେ । ଅଗ୍ନି ପୁରାଣର ଯେଉଁ ଅନୁବାଦ ବର୍ତ୍ତମାନ ବଜାରରେ ମିଳୁଛି ତାହା ଏକ ଅସଫଳ ପ୍ରଚେଷ୍ଟା ହୋଇଥିବାରୁ ତାହାକୁ ଆଲୋଚନାର ପରିସର ମଧ୍ୟରେ ଅନ୍ତର୍ଭୁକ୍ତ କରାଗଲା ନାହିଁ । ଓଡ଼ିଆରେ ପୁରାଣମାନଙ୍କର ସଙ୍କଳନ ଓ ସମ୍ପାଦନା ପାଇଁ ଏକ ନିଷ୍ଠାପର ସମର୍ଥ ଉଦ୍ୟମ ହେବା ଆବଶ୍ୟକ ।

—*—

## ସହାୟକ ଗ୍ରନ୍ଥସୂଚୀ


୧ । ଅଗ୍ନି ପୁରାଣ
୨ । ମତ୍ସ୍ୟ ପୁରାଣ
୩ । ପଦ୍ମ ପୁରାଣ
୪ । ସ୍କନ୍ଦ ପୁରାଣ
୫ । ଶ୍ରୀମଦ୍ଭାଗବତ
୬ । କାବ୍ୟମୀମାଂସା—ରାଜଶେଖର
୭ । କୌଟିଲ୍ୟସ୍ୟ ଅର୍ଥଶାସ୍ତ୍ର (ଜୟମଙ୍ଗଳା ଟୀକା)

୮। ଦାନସାଗର—ବଲ୍ଲାଳସେନ

୯। ଚତୁର୍ବର୍ଗଚିନ୍ତାମଣି—ହେମାଦ୍ରି

୧୦। କୃତ୍ୟ ରତ୍ନାକର—ଚଣ୍ଡେଶ୍ୱର

୧୧। ଦାନକ୍ରିୟାକୌମୁଦୀ—ଗୋବିନ୍ଦାନନ୍ଦ (ସମୟ ଖ୍ରୀ ୧୫୦୦-୧୫୪୦)

୧୨। ହରିଭକ୍ତି ବିଳାସ—ଗୋପାଳ ଭଟ୍ଟ

୧୩। ହରିଭକ୍ତିବିଳାସ—ରୂପଗୋସ୍ୱାମୀ

୧୩। ସ୍ମୃତିତତ୍ତ୍ୱ—ରଘୁନନ୍ଦନ

୧୪। କାଳସାର (ଗଦାଧର ପଦ୍ଧତି)—ଗଦାଧର

୧୬। ତୀର୍ଥଚିନ୍ତାମଣି—ବାଚସ୍ପତି ମିଶ୍ର

17. Agni Purana : A study—Dr. S. D. Gyani

18. Agni Puranam (Eng. Trans)
Dr. Manmath Nath Dutta

19. Studies in the Puranic Records on Hindu Rites and customs (1940) —Dr. R. C. Hazra

20. Purana—Panchalaksana—W. Kirfel

21. Puranic Antcology—A. P. Karmarkar

22. Puranic Chronology—D. R. Manked

23. Purana Index—V. R. Dixitar.

24. The Mahapuranas (J. B. O. R. S., 1928, Vol, XIV, pp. 323-340)—Mr. Hara Prasad Shastri

25. The Chronology of Ancient India...
Dr. Sitaram Pradhan

26. Some Aspects of the Vayu Purana—
Ramachandra Dikshitar

27. An Outline of religious literature of India—
Farquhar

28. History of Indian Literature, Vol. I, Pt. II—
Winternitz.

29. History of Sanskrit Poetics—
Dr. P. V. Kane

30. Sanskrit Poetics—Dr. S. K. De.

31. Purana—Vivecana (Ahmedabad,1931)
D. K. Shastri

୩୨ । ପୁରାଣ ବିମର୍ଶ—ପଣ୍ଡିତ ବଳଦେବ ଉପାଧ୍ୟାୟ

୩୩ । ସଂସ୍କୃତ ସାହିତ୍ୟକା ଇତିହାସ—ପଣ୍ଡିତ ବଳଦେବ ଉପାଧ୍ୟାୟ

୩୪ । ସଂସ୍କୃତ ସାହିତ୍ୟକା ଇତିହାସ—କନ୍ହୈୟାଲାଲ୍ ପୋଦାର୍ ଜୀ

୩୫ । ପୁରାଣ ପର୍ଯ୍ୟାଲୋଚନମ୍—ଡକ୍ଟର ଶ୍ରୀ କୃଷ୍ଣମଣି ତ୍ରିପାଠୀ

୩୬ । ଅଗ୍ନି ପୁରାଣ ବିଷୟାନୁକ୍ରମଣୀ—ରମାଶଙ୍କର ଭଟ୍ଟାଚାର୍ଯ୍ୟ

# ଲକ୍ଷ୍ମୀ ପୁରାଣ ଓ ବଳରାମ ଦାସ

ପ୍ରାଧ୍ୟାପକ ଡଃ—କୃଷ୍ଣଚରଣ ସାହୁ

ସାରଳା ଦାସଙ୍କ ପରେ ଓଡ଼ିଆ ସାହିତ୍ୟର ଦ୍ୱିତୀୟ ପୁରାଣକାର ହେଉଛନ୍ତି ଷୋଡ଼ଶ ଶତାବ୍ଦୀର ବଳରାମ ଦାସ । ସାରଳା ଦାସ "ମହାଭାରତ"କୁ ପୁରାଣ ରୂପ ଦେବା ପରେ ବଳରାମ ଦାସ "ରାମାୟଣ"କୁ "ବିଷ୍ଣୁ ପୁରାଣ"ରେ ପରିଣତ କଲେ । ଶାକ୍ତ ସାରଳା ଦାସ ଦେବୀଙ୍କର ମାହାତ୍ମ୍ୟ ବର୍ଣ୍ଣନା କରିବାପାଇଁ "ଚଣ୍ଡୀ ପୁରାଣ" ରଚନା କଲାପରି ବୈଷ୍ଣବ ବଳରାମ ଦାସ ଲକ୍ଷ୍ମୀଙ୍କର ମହିମା ବର୍ଣ୍ଣନା କଲେ "ଲକ୍ଷ୍ମୀ ପୁରାଣ"ରେ ।

ସଂସ୍କୃତରେ 'ପୁରାଣ' ଶବ୍ଦର ଏକ ନିର୍ଦ୍ଦିଷ୍ଟ ଅର୍ଥ ଥିଲା । ବାୟୁ ପୁରାଣରେ ପ୍ରାଚୀନ କାଳରୁ ପ୍ରଚଳିତ କଥାକୁ ପୁରାଣ କୁହାଯାଇଛି । ମତ୍ସ୍ୟ ପୁରାଣରେ ଏହାର ଅର୍ଥ ହେଲା, ଅତୀତ ଉପାଖ୍ୟାନ । ତେଣୁ ପୁରାଣର ସାଧାରଣ ଅର୍ଥ ହେଲା, ଅତୀତ ଉପାଖ୍ୟାନର ବର୍ଣ୍ଣନା । ସବୁ ପୁରାଣରେ ମୂଳ ବିଷୟବସ୍ତୁ ରୂପେ ଅତୀତ ଉପାଖ୍ୟାନକୁ ଗ୍ରହଣ କରାଯାଇଥିଲେ ହେଁ ଅମରକୋଷକାର ପୁରାଣର ବିଷୟବସ୍ତୁକୁ ପାଞ୍ଚ ଭାଗରେ ବିଭକ୍ତ କରିଛନ୍ତି । ଡକ୍ଟର ଉଇଲସନଙ୍କ ମତରେ ଏକମାତ୍ର "ବିଷ୍ଣୁ ପୁରାଣ" ପୁରାଣର ପଞ୍ଚ ଲକ୍ଷଣକୁ ଗ୍ରହଣ କରିଛି । ଯୁଗର ପରିବର୍ତ୍ତନ ସଙ୍ଗେ ପରବର୍ତ୍ତୀ ଯୁଗରେ ଏଥିରେ ଆଉ ବହୁ ଲକ୍ଷଣ ସଂଯୋଜିତ ହୋଇ ପଣ୍ଡିତଙ୍କ ମତରେ ପୁରାଣକୁ ହିନ୍ଦୁମାନଙ୍କ ବିଶ୍ୱକୋଷରେ ପରିଣତ କଲେ । ଏଥିରେ ହିନ୍ଦୁମାନଙ୍କ ଧର୍ମ, ଦର୍ଶନ ସ୍ମୃତି ଓ ଇତିହାସ ସଙ୍କଳିତ ହୋଇ ଏହାକୁ ବେଦଠାରୁ ମଧ୍ୟ ଲୋକପ୍ରିୟ କରି ପାରିଥିଲା ।

ଲେଖକମାନେ ଯେ କୌଣସି ଘଟଣାକୁ ଏପରି ଲୋକରେ ପ୍ରଚଳିତ କଥାକୁ ଗ୍ରହଣ କରି ପୁରାଣ ରଚନା କଲେ । ଫଳରେ ଓଡ଼ିଆ ସାହିତ୍ୟରେ ପୁରାଣ ଲେଖା ହେବା ବେଳକୁ ସଂସ୍କୃତ ସାହିତ୍ୟର ପୁରାଣ ସମ୍ବନ୍ଧୀୟ ନିର୍ଦ୍ଦେଶ ତଥା ସଂଜ୍ଞାର ନିର୍ଦ୍ଦିଷ୍ଟତା ଗୃହୀତ ହେଲ ନାହିଁ ଓ ଓଡ଼ିଆ କବିମାନେ ପୁରାଣ ପାଇଁ ଏକ ନୂଆ ରୂପରେଖ ପ୍ରସ୍ତୁତ କରିବାକୁ ଲାଗିଲେ । ଏହି ପରିବର୍ତ୍ତନର ପ୍ରଥମ ପଦକ୍ଷେପ ହେଲା ଇତିହାସ ଓ ପୁରାଣର ସମନ୍ୱୟ । ବୈଦିକ ସାହିତ୍ୟରେ ପୁରାଣକୁ ଇତିହାସ ସହ ଯୋଗ କରି ଯୁଗ୍ମ ଶବ୍ଦ ରୂପେ ବ୍ୟବହାର କରାଯାଇଛି । ପରବର୍ତ୍ତୀ କାଳରେ ଇତିହାସ, ପୁରାଣ ଠାରୁ ମହତ୍ତ୍ୱପୂର୍ଣ୍ଣ ଭାବେ ବର୍ଣ୍ଣିତ ହୋଇ ଥିଲେହେଁ ଧୀରେ ଧୀରେ ପୁରାଣର ଲୋକପ୍ରିୟତା ଇତିହାସ ଠାରୁ ମଧ୍ୟ ବୃଦ୍ଧି ପାଇଛି । ସଂସ୍କୃତରେ ଇତିହାସ କହିଲେ ରାମାୟଣ ଓ ମହାଭାରତକୁ ବୁଝାଏ । ଓଡ଼ିଆ ସାହିତ୍ୟର ପ୍ରାକ୍-କାଳରେ ଇତିହାସ ଅପେକ୍ଷା ପୁରାଣର ଲୋକପ୍ରିୟତା ବୃଦ୍ଧି ପାଇଥିଲା । ଫଳରେ ସାରଳାଦାସ, ବଳରାମ ଦାସ ପ୍ରଭୃତି ଲେଖକ ମହାଭାରତ ଓ ରାମାୟଣକୁ ଇତିହାସ ନ କହି ପୁରାଣ କହିଛନ୍ତି । ସାରଳା ମହାଭାରତର ଆଦ୍ୟ ପର୍ବରେ ସାରଳାଦାସ ମହାଭାରତକୁ ଅଷ୍ଟାଦଶ ପୁରାଣ ଠାରୁ ଶ୍ରେଷ୍ଠ ବା 'ମହାପୁରାଣ' ଭାବେ ବର୍ଣ୍ଣନା କରିଛନ୍ତି । ତାଙ୍କ ଭାଷାରେ :—

ଅଷ୍ଟାଦଶ ପୁରାଣ ପଞ୍ଚବିଂଶ ଲକ୍ଷ
ରାମାୟଣ ଚଣ୍ଡୀମନ୍ତ୍ରି ସମସ୍ତ ପୁରାଣ ସଭକ୍ଷ ।
ବିଷ୍ଣୁ ପୁରାଣ ରାଜା ମାର୍କଣ୍ଡ ପୁରାଣ ପାତର
ଶିବ ପୁରାଣ ମନ୍ତ୍ରୀ ନାରଦ ପୁରାଣ ଡଗର ।

× × ×

ଯୁଗରେ ସେ ସହୁଁ ହୋଇଲ ମହାଭର
ତହୁଁ ମହାଭାରଥ ନାମ ଦେଲେ କଶ୍ୟପ ଅଙ୍ଗିରା ।

( ମହାଭାରତ ଆଦି ପୃ-୬ )

ଏଥିରେ କେବଳ ମହାଭାରତ ନୁହେଁ, ରାମାୟଣ ଓ ଚଣ୍ଡୀ ମନ୍ତ୍ରୀକୁ ମଧ୍ୟ ପୁରାଣ ରୂପେ ଗଣନା କରାଯାଇଛି ।

ନୃସିଂହ ପୁରାଣର ଲେଖକ ପୀତାମ୍ବର ଦାସଙ୍କ ସମସ୍ତ ଅର୍ଥାତ୍ ଅଷ୍ଟାଦଶ ଶତାବ୍ଦୀର ଲେଖକଙ୍କୁ ପୁରାଣର ଗଣନା କଲାବେଳେ କେବଳ ଯେ ନୃସିଂହ ପୁରାଣକୁ ପୁରାଣ ମଧ୍ୟରେ ରାଜାରୂପେ ଗ୍ରହଣ କରିଛନ୍ତି, ତା' ନୁହେଁ, ଓଡ଼ିଶାରେ ପ୍ରଚଳିତ ବହୁ ଅର୍ବାଚୀନ କ୍ଷୁଦ୍ର ଗ୍ରନ୍ଥ, ଏପରି କି ଲକ୍ଷ୍ମୀ ପୁରାଣକୁ ମଧ୍ୟ ଅଷ୍ଟାଦଶ ପୁରାଣ ରୂପେ ଗଣନା କରିବାରେ କୁଣ୍ଠାବୋଧ କରି ନାହାନ୍ତି । ସେ ପୁରାଣର ବର୍ଣ୍ଣନା ଦେବାକୁ ଯାଇ କହିଛନ୍ତି—

"ବେଦବ୍ୟାସ କୃତ ଏହିସବୁ ଶାସ୍ତ୍ର ଜାଣି
ଅଷ୍ଟାଦଶ ପୁରାଣ ଯେ ବାଛିଲେକ ପୁଣି ।
ନୃସିଂହ ପୁରାଣ କଲେ ତାଙ୍କ ମଧ୍ୟେ ରାଜା
ତହିଁ କି ବ୍ରହ୍ମ ପୁରାଣ ପାଣି ପରେ ପ୍ରଜା ।

× × ×

ଗାଣ ବଜାଇ ରହିଲେ ବାଗ୍‌ଦେବୀ ପୁରାଣ
ଲକ୍ଷ୍ମୀ ପୁରାଣ ହେବଲେ ଚିନ୍ତା ହୋଇ ଜାଣ ।
ପଦ୍ମ ପୁରାଣ ନିଯୋଗ ହେଲେ ସେବାକାରୀ ।
ବ୍ରହ୍ମାଣ୍ଡ ପୁରାଣ ହେଲେ ସଭା ପଢ଼ିହାରୀ ॥
ଏହା ଉତ୍ତାରୁ ଆବର ଯେତେକ ପୁରାଣ ।
ପରିଷ୍କାର ହେଲେ ରାଜା ପାଦରେ ରହିଣ ।"

(ନୃସିଂହ ପୁରାଣ, ପୃ-୭୯)

ପୁରାଣ-ମାହାତ୍ମ୍ୟର ବିକାଶ ପ୍ରତି ଲକ୍ଷ୍ୟ କଲେ ଜଣାଯାଏ ଯେ, ପ୍ରଥମେ ଶାକ୍ତଙ୍କ ପାଇଁ କୌଣସି ପୁରାଣ ନଥିଲା । କେବଳ ଦେବୀ ବା ଦୁର୍ଗାଙ୍କ ମହିମା ବର୍ଣ୍ଣନା କରିବା ପାଇଁ ମାର୍କଣ୍ଡେୟ ପୁରାଣ, ବାମନ ପୁରାଣ, ବରାହ ପୁରାଣ, କୂର୍ମପୁରାଣ ପ୍ରଭୃତିରେ ଦେବୀ ମାହାତ୍ମ୍ୟ ଅଂଶ ସଂଯୋଜିତ । ଏହା ବ୍ୟତୀତ ଦେବୀ ମହାତ୍ମ୍ୟ ପ୍ରଚାର ପାଇଁ ଉପପୁରାଣ ମଧ୍ୟରେ ଦେବୀ ପୁରାଣ, କାଳିକା ପୁରାଣ, ମହାଭାଗବତ ଏବଂ ଦେବୀ ଭାଗବତ ପ୍ରଭୃତି ସ୍ୱତନ୍ତ୍ର ଭାବେ ରଚିତ ହେଲା । ପ୍ରକାଶିତ ଏହିସବୁ ପୁରାଣ ବ୍ୟତୀତ କେତେକ ଅପ୍ରକାଶିତ ପୁରାଣ ମଧ୍ୟ

ଦେଖିବାକୁ ମିଳେ । ଭାଗବତୀ ପୁରାଣ, ଚଣ୍ଡୀପୁରାଣ ବା ଚଣ୍ଡିକା ପୁରାଣ, ଦେବୀ ରହସ୍ୟ ଏବଂ ଦ୍ୱିତୀୟ କାଳିକା ପୁରାଣ ଏହାର ଅନ୍ତର୍ଗତ । ଏ ସବୁରେ ଶକ୍ତି କହିଲେ ଦେବୀ ବା ଦୁର୍ଗାଙ୍କୁ ବୁଝାଏ । ପରବର୍ତ୍ତୀ ଯୁଗରେ ଶକ୍ତିପୂଜା ଅତ୍ୟଧିକ ଲୋକପ୍ରିୟ ହେବାରୁ ଅନ୍ୟ ଦେବତା ମାନଙ୍କର ସ୍ତ୍ରୀ ବା ଅଂଶାବତାର ମଧ୍ୟ ଶକ୍ତି ରୂପେ ପୂଜା ପାଇବାକୁ ଲାଗିଲେ ।

ସେହି ଦୃଷ୍ଟିରୁ ବଳରାମଙ୍କ ଲକ୍ଷ୍ମୀ ପୁରାଣ ମଧ୍ୟ ଶକ୍ତି ପୂଜାର ଏକ ଗ୍ରନ୍ଥ । ଲକ୍ଷ୍ମୀଙ୍କର ମାହାତ୍ମ୍ୟ ବର୍ଣ୍ଣନା କରିବା “ଲକ୍ଷ୍ମୀ ପୁରାଣ”ର ମୂଳ ଉଦ୍ଦେଶ୍ୟ । ଏଥିରେ ଲକ୍ଷ୍ମୀଙ୍କୁ ଜଗନ୍ନାଥ ଓ ବଳଭଦ୍ରଙ୍କ ଠାରୁ ଶ୍ରେଷ୍ଠରୂପେ ଗ୍ରହଣ କରାଯାଇଛି । ଲକ୍ଷ୍ମୀଙ୍କର ଶ୍ରୀୟା ଚଣ୍ଡାଳୁଣୀ ଗୃହ ଗମନ, ଜଗନ୍ନାଥ ଓ ବଳରାମଙ୍କର ବିରୋଧ, ଲକ୍ଷ୍ମୀଙ୍କୁ ମନ୍ଦିରରୁ ନିର୍ବାସନ, ଲକ୍ଷ୍ମୀଙ୍କ ଅଭାବରେ ଜଗନ୍ନାଥ ଓ ବଳରାମଙ୍କର ଦୁର୍ଦ୍ଦଶା, ଜଗନ୍ନାଥ ଓ ବଳରାମଙ୍କର ଅନୁତାପ ଏବଂ ଲକ୍ଷ୍ମୀଙ୍କର ଶରଣାପନ୍ନ—ଏହି ବିଷୟବସ୍ତୁକୁ ଗ୍ରହଣ କରି ବଳରାମ ଦାସ “ଲକ୍ଷ୍ମୀ ପୁରାଣ’ର ପରିକଳ୍ପନା କରିଅଛନ୍ତି ।

ଲକ୍ଷ୍ମୀଙ୍କର ମାହାତ୍ମ୍ୟ ପ୍ରଚାର କରିବା ସଙ୍ଗେ ସଙ୍ଗେ ଏହି ଗ୍ରନ୍ଥରେ ଅସ୍ପୃଶ୍ୟତା ନିବାରଣକୁ ଏକ ମୁଖ୍ୟ ବିଷୟବସ୍ତୁ ରୂପେ ଗ୍ରହଣ କରାଯାଇଛି । ଷୋଡ଼ଶ ଶତାବ୍ଦୀରେ ବଳରାମ ଦାସ ଜଣେ ବିପ୍ଳବୀ ଓ ସମାଜ ସଂସ୍କାରକ ଭାବେ ପ୍ରତିଷ୍ଠିତ । ତାଙ୍କ ନାମରେ ପ୍ରଚଳିତ “ବେଦାନ୍ତସାର ଗୁପ୍ତଗୀତା” “ଗୀତାବକାଶ” ଓ ଭାବସମୁଦ୍ର” ପ୍ରଭୃତି ଗ୍ରନ୍ଥ ତାଙ୍କର ଏହି ବିପ୍ଳବୀ ମନୋଭାବର ପରିଚୟ ଦିଏ । ଏହି ସବୁ ଗ୍ରନ୍ଥରୁ ଜଣାଯାଏ ଯେ, ସେ ସବୁବେଳେ ସମାଜରେ ଅବହେଳିତ ସଂପ୍ରଦାୟର ଦୁଃଖ, ଦୁର୍ଦ୍ଦଶା ଦୂର କରିବାପାଇଁ ତତ୍ପର ରହୁଥିଲେ । “ଗୀତାବକାଶ’ରୁ ଜଣାଯାଏ ଯେ ସେ ଗୀତାକୁ କେବଳ ବ୍ରାହ୍ମଣମାନଙ୍କର ଗ୍ରନ୍ଥରୂପେ ଗ୍ରହଣ କରିବା ପାଇଁ ବା କେବଳ ଦେବ ମନ୍ଦିର ମଧ୍ୟରେ ପାଠ କରିବାର ପକ୍ଷପାତୀ ନଥିଲେ । ସେଥିପାଇଁ ସେ ଗୀତାକୁ ସଂସ୍କୃତରୁ ଓଡ଼ିଆ ଅନୁବାଦ କରି ଦାଉଳି ମୁଣ୍ଡରେ ଏହାକୁ ପ୍ରକାଶ କରିବା ପାଇଁ ଘୋଷଣା କରିଛନ୍ତି । ଗୀତା ପରି ବେଦାନ୍ତ ମଧ୍ୟ କେବଳ ବ୍ରାହ୍ମଣମାନଙ୍କ ଧନ ରୂପେ ବିବେଚିତ ହେଉଥିଲା । ବଳରାମ ଦାସ ନିଜର ଅଲୌକିକ ପ୍ରତିଭା

ସ୍ଥାନରେ ବେଦାନ୍ତ ଚର୍ଚ୍ଚାକୁ ବ୍ରାହ୍ମଣମାନଙ୍କଠାରୁ ଛଡ଼ାଇ ଆଣି ହରିଦାସ ଲଡ଼ିକୁ ପ୍ରଦାନ କଲେ । ଗୀତା ଓ ବେଦାନ୍ତ ପରି ଭଗବାନଙ୍କର ଭକ୍ତହେବା କେବଳ ସମାଜର କେତେକ ବଶିଷ୍ଟ ବ୍ୟକ୍ତିଙ୍କର ଅଧିକାର ଅନ୍ତର୍ଭୁକ୍ତ ଥିଲା । କେବଳ କେତେକ ବ୍ରାହ୍ମଣ ବା ରାଜାଙ୍କର ଉଚ୍ଚପଦସ୍ଥ କର୍ମଚାରୀ ଭକ୍ତ ଭାବକୁ ଛଦ୍ମବେଶ କରି ପ୍ରକଟ କରୁଥିଲେ । ବଳରାମ ଦାସ ଏହା ବିରୁଦ୍ଧରେ ମଧ୍ୟ ବିଦ୍ରୋହ କରି ଅନ୍ତ୍ରାନ ବ୍ରାହ୍ମଣ ସବୁଜାତିର ଲୋକଙ୍କୁ ଏହି ଅଧିକାର ପ୍ରଦାନ କଲେ । ସେଥିପାଇଁ "ଭାବ ସମୁଦ୍ର"ରେ ବେଶ୍ୟା ମୁଣ୍ଡରୁ ସଦ୍ୟନିର୍ଗତ ବଳରାମ ନୀଳାଚଳପତି ଜଗନ୍ନାଥଙ୍କ ଦ୍ୱାରା ଭକ୍ତ ଶ୍ରେଷ୍ଠ ଭାବେ ଘୋଷିତ ହେଲେ ଏବଂ ତାଙ୍କୁ ଦଣ୍ଡ ଦେଇଥିବା ରାଜା ଓ ରାଜକର୍ମଚାରୀମାନେ ସର୍ବସମକ୍ଷରେ ଦଣ୍ଡିତ ଓ ଅପମାନିତ ହେବାକୁ ବାଧ୍ୟ ହେଲେ । ବଳରାମ ଦାସଙ୍କ ଜୀବନୀ ସମ୍ବନ୍ଧରେ ପ୍ରଚଳିତ ଏହି ସବୁ ଉପାଖ୍ୟାନରେ ଥିବା ବିପ୍ଳବୀ ମନୋଭାବ "ଲକ୍ଷ୍ମୀ ପୁରାଣ"ର ମଧ୍ୟ ମୂଳ ସ୍ୱର । ବଳରାମଙ୍କ ଆରାଧ୍ୟା ଲକ୍ଷ୍ମୀ ଦେବୀ ନଗର ଭ୍ରମଣ କାଳରେ ଶ୍ରୀୟା ଚଣ୍ଡାଳୁଣୀ ସେବାରେ ଏବଂ ତା'ର ପବିତ୍ରତାରେ ସନ୍ତୁଷ୍ଟ ହୋଇ, ତା ଗୃହରେ ଆତିଥ୍ୟ ନେଇଛନ୍ତି । ମଣିଷ କେବଳ ବ୍ରାହ୍ମଣ ଜାତିରେ ଜନ୍ମ, ହେଲେ ବ୍ରାହ୍ମଣ ହୁଏ ନାହିଁ; ଶୁଦ୍ଧପୂତ ଆଚରଣ ଚଣ୍ଡାଳକୁ ମଧ୍ୟ ବ୍ରାହ୍ମଣର ଆସନ ପ୍ରଦାନ କରେ । ଜାତିପ୍ରଥାକୁ ବିରୋଧ କରୁଥିବା ବୁଦ୍ଧଦେବ ମଧ୍ୟ କହିଥିଲେ "ଜାତି ମା ପୁଚ୍ଛ ଚରଣଂ ପୁଚ୍ଛ ।" ଅର୍ଥାତ୍ ଜାତି ଅପେକ୍ଷା ଆଚରଣ ଶ୍ରେଷ୍ଠ । ବଳରାମଙ୍କ ଲକ୍ଷ୍ମୀ ମଧ୍ୟ ବୁଦ୍ଧଦେବଙ୍କ ପରି କହିଲେ, ଜାତି ନୁହେଁ, ଆଚରଣରେ ପବିତ୍ରତା ହିଁ ଦେବତାର ନିବାସ ଭୂମି । ଲକ୍ଷ୍ମୀଙ୍କର ବିଦ୍ରୋହ ରକ୍ଷଣଶୀଳ ପୁଣି ବ୍ରାହ୍ମଣମାନଙ୍କ ସେବା-ସନ୍ତୁଷ୍ଟ ପ୍ରଭୁ ବଳରାମ ଓ ଜଗନ୍ନାଥଙ୍କ ପ୍ରଥମେ ବିଦ୍ରୂପ କରା ଯାଇଥିଲେ ହେଁ, ଷୋଡ଼ଶ ଶତାବ୍ଦୀର ପରିବେଶ ଲକ୍ଷ୍ମୀଙ୍କର ବିଦ୍ରୋହକୁ ହିଁ ଗୁରୁତ୍ୱ ଦେଇଥିଲା ଏବଂ ଜଗନ୍ନାଥ ଓ ବଳରାମ ଶେଷରେ ଲକ୍ଷ୍ମୀଙ୍କ ବିଦ୍ରୋହକୁ ମାନିବା ପାଇଁ ବାଧ୍ୟ ହୋଇଥିଲେ ।

ଅସ୍ପୃଶ୍ୟତା ନିବାରଣ ବା ଜାତି ପ୍ରଥା ଲୋପ କରିବାପାଇଁ ବଳରାମ ଦାସ କେବଳ ଯେ ଲକ୍ଷ୍ମୀଙ୍କ ବିଦ୍ରୋହକୁ ଗୁରୁତ୍ୱ ଦେଇଛନ୍ତି ତା' ନୁହେଁ ।

ଜଗନ୍ନାଥ ଓ ବଳରାମଙ୍କ ଦ୍ୱାରା ଲକ୍ଷ୍ମୀଙ୍କର ଏହି କଷଣକୁ ଚରମୁରଣୀୟ କରିବାପାଇଁ ସେ ମହାପ୍ରସାଦର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ସୁଖ ମହାପ୍ରସାଦ ଗ୍ରହଣ କରିବାରେ ଜାତି, ବର୍ଣ୍ଣର ବିଚାର ହୁଏ ନାହିଁ । ଏହା ଏକ ପ୍ରଚଳିତ ପ୍ରଥା ଥିଲେ ହେଁ, ବଳରାମ ଦାସ 'ଲକ୍ଷ୍ମୀ ପୁରାଣ' ରେ ଏହାପାଇଁ ଏକ ନୂତନ ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ଲକ୍ଷ୍ମୀଙ୍କର ଶ୍ରୀୟାଣୀ ଗୃହ ଗମନରୁ ଏହାର ସୃଷ୍ଟି । ମଣିଷ ମନ ପବିତ୍ର ହେଲେ ସେ ଚଣ୍ଡାଳ ହେଲେହେଁ, ବ୍ରାହ୍ମଣ ପରି ଦେବ ପୂଜାର ଯୋଗ୍ୟ ହୋଇ ପାରେ । ସେଥିପାଇଁ ଲକ୍ଷ୍ମୀଙ୍କ ଅନୁରୋଧ କ୍ରମେ ଜଗନ୍ନାଥଙ୍କ ମହାପ୍ରସାଦ ସେବନ କରିବାରେ ଉଚ୍ଚ ଓ ନୀଚ ଜାତିର ବିଚାର ଦୂର ହେଲା ଏବଂ ସବୁ ଜାତିର ଲୋକେ ମହାପ୍ରସାଦ ଗ୍ରହଣ କରିବାରେ ସମାନ ଅଧିକାର ପ୍ରାପ୍ତ ହେଲେ । ଜଗମୋହନ ରାମାୟଣରେ ମଧ୍ୟ ସୀତାଙ୍କ କନକ-ପ୍ରତିମାକୁ ଅଯୋଧ୍ୟାର ଲୋକେ 'ପୁଚୁଙ୍କୋଉଅମରେ ଲକ୍ଷ୍ମୀଙ୍କ ପରି ଷୋଡ଼ଶ ଉପଚାରରେ ପୂଜା କରିଛନ୍ତି ଓ ତାଙ୍କ ପ୍ରସାଦକୁ 'ନିର୍ମାଲ୍ୟ ପରି ଗ୍ରହଣ କରିଛନ୍ତି ।

ଲକ୍ଷ୍ମୀପୁରାଣର ମୂଳ ବିଷୟବସ୍ତୁରେ ବଳରାମଙ୍କ କଣ୍ଠସ୍ୱର ପ୍ରତିଧ୍ୱନିତ ହେଉଥିଲେ ହେଁ, ଏଥିରେ ଥିବା ଶବରୀ ଉପାଖ୍ୟାନ ଏହାର ଏକ ବ୍ୟତିକ୍ରମ । ଉପାଖ୍ୟାନଟି ହେଉଛି, ଜାରାଶବର ଗୃହରେ ରାମ ଓ ଲକ୍ଷ୍ମଣଙ୍କର ଅବସ୍ଥାନ, ଏବଂ ଶବରୀ ପ୍ରଦତ୍ତ ଦନ୍ତକ୍ଷତଯୁକ୍ତ ଆମ୍ର-ଗ୍ରହଣ । ଜଗମୋହନ ରାମାୟଣ ଅନୁଯାୟୀ ରାବଣ କର୍ତ୍ତୃକ ସୀତା ହରଣ ପରେ ସୀତାଙ୍କୁ ବିଭିନ୍ନ ସ୍ଥାନରେ ଅନ୍ୱେଷଣ କରୁଥିବା ସମୟରେ ରାମ ଓ ଲକ୍ଷ୍ମଣ ପମ୍ପା ସରୋବର ନିକଟରେ ଏକ ଶବର ପରିବାର ଦ୍ୱାରା ଅଭ୍ୟର୍ଥିତ ହୋଇଛନ୍ତି । ସେହି ପରିବାରର ଶବରୀ ରାମ ଓ ଲକ୍ଷ୍ମଣଙ୍କୁ ଦନ୍ତକ୍ଷତଯୁକ୍ତ ପକ୍ୱ ଆମ୍ବ ସବୁ ପ୍ରଦାନ କରେ । ତୁଳସୀ ଦାସ ଓ କୃତ୍ତିବାସ ମଧ୍ୟ ଏହି ଉପାଖ୍ୟାନକୁ ସୀତା ଅନ୍ୱେଷଣ କାଳରେହିଁ ରଖିଛନ୍ତି । ଅଥଚ ଲକ୍ଷ୍ମୀ ପୁରାଣରେ ଏହି ଉପାଖ୍ୟାନରେ କେତେକ ପାର୍ଥକ୍ୟ ପରିଦୃଷ୍ଟ ହୁଏ ।

୧ । ରାମାୟଣ ସବୁରେ ଶବରର କୌଣସି ନାମ ନାହିଁ । କୌଣସି କୌଣସି ସ୍ଥାନରେ ଶବରୀଙ୍କୁ " ଋଷି ପରିବାରୀ" ରୂପେ ଗ୍ରହଣ କରାଯାଇଛି ।

ଅଥଚ ବଳରାମ ଦାସଙ୍କ 'ଲକ୍ଷ୍ମୀ ପୁରାଣରେ' ଶବରର ନାମ ହୋଇଛି ଜାରା ଶବର

୨ । ସବୁ ରାମାୟଣରେ ରାବଣ ବଧ ପୂର୍ବରୁ ଏହି ଉପାଖ୍ୟାନ ସନ୍ନିବେଶିତ ହୋଇଥିଲେହେଁ 'ଲକ୍ଷ୍ମୀପୁରାଣ'ରେ ଏହା ରାବଣ ବଧ ପରେ ବର୍ଣ୍ଣିତ ।

୩ । ରାମାୟଣ ସବୁରେ ରାମ ଓ ଲକ୍ଷ୍ମଣ ଶବରୀ ଦ୍ୱାରା ଅଭ୍ୟର୍ଥିତ ହେବା ପରେ ସେହି ସ୍ଥାନ ପରିତ୍ୟାଗ କରିଥିବା ବର୍ଣ୍ଣିତ । ଅଥଚ 'ଲକ୍ଷ୍ମୀ ପୁରାଣ' ଅନୁଯାୟୀ ରାମ ଓ ଲକ୍ଷ୍ମଣ ଜାରାଶବର ଗୃହରେ ଦଶ ବର୍ଷ ଅବସ୍ଥାନ କରିଥିଲେ ।

୪ । ଜଗମୋହନ ରାମାୟଣରେ ଶବର ଓ ଶବରୀର ଉଲ୍ଲେଖ କରାଯାଇଥିଲେ ହେଁ, ଶବରୀଙ୍କୁ ପ୍ରାଧାନ୍ୟ ଦିଆଯାଇଛି । ଅଥଚ 'ଲକ୍ଷ୍ମୀ ପୁରାଣ'ରେ ଜାରା ଶବର ମୁଖ୍ୟସ୍ଥାନ ଗ୍ରହଣ କରିଛି ।

୫ । ଜାରା ଶବର ଚରିତ୍ର ରାମାୟଣରେ ଦେଖିବାକୁ ମିଳେ ନାହିଁ । ଏହା ହେଉଛି, ମହାଭାରତର ଏକ ଚରିତ୍ର ଏବଂ ଶ୍ରୀକୃଷ୍ଣଙ୍କ ମୃତ୍ୟୁର କାରଣ । ଅଥଚ 'ଲକ୍ଷ୍ମୀ ପୁରାଣକାର ମହାଭାରତ ଜାରା ଶବରକୁ ରାମ କଥାରେ ଗ୍ରହଣ କରିଛନ୍ତି ।

ବଳରାମ ଦାସ "ଜଗମୋହନ ରାମାୟଣ"ରେ ବାଲ୍ମୀକି ରାମାୟଣ ବ୍ୟତୀତ ବହୁ ପୁରାଣ, କାବ୍ୟ, ନାଟକ ଏବଂ ଲୋକ କଥାରୁ ରାମ କଥା ସମ୍ବନ୍ଧୀୟ ବହୁ ଉପାଦାନ ସଂଗ୍ରହ କରିଥିଲେ ହେଁ, କୌଣସି ସ୍ଥଳରେ ସେ ରାମ କଥାରେ ନ ମିଳୁଥିବା ଅଦ୍ଭୁତ ପରଂପରାକୁ ସ୍ଥାନ ପ୍ରଦାନ କରିନାହାନ୍ତି । ସାରଳା ଦାସଙ୍କ ମହାଭାରତରେ ରାମ କଥା ଦୃଷ୍ଟିରୁ ଏ ପ୍ରକାର ବହୁ ବ୍ୟତିକ୍ରମ ଦେଖିବାକୁ ମିଳୁଥିଲେହେଁ, ବଳରାମ ଦାସ ଏ ବିଷୟରେ ଅତ୍ୟନ୍ତ ସତର୍କତା ଅବଲମ୍ବନ କରିଥିବା ତାଙ୍କ ବର୍ଣ୍ଣିତ ଅଗଣିତ ଉପାଖ୍ୟାନରୁ ପ୍ରମାଣିତ ହୋଇଥାଏ । ସେଥିପାଇଁ କଥା ଦୃଷ୍ଟିରୁ "ଲକ୍ଷ୍ମୀପୁରାଣ" ପରି ଏକ

କ୍ଷୁଦ୍ର ରଚନାରେ ବଳରାମ ଦାସ ତାଙ୍କ କଥାରେ ଏପରି ବ୍ୟତିକ୍ରମ ସୃଷ୍ଟି କରିବା ସମ୍ଭବ ନୁହେଁ ।

ତେଣୁ 'ଲକ୍ଷ୍ମୀ ପୁରାଣ'ର ମୂଳ ଉପାଖ୍ୟାନରେ ଥିବା ଏହି ଉପକଥାଟି ବୋଧହୁଏ ପରବର୍ତ୍ତୀ ସଂଯୋଜନା ।

ବଳରାମ ଦାସ 'ଲକ୍ଷ୍ମୀ ପୁରାଣର' ଉପାଖ୍ୟାନକୁ ପୁରୁଷୋତ୍ତମ କ୍ଷେତ୍ର ସହ ସଂଯୋଜନ କରି ଏହାକୁ ଓଡ଼ିଆ ରୂପ ପ୍ରଦାନ କରିଛନ୍ତି । ସଂସ୍କୃତ ପୁରାଣରେ ପ୍ରଚଳିତ ଲକ୍ଷ୍ମୀ-ଉପାଖ୍ୟାନ ଏହା ଠାରୁ ସ୍ୱତନ୍ତ୍ର । ଏଥିରେ ଓଡ଼ିଶାର ରୀତି ନୀତି ବର୍ଣ୍ଣିତ ହୋଇଥିବାରୁ ଏହା ଓଡ଼ିଆମାନଙ୍କର ଏକ ଲୋକପ୍ରିୟ ଗ୍ରନ୍ଥ । ମାର୍ଗଶିରମାସର ଗୁରୁବାର ଦିନ ଲକ୍ଷ୍ମୀ ପୂଜା ଅନୁଷ୍ଠିତ ହୁଏ । ସେ ଦିନ ଓଡ଼ିଶାର ସବୁଜାତିର ଲୋକେ ଶୁଦ୍ଧ ଭକ୍ତିଭାବରେ ଲକ୍ଷ୍ମୀଙ୍କର ଆବାହନ କରିଥାନ୍ତି । ଏହି ଉତ୍ସବକୁ ମାଣବସା ବା ଧାନ ମାଣିକା ଓଷା ମଧ୍ୟ କୁହାଯାଏ । ସେଥିପାଇଁ ଲକ୍ଷ୍ମୀପୁରାଣର ଅନ୍ୟ ନାମ ହେଉଛି ମାଣବସା ପୁରାଣ ବା ଧାନ ମାଣିକା । ଗୁରୁବାରରେ ପାଠ ହେଉଥିବାରୁ ଏହା "ଗୁରୁବାର ବୋଲି" ପୁଣି ଲକ୍ଷ୍ମୀଙ୍କ କଷଣ ବର୍ଣ୍ଣିତ ହୋଇଥିବାରୁ ଏହା "ଲକ୍ଷ୍ମୀ କଷଣ" । ଲକ୍ଷ୍ମୀ ପୁରାଣରେ ମୂଳ ପାଠ ଠାରୁ କିଛି କିଛି ପରିବର୍ତ୍ତନ ମଧ୍ୟ ପରିଲକ୍ଷିତ ହୁଏ । ଏସବୁ ସତ୍ତ୍ୱେ ପୁରାଣ ପାଠ ପରମ୍ପରାକୁ ଅନୁସରଣ କରି ଲୋକେ ମାର୍ଗଶିର ଗୁରୁବାର ଦିନ 'ଲକ୍ଷ୍ମୀ ପୁରାଣ''କୁ ହିଁ ପାଠ କରିଥାନ୍ତି । ଦେବୀ ପୂଜାରେ ଏ ପର୍ଯ୍ୟନ୍ତ ସାରଳାଦାସଙ୍କ "ଚଣ୍ଡୀପୁରାଣ" ସ୍ଥାନରେ ସଂସ୍କୃତରେ ରଚିତ ଦେବୀ-ମହାତ୍ମ୍ୟ ପାଠକରି ଲୋକେ ଧର୍ମ ଅର୍ଜନ କରୁଥିବା ବେଳେ ଲକ୍ଷ୍ମୀ ପୂଜାରେ ଓଡ଼ିଆ "ଲକ୍ଷ୍ମୀପୁରାଣ" ଜାତିକୁ ଯୁଗଯୁଗ ଧରି ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରଦାନ କରି ଆସିଛି । ଲକ୍ଷ୍ମୀ ପୁରାଣର ଏହି ମହତ୍ତ୍ୱ ଯୋଗୁଁ ପୁରାଣକାର ପୀତାମ୍ବର ଦାସ 'ଲକ୍ଷ୍ମୀପୁରାଣ'କୁ ଅଷ୍ଟାଦଶ ପୁରାଣ ମଧ୍ୟରେ ଗଣନାକରିବା ପାଇଁ କୁଣ୍ଠାବୋଧ କରି ନାହାନ୍ତି ।



# ଗରୁଡ଼ ପୁରାଣ –
# ଏକ ଦର୍ଶନ

ଅଧ୍ୟାପିକା—ବିଦ୍ୟୁତ୍‌ଲତା ନନ୍ଦ

ଭାରତୀୟ ସଂସ୍କୃତିରେ ପୁରାଣର ସ୍ଥାନ ଅତି ମହତ୍ତ୍ୱପୂର୍ଣ୍ଣ । ଭାରତବର୍ଷର ଐତିହ୍ୟ ଓ ସଂସ୍କୃତି ଧର୍ମଭିତ୍ତିକ । ଯୁଗଯୁଗ ଧରି ଏ ଦେଶ ପରମ୍ପରାର ମୂଳଭିତ୍ତି ଧର୍ମବିଶ୍ୱାସ ଦ୍ୱାରା ହିଁ ତିଷ୍ଠି ରହିଛି । ପ୍ରତ୍ୟେକ ଯୁଗରେ ବିପଥଗାମୀ କଳୁଷିତ ମାନବସମାଜକୁ ଆଧ୍ୟାତ୍ମିକ ଚେତନା, ଧର୍ମ, ଭକ୍ତି, ତଥା ଐଶ୍ୱରିକ ଚିନ୍ତାରେ ପ୍ରଭାବିତ କରିବାପାଇଁ ପୁରାଣ ଦର୍ଶନର ତାତ୍ପର୍ଯ୍ୟ ରହିଅଛି । ପୌରାଣିକ ଆଖ୍ୟାନ ସାହାଯ୍ୟରେ ମାନବସମାଜକୁ ସତ୍‌ପଥକୁ ଆଣି ମଙ୍ଗଳ ସାଧନ କରିବା ପୁରାଣସାହିତ୍ୟର ଲକ୍ଷ୍ୟ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ—"ସମାଜ ଓ ସାମାଜିକ ଧର୍ମର ଆତ୍ମପ୍ରକାଶ ପାଇଁ ଭାରତୀୟ ପୁରାଣ ଭଳି ଆଉ ସାହିତ୍ୟ ଅଛି ବୋଲି ମନେ ହୁଏ ନାହିଁ । ଆମ ଧର୍ମର ମୌଳିକ ଓ ପ୍ରାଚୀନତମ ଗ୍ରନ୍ଥ ବେଦଠାରୁ ଆରମ୍ଭକରି ବ୍ରାହ୍ମଣ ସାହିତ୍ୟ, ଗୀତା, ଉପନିଷଦ୍ ସୂତ୍ର ଷଡ଼ଦର୍ଶନ ଓ ପୁରାଣ ଶାସ୍ତ୍ର ପର୍ଯ୍ୟନ୍ତ ଆଧ୍ୟାତ୍ମିକଜ୍ଞାନ ବିତରଣ ପାଇଁ ବହୁ ପୁରାକାଳରୁ ଏଯାଏଁ ପ୍ରଚଳିତ ହୋଇ ଆସୁଛନ୍ତି । ରାମାୟଣ ଓ ମହାଭାରତକୁ ଶୁଣୁଣୁ ଶୁଣୁ ପାପ ନାଶ ହୋଇଯାଏ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି । ପୁରାଣଗୁଡ଼ିକ ଆମ ଧର୍ମ ବିଶ୍ୱାସର ଧାରକ ଓ ବାହକ ।

ପୁରାଣ ସାହିତ୍ୟର ନିର୍ଦ୍ଦିଷ୍ଟକାଳ ନିର୍ଣ୍ଣୟରେ ସନ୍ଦେହ ଥିଲେ ମଧ୍ୟ ଉପନିଷଦ ସମୟରେ ଏହା ଲେଖା ବୋଲି ଅନୁମାନ କରାଯାଏ । ବ୍ୟାସମୁନି

ସଂସ୍କୃତରେ ଅଷ୍ଟାଦଶ ପୁରାଣ ଓ ଅଷ୍ଟାଦଶ ଉପପୁରାଣ ଲେଖିଥିବାର ବିଶ୍ୱାସ କରାଯାଏ । ମହାଶକ୍ତିମାନ ତ୍ରିଦେବ ବ୍ରହ୍ମା, ବିଷ୍ଣୁ, ଶିବଙ୍କ ସମ୍ବନ୍ଧୀୟ ମହାପୁରାଣ ସବୁ ଯୁଗେ ଯୁଗେ ଆଦୃତ । ପୁରାଣରେ ଦେବାଦେବୀଙ୍କ ସ୍ତୁତି, ଗୁଣବର୍ଣ୍ଣନା ଓ ପୁରୁଣା ଗଳ୍ପ ମାଧ୍ୟମରେ ନୀତିଶିକ୍ଷା ଓ ଜ୍ଞାନ ଧର୍ମ ପ୍ରଚାର ଓ ପ୍ରସାର କରାଯାଇ ଥାଏ । ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କୁ କେନ୍ଦ୍ର କରି ଅଷ୍ଟାଦଶ ପୁରାଣ ବ୍ୟତୀତ ଆହୁରି ଅନେକ ପୁରାଣ ବିଭିନ୍ନ ମତବାଦୀଙ୍କ ଦ୍ୱାରା ଲେଖାଯାଇଛି । କିନ୍ତୁ ପ୍ରତ୍ୟେକ ପୁରାଣରେ ସେହି ଏକ ଉଦ୍ଦେଶ୍ୟ ସତ୍ୟ ଧର୍ମର ପରିପ୍ରକାଶ ଓ ସମାଜର ମଙ୍ଗଳ ସାଧନ ।

ମୂଳ ସଂସ୍କୃତ "ଗରୁଡ଼ ପୁରାଣ" ଷୋଡ଼ଶ ଅଧ୍ୟାୟରେ ଲିଖିତ । ଶ୍ରୀ ବିଶ୍ୱନାଥ ମହାପାତ୍ର ଓଡ଼ିଆରେ ଏହି ଗ୍ରନ୍ଥ ପଦ୍ୟାନୁବାଦ କରି ଊନବିଂଶ ଅଧ୍ୟାୟରେ ଶେଷ କରିଛନ୍ତି । ଏହି ପୁରାଣରେ ଉତ୍କଳୀୟ ସାମାଜିକ ଚଳଣି ଓ ରୀତିନୀତି ପ୍ରତିଫଳିତ ହୋଇଅଛି । ଓଡ଼ିଆ ସାମାଜିକ ଧର୍ମ, ସଂସ୍କୃତି, ଜ୍ଞାନ ଓ ସଂଯମର ଭିତ୍ତି ଏଥିରେ ପ୍ରତିପାଦିତ କରାଯାଇଛି ।

**ଗରୁଡ଼ ପୁରାଣର ସ୍ଥାନ**—ଅଷ୍ଟାଦଶ ପୁରାଣ ମଧ୍ୟରୁ **ବ୍ରହ୍ମାଙ୍କ ସମ୍ବନ୍ଧୀୟ** ପୁରାଣ ଗୁଡ଼ିକହେଲା—ବ୍ରହ୍ମାଣ୍ଡ, ବ୍ରହ୍ମବୈବର୍ତ୍ତ, ମାର୍କଣ୍ଡେୟ, ଭବିଷ୍ୟ ଓ ବାମନ । **ବିଷ୍ଣୁଙ୍କ ସମ୍ବନ୍ଧୀୟ**—ବିଷ୍ଣୁ, ଭାଗବତ, ନାରଦୀୟ, ଗରୁଡ଼, ପଦ୍ମ, ବରାହ । **ଶିବଙ୍କ ସମ୍ବନ୍ଧୀୟ**—ଶିବ, ଲିଙ୍ଗ, ସ୍କନ୍ଦ, ଅଗ୍ନି, ମତ୍ସ୍ୟ, କୂର୍ମ, ଓ ବାୟୁ । ବୈଷ୍ଣବମାନେ ଗରୁଡ଼ ପୁରାଣକୁ ଯଥେଷ୍ଟ ସମ୍ମାନ ଦିଅନ୍ତି । ବିଷ୍ଣୁଙ୍କ ଭଳି ତାଙ୍କର ପରମଭକ୍ତ ବିନତାନନ୍ଦନ ଗରୁଡ଼ ସବୁମନ୍ଦିରେ ପୂଜା ପାଆନ୍ତି । ଯଦିଓ ଏହା ମହାପୁରାଣ ନୁହେଁ, ତଥାପି ଏହା ସାମାଜିକ ଧର୍ମ ପରିବେଷଣ ଦ୍ୱାରା ଜନ ସମାଜର ହିତାର୍ଥେ ଉତ୍ତମ ପୁରାଣ ଅଟେ । ଏହି ପୁରାଣରେ ନିଜେ ପ୍ରଭୁ ଜଗନ୍ନାଥ-ସ୍ୱୟଂ ଭଗବାନ, ଗରୁଡ଼ଙ୍କୁ କହିଛନ୍ତି—

"ଗରୁଡ଼ ପୁରାଣ ଏହା ଅଟେ ଗ୍ରନ୍ଥସାର
ଶୁଣିଣ ସକଳ ସନ୍ଥଜନେ ଭକ୍ତି କର ।"

ଅଷ୍ଟାଦଶ ପୁରାଣମାନଙ୍କରେ ପଞ୍ଚଲକ୍ଷଣ ରହିବା ବିଧେୟ—

"ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶ ମନ୍ୱନ୍ତରାଣି ଚ
ବଂଶାନୁଚରିତଂ ଚୈବ ପୁରାଣଂ ପଞ୍ଚଲକ୍ଷଣମ୍ ।"

ଯେଉଁଗୁଡ଼ିକ ହେଉଛି ସୃଷ୍ଟି, ସ୍ଥିତି ଓ ପ୍ରଳୟ । ଦେବାଦେବୀଙ୍କର ବଂଶାବଳୀ, ମନୁ ଜନ୍ମା ରାଜାଙ୍କର ସମୟ, ସୂର୍ଯ୍ୟ ବା ଚନ୍ଦ୍ର ବଂଶୀୟ ଇତିହାସ । କିନ୍ତୁ ପୁରାଣରେ ଏସବୁ ଲକ୍ଷଣ ଦେଖାଯାଏ । ଗରୁଡ଼ପୁରାଣ ମୁଖ୍ୟତଃ ପାରମାର୍ଥିକ ସ୍ୱର୍ଗନର୍କ, ପାପପୁଣ୍ୟର ବିଚାର ଓ ଯମମାର୍ଗ ବିଷୟରେ ବର୍ଣ୍ଣିତ ହୋଇଅଛି । ସରସ୍ୱତୀଙ୍କର ଆରାଧନା ଓ ସାହାଯ୍ୟ ଭିକ୍ଷାକରି କବି ପ୍ରଥମ ଅଧ୍ୟାୟରେ ଗରୁଡ଼ପୁରାଣର ପୂର୍ବକଥା ବର୍ଣ୍ଣନା କରିଛନ୍ତି । ବିଷ୍ଣୁ ପୁରାଣ ଓ ପଦ୍ମ ପୁରାଣ ଭଳି ଯମ-ଯୋଗମସ୍ତିତ ବା ସଂଯମର ପ୍ରତୀକ, ମଣିଷର ପାପପୁଣ୍ୟର ବିଚାରକରିବେ ନୀତିବାନ୍ ଓ ସଂଯତ ଜୀବନଯାପନ ପାଇଁ ବାଟ ଦେଖାଇଛନ୍ତି । ବିଷ୍ଣୁ ପୁରାଣରେ ନର୍କର ବିଭିନ୍ନ ନାମ ଲିଖିତ ହୋଇଛି । ପଦ୍ମ ପୁରାଣରେ ମଧ୍ୟ ଯମଦଣ୍ଡ ବିଷୟରେ ବର୍ଣ୍ଣନା କରାଯାଇଛି । ଗରୁଡ଼ ପୁରାଣରେ ଯେଉଁ କାର୍ଯ୍ୟଦ୍ୱାରା ମନୁଷ୍ୟ ସଂଯମର ମାର୍ଗ ଓ ଭଲମନ୍ଦର ବିଚାର କରିପାରିବ, ସେ ବିଷୟରେ ନୀତିଶିକ୍ଷା ଦିଆଯାଇଅଛି । ଭାଗବତ ପୁରାଣ ଭଳି ଏଥିରେ ଅନେକ ନୀତିବାଣୀ ରହିଛି । ଗରୁଡ଼ ବାହନ ହେଲେ ମଧ୍ୟ ବିଷ୍ଣୁଙ୍କ ସଂସ୍ପର୍ଶରେ ଆସି ମହାନ୍ ହୋଇ ପାରିଛନ୍ତି ।

**ଗରୁଡ଼ ପରିଚୟ**—କେତେକ ପଶୁପକ୍ଷୀ ଦେବାଦେବୀଙ୍କର ବାହନ ଭାବେ ପୂଜାପାଆନ୍ତି—ଐରାବତ ହସ୍ତୀ ଇନ୍ଦ୍ରଙ୍କର, ନନ୍ଦୀ ବୃଷଭ ଶିବଙ୍କର, ମହିଷି ଯମଙ୍କର, ସିଂହ ଓ ବ୍ୟାଘ୍ର-ଦୁର୍ଗାଙ୍କର, ମେଷ-ଅଗ୍ନିଙ୍କର, ମୂଷା-ଗଣେଶଙ୍କର ବିଲେଇ-ଷଷ୍ଠୀଦେବୀଙ୍କର, ଶ୍ୱାନ ବା କୁକୁର-ବୀରଭଦ୍ରଙ୍କର, ଶୁକପକ୍ଷୀ-କାମ ଦେବଙ୍କର, ରାଜହଂସ-ବ୍ରହ୍ମାଙ୍କର, ମୟୂର-କାର୍ତ୍ତିକେୟଙ୍କର, ଶାଗୁଣା-ଶନିଙ୍କର ଚିଲ-ବ୍ରାହ୍ମଣୀଙ୍କର, ପେଚା-ଲକ୍ଷ୍ମୀଙ୍କର, ହଂସ-ସରସ୍ୱତୀଙ୍କର, ଗରୁଡ଼-ବିଷ୍ଣୁଙ୍କର । ଗରୁଡ଼ ବା ସୁପର୍ଣ୍ଣ ଗୋଟିଏ ପୌରାଣିକ ପକ୍ଷୀ । ବିରାଟକାୟ । ଅର୍ଦ୍ଧେକ ମଣିଷ, ଅର୍ଦ୍ଧେକ ଇଗଲ ବା ଚିଲଭଳି । ଗରୁଡ଼ ବାହନ ହେବା ବିଷୟରେ ଅନେକ କାହାଣୀ ଅଛି । ଏହି ଗଳ୍ପଟି ମହାଭାରତରୁ ଉଦ୍ଧାର କରାଯାଇଛି—

ବିନତା ଓ କାଦ୍ରୁ ଦୁଇଭଉଣୀ । ବିନତାଙ୍କର ପୁତ୍ର ଗରୁଡ଼ । କାଦ୍ରୁଙ୍କର ଶତାଧିକ ସର୍ପପୁତ୍ର । ଦୁଇଭଉଣୀଙ୍କ ମଧ୍ୟରେ କଳି ଲାଗିବାରୁ ବିନତା ହାରିଯାଇ କାଦ୍ରୁ ପୁତ୍ରମାନଙ୍କର ସେବାକାର୍ଯ୍ୟରେ ନିଯୁକ୍ତ ହେଲେ । ଗରୁଡ଼ ସାପ ମାନଙ୍କର ପ୍ରଧାନ ଶତ୍ରୁ । ତେଣୁ ସାପମାନେ ଅମର ହେବାକୁ ଇଚ୍ଛାକରି ଗରୁଡ଼ଙ୍କୁ ଚନ୍ଦ୍ରରୁ ଅମୃତ ଆଣିବାପାଇଁ ପଠାଇଲେ, ଗରୁଡ଼ ତ ମହାପରାକ୍ରମ-ଶାଳୀ । ଚନ୍ଦ୍ରଙ୍କୁ ନେଇ ଫେରିବାବେଳେ ବାଟରେ ଇନ୍ଦ୍ର ଆକ୍ରମଣ କଲେ । ଗରୁଡ଼ ଜିତିଲେ ଏବଂ ଇନ୍ଦ୍ର ହାରିଗଲେ । ପୁଣି ବାଟରେ ବିଷ୍ଣୁ ଆକ୍ରମଣ କଲେ । ମାତ୍ର ଗରୁଡ଼ ହାରିଗଲେ ସତ ଇନ୍ଦ୍ର ଭଳି ବିଷ୍ଣୁଙ୍କର ଭାବେ ଆହତ ହୋଇ ଗରୁଡ଼ଙ୍କ ପାଖେ ବନ୍ଧୁ ଡାକିଲେ । ଗରୁଡ଼ଙ୍କୁ ଅମର କରିଦେଲେ ଓ ଉଚ୍ଚ ଆସନରେ ତାଙ୍କ ପାଖେ ବସାଇଲେ । ସେହିଦିନୁ ଗରୁଡ଼ ବିଷ୍ଣୁଙ୍କର ବାହନ ହେଲେ । ମାତ୍ର ଗରୁଡ଼ ବିଷ୍ଣୁଙ୍କ ରଥର ଆଗରେ ଓ ସ୍ତମ୍ଭ ଉପରେ ବସି ପୂଜା ପାଇଲେ । ପ୍ରକୃତ ଭକ୍ତ ଭଗବାନଙ୍କଠାରୁ ବଡ଼ ବୋଲି ମଧ୍ୟ ଏଥିରୁ ପ୍ରମାଣିତ ହୁଏ ।

**ଗରୁଡ଼ ପୁରାଣ କାହିଁକି ?**—ପୁରାଣରେ ଦେବାଦେବୀଙ୍କର ଗୁଣ କୀର୍ତ୍ତନ ଓ ସମ୍ମାନ ପ୍ରଦର୍ଶନ କରାଯାଇଥାଏ । ମହାଭକ୍ତ ଖଗପତି ଗରୁଡ଼ ହାତଯୋଡ଼ି ମଥାନୋଇଁ ବିନୀତ ଅନ୍ତରରେ ଶ୍ରୀହରି ବା ବିଷ୍ଣୁ ବା ଜଗନ୍ନାଥଙ୍କ ମୁହଁରୁ ଗୁଡ଼ିଏ ଧର୍ମ ତତ୍ତ୍ୱ ପ୍ରଶ୍ନ କରିଛନ୍ତି । ନିଜେ ପ୍ରଭୁ ଯେଉଁ ଉତ୍ତରସବୁ ମାନବସମାଜର ମଙ୍ଗଳପାଇଁ ଦେଇଛନ୍ତି ତାହା ଏହି ପୁରାଣରେ ବର୍ଣ୍ଣିତ ହୋଇଅଛି । ସତ୍ୟ, ତ୍ରେତା, ଦ୍ୱାପର ତିନିଯୁଗ ଶେଷପରେ କଳିଯୁଗର ପ୍ରବେଶ । କଳିଯୁଗରେ ଲୋକେ ନ୍ୟାୟମାର୍ଗ ଛାଡ଼ି ଅଧର୍ମ ଆଚରଣ କଲେ । ସଂସାରଯାକ ଅଧର୍ମ, ଅନୀତି, ଅନାଚାର, ଅସତ୍ୟ, ଅଯଶ ବ୍ୟାପିଗଲା । ଶ୍ରୀହରି ଚରଣରେ ଆଉ କାହାରି ମନ ରହିଲା ନାହିଁ । ଷଡ଼ରିପୁ—କାମ, କ୍ରୋଧ, ଲୋଭ, ମଦ, ମୋହ, ମାତ୍ସର୍ଯ୍ୟରେ ଲୋକେ ଅପାର ଆନନ୍ଦ ଲଭିଲେ । ମୁନିମାନେ ଏସବୁ ଦେଖି ଭାବିଲେଣି କଲେ । ଶୌନକ ନାମରେ ଜଣେ ବୃଦ୍ଧମୁନି କହିଲେଯେ, ଶଙ୍ଖାସୁର ଗ୍ରାସିକରିଥିବା ବେଦ ନୈମିଷାରଣ୍ୟରୁ ମିଳିଛି, ତେଣୁ ତାହା ଏକ ପବିତ୍ର ସ୍ଥାନ । ସେଇଠି ମିଳି ମୁନିମାନେ ପୁରାଣଚର୍ଚ୍ଚା କରିବାକୁ ସ୍ଥିର କଲେ ।

ଜଣେ ମୁନି ସୂତ ପୌରାଣିକ ହିସାବରେ ଜଣାଥିଲେ । ପୌରାଣିକ ମୁନିଙ୍କୁ ସମସ୍ତେ ପଚାରିଲେ ଯମମାର୍ଗ ବିବରଣ କହିବା ପାଇଁ; ଇହପର ଦୁଇଲୋକରୁ ଉଦ୍ଧାର ପାଇବା ପାଇଁ କି ଉପାୟ ମଣିଷର ଦରକାର, ଏହାର ଗୂଢ଼ତତ୍ତ୍ୱ ଜଣାଇବା ପାଇଁ । ଋଷି କହିଥିଲେ, ଯମମାର୍ଗ ବଡ଼ ଭୟଙ୍କର । ଶ୍ରୀହରି ବାହନ ବିନତା-ନନ୍ଦନ, ଗରୁଡ଼ ମହାତ୍ମାଙ୍କୁ ଏ ବିଷୟରେ ପଚାରିଥିଲେ । ନିଜେ ପ୍ରଭୁ ଜଗନ୍ନାଥ ଯେଉଁ ଉତ୍ତରସବୁ ଦେଇଥିଲେ ସେହି ଅମୃତମୟବାଣୀ 'ଗରୁଡ଼ପୁରାଣ' ରେ ଲିପିବଦ୍ଧ ହୋଇଅଛି । ପ୍ରଥମୋଧ୍ୟାୟରେ ଏହି ନାମକରଣରେ ଯଥାର୍ଥତା ରହିଅଛି । ଭଗବାନ ଭକ୍ତର ଇଚ୍ଛା ପୂରଣ କରିଛନ୍ତି । ଜନସମାଜର ମଙ୍ଗଳ ପାଇଁ ଏହି ପୁରାଣ ଉଦ୍ଦିଷ୍ଟ ।

**ବିଷୟବସ୍ତୁ ଓ ସାମାଜିକ ମୂଲ୍ୟବୋଧ—**

ଏହି ପୁରାଣରେ ପ୍ରଥମ ଅଧ୍ୟାୟରୁ ଷୋଡ଼ଶ ଅଧ୍ୟାୟ ପର୍ଯ୍ୟନ୍ତ ନିମ୍ନଲିଖିତ ବିଷୟ ଗୁଡ଼ିକ କ୍ରମାନ୍ୱୟରେ ରହିଅଛି । ପୂର୍ବକଥା ବର୍ଣ୍ଣନ, ଇହଲୋକ ଓ ଯମମାର୍ଗର ବିଷୟ, ଯମଯାତନା ନିରୂପଣ, ପାପଚିହ୍ନ ନିରୂପଣ, ପାପ ଜନ୍ମାଦି ଦୁଃଖ ନିରୂପଣ, ବଭ୍ରୁବାହନ ପ୍ରେତସମ୍ବାଦ, ଧେନୁବାଦ ଗତମୁକ୍ତ ନିରୂପଣ, ପାପପୁଣ୍ୟାଦି କଥନ, ଦାହ ଓ ପ୍ରେତତ୍ୱ ବିମୁକ୍ତ ଦାନବିଧି, ପ୍ରେତକର୍ମ ବିଧିକଥନ, ଏକାଦଶ ବିଧି କଥନ, ଜୀବାତ୍ମା ମୋକ୍ଷଧର୍ମ କଥନ । ସପ୍ତଦଶ ଅଧ୍ୟାୟରେ ଭଗବତ ଗରୁଡ଼ ସମ୍ବାଦ, ଅଷ୍ଟାଦଶରେ ଫଳଶ୍ରୁତି କଥନ ଓ ଊନବିଂଶ ଅଧ୍ୟାୟରେ ସ୍ତବରେ ସମାପ୍ତି ହୋଇଅଛି । ପ୍ରତ୍ୟେକ ଅଧ୍ୟାୟ ଶେଷରେ କବି ତାଙ୍କର ବିନୟ ଭାବ ପ୍ରକାଶ କରି ଭଗବାନଙ୍କର ଆଶୀର୍ବାଦ ଭିକ୍ଷା କରିଛନ୍ତି । ଯମମାର୍ଗ ବିଷୟ ଗରୁଡ଼ ଭଗବାନ ବିଷ୍ଣୁଙ୍କୁ ପ୍ରଶ୍ନ କରିଛନ୍ତି । ପାପ କାହାକୁ କହନ୍ତି ? ମଣିଷ କାହିଁକି ମୃତ୍ୟୁପରେ ନର୍କ ଭୋଗକରେ ଏବଂ କ'ଣ କଲେ ଯମଯାତନାରୁ ତ୍ରାହି ମିଳିବ । ଶ୍ରୀହରି-ବିଷ୍ଣୁ ଯେତେବେଳେ ଯେଉଁ ଉତ୍ତର ଦେଇଛନ୍ତି, ସାମାଜିକ ଧର୍ମରକ୍ଷା ଉଦ୍ଦେଶ୍ୟରେ ଓ ମଣିଷକୁ ପାପରୁ ମୁକ୍ତି କରିବା ପାଇଁ । ସେ କହିଛନ୍ତି—ନିଜକର୍ମ ପାଇଁ, ନର ନର୍କଭୋଗ କରେ । ଅକର୍ମ କରିଲେ ପାପ ହୁଏ । ଦୟାଧର୍ମ ଓ ନିଜଧର୍ମ ଯେ ତ୍ୟାଗ କରେ—ଧନ ଗୃହ ଧନ ଅର୍ଜ୍ଜନରେ ବାସ୍ତ ରହି ଯେ ଦାନ ଧର୍ମ

ନ କରେ—ବାର୍ଦ୍ଧକ୍ୟ ବୟସରେ ଜର୍ଜରିତ ହୋଇ ସେ ଜୀବନର ସାର ତତ୍ତ୍ୱ ଭୁଲିଯାଏ । ଅର୍ଥ—ଅନର୍ଥ । ଶେଷ ଅନ୍ତିମ କାଳରେ ଧର୍ମକୁ ମହାଜ୍ଞାନ ଯେ କରେ, ଯେ ଦୂଷ୍କର୍ମ କରେନାହିଁ, ଯେଉଁମାନେ ପରଧନ, ପର ଦାରାରେ ଆସକ୍ତ ରହନ୍ତି, ଏଭଳି ଲୋକମାନଙ୍କୁ ଯମପୁରରେ ଯାତନା ମିଳେ । ମନୁଷ୍ୟ ଜନ୍ମ ପୃଥିବୀରେ ଦୁର୍ଲଭ । ମଣିଷକୁ ଭଗବାନ ବୁଦ୍ଧି ବିବେକ ଦେଇଛନ୍ତି । ତାକୁ ସେ କାମରେ ନ ଲଗାଇ ଅବାଟରେ ଗଲେ କଷ୍ଟପାଏ ।

"ଧର୍ମ ନ୍ୟାୟ ବିଚାରରେ ଜୀବ ଫଳ ପାଇ
ନିଜ ଅର୍ଜିଲା କର୍ମ ସେ ନିଜେ ଭୁଞ୍ଜଇ ।" (ଗ. ପୁ)

କର୍ମଫଳ ସେ ଭୋଗକରେ ଯମପୁରରେ । ନାନା କଷ୍ଟ ସହେ । ଯେ ଜୀବନକାଳରେ ପ୍ରଚୁର ଧନ ଅର୍ଜନ କରେ ସ୍ତ୍ରୀ ସନ୍ତାନ ଓ ଜ୍ଞାତି କୁଟୁମ୍ବଙ୍କୁ ମୋର ଭାବେ, ଶେଷରେ କେହି ତା ସାଙ୍ଗରେ ଯାଆନ୍ତି ନାହିଁ । କେବଳ ଧର୍ମ ପୁଣ୍ୟ ନେଇ ସେ ଏକା ଯାଏ ଏ ସଂସାରରୁ; ମଲା ପରେ ପାପୀ ପିଣ୍ଡଭୋଗ ମଧ୍ୟ କରିପାରେନା । ପ୍ରେତ ପ୍ରାଣରେ ଶାନ୍ତି ନ ଥାଏ ଯେ ପର୍ଯ୍ୟନ୍ତ ସେ ମୋକ୍ଷ ନହୋଇଛି । ଯଦି କେହି ପିତୃଋଣ ପରିଶୋଧ ନକରି ବା ହେଲାରେ କେହି ପୁତ୍ର ପିଣ୍ଡ ନଦେଲେ ଅକ୍ଷମ ହୁଏ, ଅଶେଷ ଦୁଃଖ ଯନ୍ତ୍ରଣା ପାଇଲା ପରେ ପ୍ରେତ ନର ଦେହ ଧରି ପୁଣି ଜନ୍ମନିଏ । ଦିବ୍ୟଜ୍ଞାନ ଶୁଦ୍ଧବୁଦ୍ଧି ହେଲେ ଯାଇ ସବୁ ପାପ କ୍ଷୟ ହୁଏ । ପିଣ୍ଡଦାନର ପ୍ରଥା ମଧ୍ୟ କିଭଳି ହେବା ଦରକାର—ଷୋଡ଼ଶଭୋଗ ପିଣ୍ଡ ଇତ୍ୟାଦି ବିଷୟରେ ମଧ୍ୟ ବର୍ଣ୍ଣିତ ହୋଇଅଛି ।

ମୃତ୍ୟୁ ପରେ ଯମପୁରକୁ ବୈତରଣୀ ପାର ହୋଇ ଯିବାକୁ ହୁଏ । ସେହିପୁରରେ ପାପୀଙ୍କୁ ମନଇଚ୍ଛା ଦଣ୍ଡ ଦିଆଯାଏ । ବିକଳରେ ପାପାତ୍ମାମାନେ ସେଠାରେ କାନ୍ଦୁଥାନ୍ତି । ମର୍ତ୍ତ୍ୟମଣ୍ଡଳରେ ମନୁଷ୍ୟ ଦେହ ଧରି ଜନ୍ମ ହେଲେ ପ୍ରାଣୀ ଜାଣେ ନା ଜାଣେ ପାପକୁ ଆଚରଣ କରେ । ତଥାପି ଯମମାର୍ଗ ଓ ଯମଯାତନା କଥାଭାବି ପାପପୁଣ୍ୟକୁ ତଉଲି ଚଳିବା ଉଚିତ ।

ଗରୁଡ଼ ଭଗବାନଙ୍କୁ ନାନା ଗୂଢ଼ତତ୍ତ୍ୱ ପଚାରି ତାହାର ଉତ୍ତର ଲୋକମାନଙ୍କ ପାଖରେ ପ୍ରଚାର କଲେ । ଏ ତତ୍ତ୍ୱ ମର୍ତ୍ତ୍ୟରେ ପ୍ରଚାର ହେଲେ ଜୀବମାନଙ୍କର ପାପ ହ୍ରାସ ହେବ ।

ବ୍ରହ୍ମା, କୁଳବଧୂ ଶାନ୍ତା ରମଣୀ କୁଳର ବିଚଳିତ ଚିତ୍ତ ଦେଖି ସମ୍ରାଜ୍ଞୀ ପତ୍ରିକାର ଚନ୍ଦ୍ରଗୁପ୍ତଙ୍କୁ ଜଣାନ୍ତି । ସମାଜରେ ନାରୀର ପ୍ରଭାବ ଓ ମଙ୍ଗଳ ସାଧନ, ତାତ୍ପର୍ଯ୍ୟ ତୁଷ୍ଟି ।

"ମାତା ଆଦ୍ୟାଶକ୍ତି ସାରା ବିଶ୍ୱର ଜନନୀ,
ଭୁଲିଲେ ନିଜର ଶକ୍ତି କି ଅ'ନ୍ୟା ଘଟିଲେଣି ।" ( ଗ. ପୂ. )

ସଂସାରର ହିତ ଅର୍ଥେ ମାଆମାନେ ଶିଶୁକୁ ବାଲ୍ୟକାଳରୁ ପ୍ରଭାବ ପକାନ୍ତି । ଧର୍ମଦୁଆରେ ସାନ ବଡ଼ କେହି ନାହିଁ । ସତ୍ୟଯୁଗରେ କେହି ପାପ କଲେ ତାକୁ ଦେଶ ଲୋକେ ବାଣ୍ଟି ଭୋଗୁଥିଲେ । ଦ୍ୱାପରରେ ଜଣେ ପାପକଲେ ଏକୋଇ କୁଟୁମ୍ବର ସମସ୍ତଙ୍କ ମୁଣ୍ଡରେ ସେହି ପାପ ବଣ୍ଟା ହୁଏ । ତ୍ରେତା ଯୁଗରେ ଗ୍ରାମଲୋକେ ବାଣ୍ଟି ଭୋଗୁଥିଲେ । ମାତ୍ର କଳିଯୁଗରେ ଯେଝା ପାପ ସେଝା ମୁଣ୍ଡରେ ଲଦା ହୁଏ । ତାହାପାଇଁ କେହି ପାପ ବନ୍ଦନ କରନ୍ତି ନାହିଁ । ଜାଣିଶୁଣି ଯେ ବ୍ରହ୍ମହତ୍ୟା, ସୁରାପାନ, ଗୋ-ବଧ, ନାରୀହତ୍ୟା କରି ଲୁଚୁଏ, ବାଳକର ପୁଞ୍ଜି ବା ଧନ, ବ୍ରାହ୍ମଣ ଧନ ଯେ ହରଣ କରେ, କୁଳସ୍ତ୍ରୀ ଯେ ହରଣ କରେ, ଖାଇବା ଦ୍ରବ୍ୟରେ ଯେ ବିଷ ମିଶାଏ, ଜ୍ଞାନୀ ସୁପୁରୁଷଙ୍କୁ ଆଦର କରେନାହିଁ, ନିଜକୁ ମୁଁ ବଡ଼ ବୋଲି ମନେକରେ, କଟୁଭାଷା କହେ, ଅସାଧୁ ସଙ୍ଗେ ମିଶେ, ଗୁରୁଜନଙ୍କୁ ହତାଦର କରେ, ଛୋଟା, ଅନ୍ଧକୁ ଦେଖି ଦୁଃଖ ନକରେ, ଗୁରୁ ପିତା, ମାତାଙ୍କ ବାକ୍ୟ ଯେ ଲଙ୍ଘନ କରେ, ଚୌର୍ଯ୍ୟବୃତ୍ତି କରି ଯେ ଧନ ଅର୍ଜ୍ଜନ କରେ, ମିଥ୍ୟା ସାକ୍ଷ୍ୟ ଦିଏ, ବିଧବା ବିପନ୍ନା ନାରୀ ଯେ ରମଣ କରେ, ଯେଉଁ ନାରୀ ପତିକୁ କୁବଚନ କହେ ଓ ପରପୁରୁଷ ସଙ୍ଗେ ରମଣ କରେ, ମିଥ୍ୟା ଆଚରଣ କରେ, ଦେବ କାର୍ଯ୍ୟରେ ଯେ ଅବହେଳା କରେ, ବ୍ରାହ୍ମଣକୁ ଯେ ନିରାଶ କରେ, ଯେ ପ୍ରାଣୀମାନଙ୍କୁ ନୃଶଂସ ବ୍ୟବହାର କରେ, ଭୟ ଦେଖାଇ ଲୋକଙ୍କୁ କଷ୍ଟଦିଏ ସେଭଳି ଲୋକଙ୍କୁ ଯମ ଅନେକ କଷ୍ଟ ଦିଏ । ପାପ ଚିହ୍ନ ମଧ୍ୟ ବହି ଆଉ ଆଉ ତାର ଶରୀରରେ ଦେଖାଯାଏ । ଅନେକ ଦୁଃସାଧ୍ୟ ରୋଗ ଶରୀରରେ ଦେଖାଯାଏ । ପୂର୍ବଜନ୍ମ କୃତ୍ୟ କର୍ମରୁ ଜନ୍ମାନ୍ଧ ମଧ୍ୟ ହୁଅନ୍ତି ।

"ଜନ୍ମ ମୂଳେ ଭାଗ୍ୟ ଦୋଷେ ବୁଦ୍ଧି ଗଲେ ହୁଡ଼ି,
ମାଡ଼ିଆସେ ଘନ ଘୋର ପାପର କୁହୁଡ଼ି ।"

ଅନ୍ୟ ମଧ୍ୟ ଏହି ପୁରାଣରେ କୁହାଯାଇଛି-

"ଯେସନେ ପୋତିବ ବୀଜ ଯେ ଯେଉଁ ଭୂମିରେ
ତେସନ ଭୋଗିବ ଫଳ କର୍ମ ଅନୁସାରେ ।"

ଏହି ସଂସାରରେ ମଣିଷ ଯେଉଁଭଳି କର୍ମ ଅର୍ଥାତ୍ ଭଲ ଓ ମନ୍ଦ କରିବ ସେଉଁଭଳି ଫଳ ପାଇବ । ଏହା ସତର୍କ କରାଇ ଦେବା ପାଇଁ ଯମ ଭୟ ରଖାଯାଇଅଛି । କି ଉପାୟରେ ଜୀବ ଉଦ୍ଧାର ପାଇବ ତାହା ମଧ୍ୟ ପୁରାଣରେ ପ୍ରକାଶିତ ହୋଇଛି :—

"କର୍ମେ ରହି ଲିପ୍ତ ସଦା ସିଦ୍ଧ କର୍ମ ସାଂକୁ
ଧର୍ମ ଅର୍ଥ କାମ ମୋକ୍ଷ ମିଳିଥାଏ କାର୍ଯ୍ୟେ ।
ସ୍ଥିର କରି ମନ, ମନ ଇନ୍ଦ୍ରିୟର ରାଜା
ସେ ଥିଲେ ସଂଯତ କେଉଁ ଯମ ଦେବ ସଜା ?"

ପୁଣି କୁହାଯାଇଛି—

"ସଯତ କରମେ ନର ମୁକ୍ତି ଆଶା କରେ,
ମୁକ୍ତି ପଥ ଆଶ୍ରା କରି ସଂସାରୁ ଉଦ୍ଧରେ ।"

"ଶୁଣନ୍ତି ପୁରାଣ ଜନେ ହୋଇଣ ବ୍ୟାକୁଳ
ଶୁଣିଲେ ପୁରାଣ ମିଳେ ସଦ୍‌ବୁଦ୍ଧି ଫଳ ।"

ପାପୀ ହେଲେ ମଧ୍ୟ ଶୁଦ୍ଧ ଆଚରଣ କଲେ, ଦାନ ଧର୍ମ ଶ୍ରାଦ୍ଧ କରି ଶୁଦ୍ଧମନ ହେଲେ, ଦେବ ଆରାଧନା ଏବଂ ପୁରାଣ ଶୁଣିଲେ ସକଳ ପାପ ମୋଚନ ହୁଏ । ଶ୍ରୀ ବିଷ୍ଣୁଙ୍କ ପୂଜାରେ ପାପ ନାଶ ହୁଏ । ଗରୁଡ଼ ପୁରାଣରେ ଲେଖାଅଛି :—

"ନିତାନ୍ତ ଆସକ୍ତ ମନ ଇନ୍ଦ୍ରିୟ ହୋଇଲେ,
ପାପ ଦୂର କର ହରି ନାମ କୀର୍ତ୍ତନରେ ।"

ସୁଗମ ସରଳ ପନ୍ଥା ନାମ ଜପ । କୃଷ୍ଣ ବିଷ୍ଣୁ ହରି ରାମ ଇତ୍ୟାଦି ନାମ ସନ୍ତାନମାନଙ୍କର ଦେବାଦ୍ୱାରା ଈଶ୍ୱରଙ୍କୁ ମନେ ପକାଯାଏ ।

ପାପ ଦୂର ପାଇଁ ମଣ୍ଡଳପୂଜା, ଶାଳଗ୍ରାମ ପୂଜା, ଗଙ୍ଗାଜଳରେ ସ୍ନାନ, ବିଷ୍ଣୁଙ୍କ ସହସ୍ର ନାମ ଜପ ଇତ୍ୟାଦି କରିବା ଆବଶ୍ୟକ । ସମାଜରେ ଉତ୍ତମ ମଣିଷ ହେବାକୁ ହେଲେ—

"ମାନବ ହୋଇ ଗର୍ବ କେବେହେଁ ନ କରିବ,
ଗରବ କଲେ ଧରମ ନଷ୍ଟେ ନାଶ ଯିବ ।
ପଞ୍ଚଭୂତେ ଗଢ଼ା ଏହି ନଶ୍ୱର ଶରୀର
ପଞ୍ଚଭୂତେ ମିଶି ପୁଣି ହୁଏ ଏକାକାର ।"

ଭାଗବତର ନୀତିବାଣୀ ଭଳି ଏଗୁଡ଼ିକ ଜୀବନ-ଦର୍ଶନ ଓ ଧର୍ମଶିକ୍ଷା ପ୍ରକାଶ କରୁଛନ୍ତି । ଶାସ୍ତ୍ର ପୁରାଣରେ ସଦା ମନ ଦିଏ ଧାର୍ମିକ ବ୍ୟକ୍ତି । ପରହିଂସା ପରବାଦରେ ସମୟ ବିତାଇବା ଉଚିତ ନୁହେଁ । ମଣିଷର ମନ ପ୍ରଶାନ୍ତ ଉଦାର ଆକାଶ ପରି ହେବା ଦରକାର, ଜଳଧି ପରି ଗମ୍ଭୀର ଏବଂ କୋମଳ ହୃଦୟ ହେବା ଦରକାର । ସଂସାରରେ ଥାଇ ମଧ୍ୟ ସେ ସନ୍ନ୍ୟାସୀ ହୋଇପାରେ ।

"ଯଥା ପଙ୍କେ ଶଙ୍ଖର ତା ନୁହଇ ପଙ୍କିଲ
ବିଷ୍ଣୁ ଭକ୍ତ ନିର୍ମଳାରେ ମନ ଓ ଶରୀର ।" (ଗୀ:ପୁ)

ଏହି ସଂସାର ହେଉଛି ଯୋଗ ସାଧନାର ସ୍ଥାନ । ମନ ବିଚଳିତ ହେଲେ ସୁଫଳ ମିଳେ ନାହିଁ ।"

"ଗୃହସ୍ଥର ଗୃହକର୍ମ ଯୋଗଠାରୁ ବଳେ
ସଂସାର ଧର୍ମରୁ ଯୋଗ ନାହିଁ ଏ ଶାସ୍ତ୍ରରେ ।"

ଯୋଗସାଧନାରେ ଇନ୍ଦ୍ରିୟ ସ୍ଥିର ରୁହେ । କୁଣ୍ଡଳିନୀ ଶକ୍ତି ଦ୍ୱାରା ବିରାଟ ପୁରୁଷ ମିଳନ୍ତି । ଅହଂଭାବ ବିନାଶ କରି ସନ୍ଧ୍ୟା, ଜପ, ତପ, ଆଚାର, ନିର୍ମଳ ଶୁଦ୍ଧ ମନ, ଶୁଦ୍ଧ ଦେହ, ହୋଇ ଶ୍ରୀହରିଙ୍କୁ ପୂଜା କଲେ ସେ ପ୍ରସନ୍ନ ହୁଅନ୍ତି ।

"ଯୋଗ ସଙ୍ଗେ ଭକ୍ତି ସଦା ପାଶ୍ୱେ ପାଶ୍ୱେ ଥାଏ
ଯୋଗ ଭକ୍ତି ଦୁଇ ପଥେ ଜୀବ ମୁକ୍ତି ପାଏ ।" (ଗା:ଚୁ)

ଶାସ୍ତ୍ର ପୁରାଣର ତତ୍ତ୍ୱ ଦ୍ୱାରା ଜ୍ଞାନଚକ୍ଷୁ ଖୋଲିଯାଏ । କର୍ମବଳେ ପରମାର୍ଥ ଜ୍ଞାନ ଲାଭ ହୁଏ । ନିବୃତ୍ତି ଓ ପ୍ରବୃତ୍ତି ଦୁଇମାର୍ଗ । ନିବୃତ୍ତି ଯଦି ବୃଦ୍ଧି ହୁଏ ଓ ମୁକ୍ତି ମାର୍ଗ ଦେଖାଏ । ପ୍ରବୃତ୍ତିରେ ଦେହୀ ନିଜେ ନର୍କରେ ପଡେ ।

"ଅନିତ୍ୟ ସଂସାରେ କିଛି ନଅଟଇ ସତ୍ୟ
× × ×
ନସିବେ କେହି ସଙ୍ଗରେ ଜୀବ ଗଲାବେଳେ × ×

ଇତ୍ୟାଦି ଭାଗବତର ନୀତି ଭଲ ସ୍ଥାନ ପାଇଛି ଏହି ପୁରାଣରେ ।

"ଧର୍ମତତ୍ତ୍ୱ ଜ୍ଞାନ ଲଭେ ବ୍ରହ୍ମ ଲାଭ ହୁଏ
ଏ କଥା ନିର୍ଣ୍ଣୀତ ହୁଏ ଶାସ୍ତ୍ରରେ ନିଷ୍ଟୟେ ।'

ବେଦଶାସ୍ତ୍ର ମୂଳନୀତି ଯେ ଭୁଲେ ନର୍କରେ ପଡ଼େ । ବିଦ୍ୟାଧନ ଏ ସଂସାରରେ ଅମୂଲ୍ୟ ଅଟେ । ସାଧନା ବଳରେ ସିଦ୍ଧ ହୁଏ ମନ । ଧନ ଅପେକ୍ଷା ବିଦ୍ୟାଧନ ବଡ ଧର୍ମ ବିଶ୍ୱାସ ମୁକ୍ତି ଲାଭର ମୂଳ ପନ୍ଥା । ଦେହ ଓ ମନ ଏହି ବିଶ୍ୱାସ ବଳରେ ବଳୀୟାନ ହୋଇ ଅନନ୍ତ ଭବସିନ୍ଧୁ ପାର ହୁଅନ୍ତି । ଯୋଗାଭ୍ୟାସ ଦ୍ୱାରା ମଣିଷ ନିରୋଗ ହୁଏ । ଯେଉଁ ନର ସପ୍ତତୀର୍ଥ ଯଥା-- କାଶୀ, କାଞ୍ଚି, ଦ୍ୱାରିକା, ଅବନ୍ତୀ, ପ୍ରୟାଗ, ପୁରୀ ଓ ମଥୁରାରେ ପ୍ରାଣ ତ୍ୟାଗ କରେ ସେ ପୁଣ୍ୟବାନ ହୁଏ । ଯମ ଯାତନାରୁ ରକ୍ଷା ମିଳେ ଯଦି ମଣିଷ ସାଧନାରେ ସିଦ୍ଧି ଅର୍ଜ୍ଜନ କରିଥାଏ । ପାପ, ଅଧର୍ମ ଯଦି ଅଧିକ ହୁଏ ମର୍ତ୍ତ୍ୟରେ ଭଗବାନ ଅବତାର ଗ୍ରହଣ କରନ୍ତି । ଧର୍ମ ସଂସ୍ଥାପନ ପାଇଁ ଏ ସଂସାରରେ ପ୍ରଭୁ ଜନ୍ମ ଗ୍ରହଣ କରନ୍ତି ।

ସ୍ତବରେ କବି ବିଷ୍ଣୁଙ୍କର ଅଜସ୍ର ନାମ—ନୀଳାଚଳ ନାଥ, ରାଧାରମଣ, ମାୟାମୟ, ଲୋକନାଥ, ପୁରୁଷୋତ୍ତମ, କୃଷ୍ଣଚନ୍ଦ୍ର, ହୃଷିକେଶ ଇତ୍ୟାଦିର ଗୁଣ କୀର୍ତ୍ତନ କରିଛନ୍ତି । କବି ନିଜେ ଭକ୍ତର ସ୍ଥାନରେ ରହିଛନ୍ତି । ଧର୍ମ ପ୍ରଚାରିବା ପାଇଁ ଏ ଗରୁଡ଼ ପୁରାଣ ଲେଖୁଛି ବୋଲି କବି କହିଛନ୍ତି ।

**ସାହିତ୍ୟିକ ମୂଲ୍ୟବୋଧ—**

ସଂସ୍କୃତରୁ ଏହା ଓଡ଼ିଆରେ ଶୁଦ୍ଧ ସରଳ ଭାଷାରେ ପଦ୍ୟାନୁବାଦ ହୋଇଅଛି । ଉତ୍କଳୀୟ ସ୍ୱଭାବ, ସାମାଜିକ ରୀତିନୀତି, ମୃତବ୍ୟକ୍ତିର କ୍ରିୟା ଓ ଯମଦଣ୍ଡ ଇତ୍ୟାଦିର ବିଶ୍ଳେଷଣ ଆମ ଓଡ଼ିଆ ଧର୍ମ ବିଶ୍ୱାସ ଉପରେ ପ୍ରତିଷ୍ଠିତ । ପ୍ରଥମରୁ ଜଗନ୍ନାଥଙ୍କୁ ବିଷ୍ଣୁଙ୍କ ସ୍ଥାନରେ ନାମିତ କରାଯାଇଅଛି । ବିଷ୍ଣୁଙ୍କର ସହସ୍ର ନାମ ଗୁଣାବଳୀ । ଗରୁଡଙ୍କର ଭକ୍ତି ଭାବ ଅତି ସୁନ୍ଦର ଓ ହୃଦୟସ୍ପର୍ଶୀ ଭାବେ ବର୍ଣ୍ଣିତ ହୋଇଅଛି । ଭାଷା ଅବୋଧ୍ୟ ନୁହେଁ । ମୂର୍ଖ ଜନ ଠାରୁ ଜ୍ଞାନୀ ପଣ୍ଡିତ ପର୍ଯ୍ୟନ୍ତ ଆନନ୍ଦରେ ପଢ଼ି ଶୁଣି ବୁଝି ପାରିବେ ଓ ହୃଦୟଙ୍ଗମ କରି ପାରିବେ । ଅବଶ୍ୟ କେତେକ ସ୍ଥାନରେ ଯମ ଦଣ୍ଡ ଓ ପାପ ପୁଣ୍ୟର ବିଚାରରେ ଅତିରଞ୍ଜିତ କରାଯାଇଅଛି । ନୀତିଶିକ୍ଷା ଗୁଡ଼ିକ ଭାଗବତ ବାଣୀ ଭଳି ହୃଦୟଗ୍ରାହୀ ହୋଇଛି । ଉଦାହରଣ ମଧ୍ୟ ରହିଛି । ଧର୍ମ-ରକ୍ଷା କପଟ, ମନ ନିର୍ମଳ ଓ ଶୁଦ୍ଧ ଥିଲେ ସମ୍ଭବ ହୋଇପାରେ ଇତ୍ୟାଦି । ପୁରାଣ ଦୃଷ୍ଟିରୁ ପ୍ରତ୍ୟେକ ଅଧ୍ୟାୟର ସାହିତ୍ୟିକ ମୂଲ୍ୟ ରହିଛି ।

**ଆଧୁନିକ ସମାଜରେ ଧର୍ମର ଆବଶ୍ୟକତା**—ହିନ୍ଦୁ ଧର୍ମର ପାପ ପୁଣ୍ୟର ବିଚାର, ସାମାଜିକ କ୍ରିୟା, ନୀତିବାନ ଜୀବନ ଯାପନ ପାଇଁ ଏବେ ମଧ୍ୟ ଧର୍ମର ଆବଶ୍ୟକତା ରହିଛି । ଯଦିଓ ଆଜିକାଲି ଅନେକ ସଭ୍ୟ ଶିକ୍ଷିତ ବୋଲାଉଥିବା ବ୍ୟକ୍ତି ଗରୁଡ଼ ପୁରାଣରେ ଥିବା ଯମ ତତ୍ତ୍ୱ, ପିଣ୍ଡଦାନ ଓ ଅନ୍ୟାନ୍ୟ ସାମାଜିକ ନୀତିକୁ ବିଶ୍ୱାସ କରିବାକୁ କୁଣ୍ଠାବୋଧ କରନ୍ତି । ମୂଳତଃ ଏହା ସୂଚାଇ ଦିଏ ଯେ ସଂଯମ ବିହୀନ ମାନବ ଜୀବନ ଲଗାମଛଡ଼ା ଘୋଡ଼ା ଭଳି କେତେବେଳେ କ'ଣ କରି ବସିବା ସ୍ୱାଭାବିକ, ଯାହାର ପରିଣାମ ଭୟଙ୍କର । କ୍ଷଣସ୍ଥାୟୀ ଭୌତିକ ସଭ୍ୟତାର ମୋହ ନିଦ୍ରା ଦିନେ ଭାଙ୍ଗିଯିବ । ଆମର ନୈତିକ ମାନଦଣ୍ଡକୁ ପୁଣି ସଳଖିବାପାଇଁ ଘରେ ଘରେ ପୁରାଣର ଆଦର ହେବ । କେବଳ ବୌଦ୍ଧିକ ବା ତାର୍କିକ ଆଲୋଚନାରେ ଏହା ସୀମାବଦ୍ଧ ରହିବ ନାହିଁ । ତେବେ ଯାଇ ଗରୁଡ଼ ପୁରାଣର ମାହାତ୍ମ୍ୟ ଉପଲବ୍ଧ ହେବ ।



# ନୃସିହ୍ମପୁରାଣରେ ଉତ୍କଳୀୟ ଧର୍ମ ଓ ସଂସ୍କୃତି

ସ୍ମିତା ଦାସ ଏମ୍. ଏ.

ପୁରାଣ ପରଂପରାର ଅନ୍ୟତମ ଦାୟାଦଭାବେ ପୀତାମ୍ବର ଦାସଙ୍କ 'ନୃସିଂହ ପୁରାଣ ଓଡ଼ିଆ ପୁରାଣ ସାହିତ୍ୟରେ ଏକ ସ୍ୱତନ୍ତ୍ର ପ୍ରତିଷ୍ଠା ଦାବୀ କରେ । ଏହା ଏକ ସ୍ୱତନ୍ତ୍ର ମୌଳିକ କୃତି । ସଂସ୍କୃତ ସାହିତ୍ୟରେ 'ନୃସିଂହ ପୁରାଣ' ଏକ ଉପ ପୁରାଣ । କିନ୍ତୁ ଏ ପ୍ରକାର କୌଣସି ଗ୍ରନ୍ଥରୁ 'ନୃସିଂହ ପୁରାଣ' ଅନୂଦିତ ହୋଇ ନାହିଁ । ମୌଳିକ ରଚନା ଭାବେ ପୀତାମ୍ବର ଦାସଙ୍କୁ ଏହା ମହା-ପୁରାଣକାର ଭାବେ ସମ୍ମାନ ତଥା ସ୍ୱୀକୃତି ପ୍ରଦାନ କରିଛି ।

ଅଷ୍ଟାଦଶ ଶତକର ଶେଷାର୍ଦ୍ଧ ପର୍ଯ୍ୟନ୍ତ ବିଭିନ୍ନ ଧର୍ମମତ ଓ ତତ୍ତ୍ୱର ପ୍ରଚାର ଦ୍ୱାରା ଯେଉଁ ଧାର୍ମିକ ଚେତନା ତତ୍କାଳୀନ ସମାଜରେ ପ୍ରବାହିତ ହେଉଥିଲା, 'ନୃସିଂହ ପୁରାଣ'ରେ କବି ପୀତାମ୍ବର ତାକୁ ରୂପ ଦେଇଛନ୍ତି । ପ୍ରତ୍ୟେକ ଯୁଗରେ ଉତ୍କଳ ଚିନ୍ତାଶୀଳ ଧର୍ମାଚାର୍ଯ୍ୟଙ୍କ ବିହାରଭୂମି ଭାବେ ପରିଗଣିତ ହୋଇ ଆସିଛି । ବିଭିନ୍ନ ଯୁଗରେ ଏ ଭୂମିରେ ବିଭିନ୍ନ ବାଦର ପ୍ରତିଷ୍ଠା ହୋଇଛି । ଏହା ସତ୍ତ୍ୱେ ଓଡ଼ିଆ ପରଂପରାର ସମନ୍ୱୟ ଦୃଷ୍ଟିକୋଣ ଓଡ଼ିଆ ପୁରାଣର ଏକ ବିଶିଷ୍ଟ ଦିଗ । ନିରପେକ୍ଷ ଦୃଷ୍ଟିକୋଣରୁ ବିଭିନ୍ନ ସଂପ୍ରଦାୟ ଓ ବିଭିନ୍ନ ଧର୍ମାଦର୍ଶକୁ ସମ୍ମାନ ପ୍ରଦର୍ଶନ ପୂର୍ବକ ସେ ସବୁକୁ ପୁରାଣରେ ସ୍ଥାନ ଦେବା ଓଡ଼ିଆ ପୁରାଣର ବିଶିଷ୍ଟତା । ଆଦିକବି ସାରଳା ଦାସଙ୍କ

କୃତ ଗୁଡ଼ିକ ଏହାର ନିଦର୍ଶନ । ପୁଣି ପରବର୍ତ୍ତୀକାଳରେ ପୁରାଣରେ ଉଦ୍ଦେଶ୍ୟ ମୁଖ୍ୟତଃ ନୀତିଶିକ୍ଷା ଏବଂ କେତେକାଂଶରେ ଧର୍ମତତ୍ତ୍ୱ ବ୍ୟାଖ୍ୟା ଉପରେ ପ୍ରତିଷ୍ଠିତ ହେବା ଫଳରେ ପୁରାଣକାରମାନେ ଏ ସବୁର ପ୍ରଚାରପାଇଁ ମନୋରଞ୍ଜକ ଗଳ୍ପକୁ ପ୍ରଧାନ ଅବଲମ୍ବନ କରି ନୀତିଶିକ୍ଷା ପ୍ରଦାନରେ ପ୍ରୟାସୀ ହେଲେ । ପରବର୍ତ୍ତୀ କାଳରେ ଏହି ଗଳ୍ପଗୁମ୍ଫନ ଶୈଳୀ ପ୍ରତ୍ୟେକ ପୁରାଣରେ ମୁଖ୍ୟ ଉପଜୀବ୍ୟ ହୋଇଥିଲା । କିନ୍ତୁ ଏହି ଗଳ୍ପ ପରିବେଷଣରେ ଯେଉଁ ପୁରାଣକାର ଯେତେ ନୂତନତ୍ୱର ସନ୍ଧାନ ଦେଉଥିଲେ ସେ ପୁରାଣ ହେଉଥିଲା ସେତେ ବଳିଷ୍ଠ ଓ ପ୍ରଭାବଶାଳୀ । ଏ ଦୃଷ୍ଟିରୁ 'ନୃସିଂହ ପୁରାଣ'ରେ ଧାର୍ମିକ ଚେତନାର ସମନ୍ୱୟବାଦୀ ଦୃଷ୍ଟିକୋଣ ଏବଂ ସଂସ୍କୃତିର ବୈଶିଷ୍ଟ୍ୟ ଏଠାରେ ଆଲୋଚ୍ୟ ।

ଓଡ଼ିଆ ପରଂପରାରେ ଜଗନ୍ନାଥ ଉପାସ୍ୟ ଦେବତା । 'ନୃସିଂହ-ପୁରାଣ'ରେ ନୃସିଂହ ରୂପୀ ଜଗନ୍ନାଥ ମୁଖ୍ୟସ୍ଥାନ ଗ୍ରହଣ କରିଥିଲେ ହେଁ କୌଣସି ନିର୍ଦ୍ଦିଷ୍ଟ ଧର୍ମାଦର୍ଶର ପ୍ରଚାର ଉକ୍ତ ପୁରାଣର ଲକ୍ଷ୍ୟ ନୁହେଁ । ଓଡ଼ିଆ ପରଂପରାର ସମନ୍ୱୟ ଦୃଷ୍ଟିକୋଣ ଉକ୍ତ ପୁରାଣର ବିଶିଷ୍ଟ ଦିଗ । କେବଳ ଷୋଡ଼ଶ ଶତାବ୍ଦୀରେ ଚୈତନ୍ୟଙ୍କ ଆଗମନ ଓ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରଭାବ ନୁହେଁ, ପୂର୍ବବର୍ତ୍ତୀ ଯୁଗରୁ ଶୈବ, ଶାକ୍ତ ଇତ୍ୟାଦି ଯେଉଁ କେତେକ ପ୍ରତିଷ୍ଠିତ ଧର୍ମଦର୍ଶନ ସାର୍ବଜନୀନ ସ୍ୱୀକୃତି ଲଭି ଉଦ୍ଦେଶ୍ୟରେ ଏ ଦେଶରେ ପ୍ରତିଷ୍ଠା ଲଭିର ଚେଷ୍ଟା କରିଥିଲେ । ତା'ର ଫଳ ସ୍ୱରୂପ ଜଗନ୍ନାଥ ଧର୍ମଧାରଣାର ବଳିଷ୍ଠ ଭିତ୍ତି ଦୁର୍ବଳ ହୋଇ ନଥିଲା ବରଂ, ତଦାନୀନ୍ତନ ପୁରାଣକାର ଓ କବିଗଣ ବିଭିନ୍ନ ଧର୍ମାଦର୍ଶ ଦ୍ୱାରା ପ୍ରଭାବିତ ହେବା ସଙ୍ଗେ ସଙ୍ଗେ ବିଭିନ୍ନ ରଚନାରେ ନିରପେକ୍ଷ ହୃଦୟରେ ସେ ସବୁକୁ ସ୍ଥାନ ଦେଇଥିଲେ ।

ଏହା ଫଳରେ ସମାନ୍ତରାଳ ଭାବେ ସର୍ବଧର୍ମ-ସମନ୍ୱୟ ପ୍ରତ୍ୟେକ ପୁରାଣରେ ଦେଖା ଦେଇଥିଲା । ସାରଳା ମହାଭାରତ ଠାରୁ ଆରମ୍ଭ କରି ଷୋଡ଼ଶ-ସପ୍ତଦଶ ଶତକର ପୁରାଣ ଓ କାବ୍ୟ ମାନଙ୍କରେ ଏହାର ଦୃଷ୍ଟାନ୍ତ ବିରଳ ନୁହେଁ । ଉଦାହରଣ ସ୍ୱରୂପ ଷୋଡ଼ଶ-ସପ୍ତଦଶ ଶତକର ଭାଷା-

ସାହିତ୍ୟରେ ଜ୍ଞାନ ମାର୍ଗର ଆରାଧ୍ୟ ବସ୍ତୁ ଏବଂ ଭକ୍ତ ମାର୍ଗ ସାଧନାରେ କୃଷ୍ଣ ଭକ୍ତି ଧାରାର ଏକ ସୁମଧୁର ସମ୍ମିଶ୍ରଣ ଲକ୍ଷଣୀୟ । ଏହାର ପ୍ରାଧାନ୍ୟ କେବଳ ଉତ୍କଳରେ ନୁହେଁ, ସମଗ୍ର ଭାରତୀୟ ଭାଷା ସାହିତ୍ୟରେ ସ୍ୱୀକାର୍ଯ୍ୟ । ଯେ କୌଣସି ଧର୍ମର ଲକ୍ଷ୍ୟ ଏବଂ ଉଦ୍ଦେଶ୍ୟ ଏକମୁଖୀ-ତାହାହେଲେ ସମାଜରେ ମଙ୍ଗଳ ଓ ମୈତ୍ରୀ ବିତରଣ । ଏ ସବୁର ପ୍ରଚାର ପାଇଁ ପରବର୍ତ୍ତୀ ଯୁଗରେ ପୁରାଣକାର ଗଳ୍ପକୁ ପ୍ରଧାନ ଅବଲମ୍ବନ ଭାବେ ଗ୍ରହଣ କରି ନେଇଥିଲେ ।

ପୀତାମ୍ବର ଦାସ ମୁଖ୍ୟତଃ ପୁରାଣକାର ଥିଲେ । ତେଣୁ ପୁରାଣ ପରଂପରାକୁ ତ୍ୟାଗ କରିବା ତାଙ୍କ ପକ୍ଷରେ ସମ୍ଭବପର ନ ଥିଲା । ଏଥିରେ ପୁରାଣର ବିଭିନ୍ନ ଲକ୍ଷଣ ପୂର୍ବଜନ୍ମ ବୃତ୍ତାନ୍ତ, ବଂଶାନୁଚରିତ, ସୃଷ୍ଟି, ପ୍ରଳୟ ( ପ୍ରଥମ ରତ୍ନାକର ପୃ : ୫୦-୫୮-୬୪ ) ଇତ୍ୟାଦିର ବର୍ଣ୍ଣନା ଦେବା ସଙ୍ଗେ ସଙ୍ଗେ ପରବର୍ତ୍ତୀ କାଳରେ ଶିକ୍ଷା, ଦାନ, ଧର୍ମ, ନୀତି, ଜ୍ୟୋତିଷଶାସ୍ତ୍ର ପ୍ରଭୃତି ବିଶିଷ୍ଟ ବିଭବ ହୋଇଥିବା ହେତୁ ସେ ସବୁର ବର୍ଣ୍ଣନା ଦେବାପାଇଁ ମଧ୍ୟ ପୁରାଣକାର ଭୁଲି ନାହାନ୍ତି । ଏ ସବୁ ପୁରାଣ ପରମ୍ପରାର ବିଭିନ୍ନ ଦିଗ ହେଲେ ମଧ୍ୟ ପୁରାଣକାର ସ୍ୱଗ୍ରନ୍ଥରେ କିଛି ନୂତନତ୍ୱ ଦେଖେଇଥାନ୍ତି । ସେଥିରୁ ପୀତାମ୍ବର ବାଦ ଯାଇନାହାନ୍ତି । କାହାଣୀରେ ନୂତନ ବିଷୟ-ସଂଯୋଜନା ସହ ବିଭିନ୍ନ ଚରିତ୍ରରେ ମାନବିକତା ଆରୋପ ଉକ୍ତ ପୁରାଣର ଅନ୍ୟ ଏକ ବିଶିଷ୍ଟ ଦିଗ । ବିଭିନ୍ନ ଗଳ୍ପ ମାଧ୍ୟମରେ ଏସବୁ ସ୍ପଷ୍ଟ । ତୃତୀୟ ଅଧ୍ୟାୟରେ ବର୍ଣ୍ଣିତ ନୃସିଂହଙ୍କ ବାଲ୍ୟଲୀଳା ବର୍ଣ୍ଣନାକୁ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ସହ ତୁଳନା କରାଯାଇପାରେ । କଂସ କୃଷ୍ଣ ବଳରାମଙ୍କୁ ଆଣିବାପାଇଁ ଅକ୍ରୂରକୁ ପ୍ରେରଣ କରିଥିବାରେ ଏଥିରେ କୃଷ୍ଣବଲ୍ଲଭ ପୁନ୍ର ଶେଷ ନୃସିଂହଙ୍କ ନିଧନାର୍ଥେ ମୁରାସୁର ଅର୍ଣ୍ଣାଳକୁ ପ୍ରେରଣ ଇତ୍ୟାଦି ତୁଳନୀୟ । ବିଷୟବସ୍ତୁ ଆଲୋଚନା କଲେ ମନେ ହୁଏ ଉକ୍ତ ପୁରାଣ କୃଷ୍ଣ କଥାର ପ୍ରଭାବ ଅତ୍ୟନ୍ତ ଗଭୀର । ସତ୍ୟ ଯୁଗରେ ବିଷ୍ଣୁ ଶେଷ ନୃସିଂହ ଅବତାରରେ ମୁର ଦାରୁଣକୁ ବଧ; ଦ୍ୱିତୀୟ ଜନ୍ମରେ ମୁରଦାରୁଣଙ୍କ ହିରଣ୍ୟ ହିରଣାକ୍ଷ୍ୟ ରୂପେ ଜନ୍ମ ଗ୍ରହଣ ଏବଂ ବରାହାବତାରରେ ମୁରଦାରୁଣଙ୍କ ବଧ, ତୃତୀୟ ଜନ୍ମରେ ତ୍ରେତା ଯୁଗରେ ଏ ଦୁଇ ଦୈତ୍ୟଙ୍କ ରାବଣ ଓ କୁମ୍ଭକର୍ଣ୍ଣ ରୂପେ ଜନ୍ମ ଗ୍ରହଣ ଏବଂ

ରାମାବତାରରେ ରାମଙ୍କ ଦ୍ୱାରା ଦୈତ୍ୟଦ୍ୱୟଙ୍କ ନିଧନ, ଦ୍ୱାପର ଯୁଗରେ କଂସ ଏବଂ ଶିଶୁପାଳଙ୍କ ବିନାଶପାଇଁ କୃଷ୍ଣାବତାର ଧାରଣ ଉକ୍ତ ପୁରାଣର ବିଷୟବସ୍ତୁ । ତେଣୁ ବିଭିନ୍ନ ଅବତାରର ବର୍ଣ୍ଣନାସହ ସେମାନଙ୍କର ବୈଶିଷ୍ଟ୍ୟ ପ୍ରତିପାଦନ ଓ ପ୍ରାଧାନ୍ୟ ଆରୋପ ଏଥିରେ ସ୍ଥାନ ପାଇବା ଅସ୍ୱାଭାବିକ ନୁହେଁ । ବରଂ ସ୍ଥଳ ବିଶେଷରେ ଯେଉଁ ମୌଳିକତାର ପରିଚୟ କବି ଦେଇଛନ୍ତି ତାହା ତାଙ୍କ ମୌଳିକ ଦୃଷ୍ଟିକୋଣର ପରିଚୟ ପ୍ରଦାନ କରେ । ଅଚ୍ୟୁତାନନ୍ଦ 'ଶୂନ୍ୟସଂହିତା'ର ପଞ୍ଚମ ଅଧ୍ୟାୟରେ କୃଷ୍ଣ ନିରାକାର ମନ୍ତ୍ର ବଳରେ ଅଷ୍ଟପାଟ-ବଂଶୀମାନଙ୍କୁ ନିତ୍ୟରାସ ମଣ୍ଡଳରେ ରାଧାକୃଷ୍ଣଙ୍କର ରାସଲୀଳା ଦେଖାଇଥିବା ବିଷୟବସ୍ତୁ ଦେବଦୁର୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ'ର ଉପଜୀବ୍ୟ ହୋଇଥିଲା । ରାଧାକୃଷ୍ଣ ଏବଂ ଷୋହଳ-ସହସ୍ର ଗୋପାଙ୍ଗନାମାନଙ୍କର ରାସଲୀଳା ବର୍ଣ୍ଣନା ବନ୍ଧୁ କବିଙ୍କ ରଚନାକୁ ଅଳଂକୃତ କରିଥିଲା । ନୃସିଂହ ପୁରାଣରେ ନୃସିଂହ ଉପାସ୍ୟ ଦେବତା । ତେଣୁ ତାଙ୍କ ଚରିତ୍ରରେ ପ୍ରାଧାନ୍ୟସହ ନୂତନତା ଆଣିବାପାଇଁ ପୁରାଣକାର ନୃସିଂହଙ୍କ ସହ ନାୟିକାଗଣଙ୍କ ରାସଲୀଳା ବିଷୟ ଏଥିରେ ସନ୍ନିବିଷ୍ଟ କରିଛନ୍ତି । ଏଥିରେ ପ୍ରେମଭକ୍ତିର ଉତ୍କର୍ଷ ମଧ୍ୟ ସ୍ୱୀକୃତ । 'ପ୍ରେମପଞ୍ଚାମୃତ'ରେ ଗୋପାଙ୍ଗନାଙ୍କର ଉତ୍କର୍ଷତା ପରୀକ୍ଷାପାଇଁ ଶ୍ରୀକୃଷ୍ଣଙ୍କ ଅନ୍ତର୍ଦ୍ଧାନ ବିଷୟ ଏଥିରେ ଅଲଗା ଭିନ୍ନ ଭାବେ ପ୍ରକାଶ ପାଇଛି । ଶ୍ରୀକୃଷ୍ଣଙ୍କ ପରିବର୍ତ୍ତେ ନୃସିଂହ ଉକ୍ତ ପୁରାଣର ନାୟକ । ଅଷ୍ଟପାଟବଂଶୀଙ୍କୁ ପରୀକ୍ଷା କରିବା ପରିବର୍ତ୍ତେ କବି ଏଠାରେ ନାୟିକାମାନଙ୍କୁ ନୃସିଂହ ଗୃହ ଜନ୍ମରେ ଯଥାକ୍ରମେ ନୃସିଂହାବତାରରେ ଚୌଷଠି ସହସ୍ର, ରାମାବତାରରେ ବତିଶ ସହସ୍ର, କୃଷ୍ଣାବତାରରେ ଷୋଳ ସହସ୍ର ଏବଂ ଜଗନ୍ନାଥାବତାରରେ ଅଷ୍ଟ ସହସ୍ର ଭାବେ ସେବା କରିବାକୁ ଆଜ୍ଞା ପ୍ରଦାନ କରିବାରେ ନାୟିକାମାନେ ନିଜକୁ ଶ୍ରେଷ୍ଠମଣି ଗର୍ବ କରିବା ଏବଂ ନୃସିଂହ ସେମାନଙ୍କ ଦର୍ପ ହରଣ କରିବାପାଇଁ ଅନ୍ତର୍ଦ୍ଧାନ; ଫଳ ସ୍ୱରୂପ ନାୟିକାମାନଙ୍କର ଅନୁତାପ ଏବଂ ରୋଦନ ବିଷୟ ଏଥିରେ ବର୍ଣ୍ଣିତ । ( ଶବ୍ଦ ରତ୍ନାକର-ପୃ ୭୦ ) ।

ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀରେ ଚୈତନ୍ୟ—ପ୍ରବର୍ତ୍ତିତ ଗୌଡ଼ୀୟ ବୈଷ୍ଣବଧର୍ମ ପୂର୍ବ-ପ୍ରତିଷ୍ଠିତ ଜଗନ୍ନାଥ-ଧର୍ମଧାରାକୁ ନାନା ଭାବରେ ପ୍ରଭାବିତ

କରିବାକୁ ଚେଷ୍ଟା କରିଥିଲ । ସମସାମୟିକ କାବ୍ୟକାର କେବଳ ଚୈତନ୍ୟଙ୍କ ଦ୍ୱାରା ନୁହେଁ, ଧର୍ମ-ପ୍ରଚାରାର୍ଥେ ଉତ୍କଳକୁ ଆସିଥିବା ବିଭିନ୍ନ ଧର୍ମାଚାର୍ଯ୍ୟଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ଏପରିର ପ୍ରଭାବ ଏବଂ ଉଦାହରଣ ବିପ୍ର ପୀତାମ୍ବରଙ୍କ ପୁରାଣରେ ଅବ୍ୟାହତ ରହିଛି । କେବଳ ଜ୍ଞାନମାର୍ଗର ଯୋଗ, ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱ, ଷଟ୍‌ଚକ୍ର ଭେଦ ଇତ୍ୟାଦି ଦ୍ୱାରା ନୃସିଂହ ପୁରାଣରେ କଳେବର ସୀମିତ ନୁହେଁ । ସମାନ୍ତରାଳ ଭାବେ ଏଥିରେ ଷୋଡ଼ଶ ଶତାବ୍ଦୀର ବିଭିନ୍ନ ଧର୍ମାଚାର୍ଯ୍ୟଙ୍କ ବିଭିନ୍ନ ମତବାଦସହ ଶୁଦ୍ଧାଭକ୍ତିର ପ୍ରାବଲ୍ୟ ମଧ୍ୟ ଅପ୍ରତିହତ । ଏ ଧାରା ପୂର୍ବରୁ ଥିବା ମଧ୍ୟ ଜଣାଯାଏ । ପଞ୍ଚସଖାବୃନ୍ଦ ରାଧାକୃଷ୍ଣଙ୍କ କାଭଳି ଭାବେ ଗ୍ରହଣ କରିଛନ୍ତି ସେପରି ବଳରାମଦାସଙ୍କ 'ବେଦାନ୍ତ ଗୁପ୍ତଗୀତା' ( ୨୪ ଅଧ୍ୟାୟ ), ଯଶୋବନ୍ତ ଦାସଙ୍କ 'ପ୍ରେମଭକ୍ତି ଗୀତା' ( ୩ୟ ଅଧ୍ୟାୟ ) ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟ ସଂହିତା' ( ୯ମ ଅଧ୍ୟାୟ ) ଇତ୍ୟାଦିରେ ରାଧାକୃଷ୍ଣଙ୍କ ମଧ୍ୟରେ ଜୀବାତ୍ମା ପରମାତ୍ମାଙ୍କ ସନ୍ଧାନସହ ପ୍ରେମଭକ୍ତିର ବର୍ଣ୍ଣନା ଦେଖିବାକୁ ମିଳେ । ଏକ ଦିଗରେ ଧର୍ମତତ୍ତ୍ୱ ସମ୍ବଳିତ ଆଖ୍ୟାନ ଏବଂ ଅପର ଦିଗରେ ନୀତିବଚନ ଓ ଉପଦେଶାବଳୀର ମଧୁର ସମନ୍ୱୟ ଏହାର ବୈଶିଷ୍ଟ୍ୟ ।

ଷୋଡ଼ଶ ଶତକର ପ୍ରାରମ୍ଭରୁ 'ସପ୍ତଦଶ ଶତକର ଉତ୍ତରାର୍ଦ୍ଧ ପର୍ଯ୍ୟନ୍ତ ଉତ୍କଳରେ ଗୌଡ଼ୀୟ ବୈଷ୍ଣବ ଧର୍ମସହ ବିଭିନ୍ନ ସମ୍ପ୍ରଦାୟଙ୍କର ଅଖଣ୍ଡ ପ୍ରତିଷ୍ଠା । ଚୈତନ୍ୟଙ୍କ ପୂର୍ବରୁ ପ୍ରେମଭକ୍ତିର ପ୍ରଚାର ଓ ପ୍ରସାର ନିମନ୍ତେ ଆଧବାଚାର୍ଯ୍ୟ, ବିଷ୍ଣୁସ୍ୱାମୀ, ନିମ୍ବାର୍କ, ରାମାନନ୍ଦ ଇତ୍ୟାଦି ଧର୍ମାଚାର୍ଯ୍ୟଙ୍କ ଉତ୍କଳାଗମନ ଏବଂ ବୈଷ୍ଣବ ଧର୍ମର ପ୍ରଚାର ଏବଂ ବିଭିନ୍ନ ରାଜାରାଜୁଡ଼ାଙ୍କଠାରୁ ଆରମ୍ଭ କରି ସାଧାରଣ ଜନତା ମଧ୍ୟ ଏହାଦ୍ୱାରା ପ୍ରଭାବିତ ହୋଇ ସେସବୁ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ ହୋଇଥିବାର ଦୃଷ୍ଟାନ୍ତ ଓଡ଼ିଆ ସାହିତ୍ୟର ଇତିହାସରେ ବିରଳ ନୁହେଁ । ବିପ୍ର ପୀତାମ୍ବର ମଧ୍ୟ ଅନ୍ୟାନ୍ୟ କବିଙ୍କ ସହ ଏହାଦ୍ୱାରା ପ୍ରଭାବିତ ହୋଇଥିଲେ । ଚୈତନ୍ୟଙ୍କ ପରବର୍ତ୍ତୀ ଯୁଗରେ ଉତ୍କଳରେ ଯେଉଁ ଶ୍ୟାମାନନ୍ଦ ସମ୍ପ୍ରଦାୟ" ପ୍ରତିଷ୍ଠା ଲାଭ କରିଥିଲା ତାହାଦ୍ୱାରା ବିପ୍ର ପୀତାମ୍ବର ବିଶେଷ ଭାବରେ ପ୍ରଭାବିତ ହୋଇଥିବା 'ନୃସିଂହ ପୁରାଣ'ର ପ୍ରଥମ ରତ୍ନାକରରେ ବର୍ଣ୍ଣିତ 'ଗୁରୁସମ୍ପ୍ରଦାୟର ଜନ୍ମ-ବୃତ୍ତାନ୍ତ' ଓ ଶ୍ୟାମନନ୍ଦୀ ଦୀକ୍ଷାକଥନ

ବ୍ରହ୍ମାଣ୍ଡ ପ୍ରଶଂସା” ପ୍ରସଙ୍ଗରୁ ଅନୁମିତ ହୁଏ । ଶ୍ରୀ ଶ୍ୟାମାନନ୍ଦ ଉତ୍କଳବାସୀ ଥିଲେ । ଶ୍ୟାମାନନ୍ଦ ନାମ ପୂର୍ବରୁ ତାଙ୍କ ନାମ ଯଥାକ୍ରମେ ‘ଦୁଃଖିଆ’ ଓ ‘କୃଷ୍ଣଦାସ’ ଥିଲା । ବୃନ୍ଦାବନରେ ଥିବାବେଳେ ସେ ସ୍ଥାନର ବୈଷ୍ଣବାଗ୍ରଣୀ ଜୀବଗୋସ୍ୱାମୀଙ୍କ ଦ୍ୱାରା ଶ୍ୟାମାନନ୍ଦ ନାମରେ ନାମିତ ହୋଇଥିଲେ । ଉତ୍କଳରେ ତାଙ୍କର ଆବିର୍ଭାବ ସପ୍ତଦଶ ଶତକର ଶେଷାର୍ଦ୍ଧରେ ହୋଇଥିଲା । ତାଙ୍କ ସମ୍ପ୍ରଦାୟ ସ୍ୱତନ୍ତ୍ରଭାବେ ‘ଶ୍ୟାମାନନ୍ଦ ସମ୍ପ୍ରଦାୟ’ ନାମରେ ଖ୍ୟାତ ଲାଭ କରିଥିଲା । ଦାମାନନ୍ଦ, ରସିକାନନ୍ଦ ଠାକୁର ଇତ୍ୟାଦି ଏ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ ଥିଲେ । ବୃନ୍ଦାବନରେ ଅବସ୍ଥାନ ସମୟରେ ପ୍ରେମଭକ୍ତି-ପ୍ରଚାରାର୍ଥେ ଜୀବ-ଗୋସ୍ୱାମୀଙ୍କ ଦ୍ୱାରା ଶ୍ୟାମାନନ୍ଦ ଉତ୍କଳକୁ ପ୍ରେରିତ ହୋଇଥିଲେ । ପ୍ରଥମେ ମେଦିନୀପୁର ଜିଲ୍ଲାର ଧାରେନ୍ଦା ( ନିଜ ଜନ୍ମସ୍ଥାନ ) ଗ୍ରାମରେ ସ୍ୱଧର୍ମ ପ୍ରଚାରକରି ପରେ ପରେ ଏ ବ୍ୟକ୍ତି ରେମୁଣା ଗ୍ରାମରେ ବହୁ ବ୍ୟକ୍ତିଙ୍କୁ ନିଜ ଧର୍ମରେ ଦୀକ୍ଷିତ କରିଥିଲେ । ତାଙ୍କ ସମୟରେ ଉତ୍କଳରେ ମହାସ୍ରୁ-ସଙ୍କୀର୍ତ୍ତନ-ମହୋତ୍ସବର ବନ୍ୟା ଛୁଟିଥିଲା । କୀର୍ତ୍ତନର ପ୍ରାଧାନ୍ୟ ମଧ୍ୟ ଉକ୍ତ ପୁରାଣରେ ନିହିତ—

“ଖୋଳ କୀର୍ତ୍ତନ କରିଣ ବୈକୁଣ୍ଠକୁ ନେଲେ
ଶ୍ରୀ ନାରାୟଣ ଗ୍ରାମୁରେ ଉଭା କରାଇଲେ” (୬ । ୯ )

ପରେ ଶ୍ୟାମାନନ୍ଦ କାଛୁଦାନ ପୁରୀରେ ଆସି ଅବସ୍ଥାନ କରିଥିଲେ । ଏହି ସମ୍ପ୍ରଦାୟ ଦ୍ୱାରା ପୀତାମ୍ବର ବିଶେଷ ଭାବରେ ପ୍ରଭାବିତ ହୋଇନଥିଲେ । ଏକ ସ୍ୱତନ୍ତ୍ର ପ୍ରସଙ୍ଗରେ ଏ ସମ୍ପ୍ରଦାୟର ବିଶଦ ବର୍ଣ୍ଣନା ପ୍ରଦାନକରିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ନଥାନ୍ତା । ଶ୍ୟାମାନନ୍ଦଙ୍କ ଜନ୍ମବୃତ୍ତାନ୍ତ ବର୍ଣ୍ଣନା ସଙ୍ଗେ ସଙ୍ଗେ ପୁରାଣକାର ରୁଦ୍ର, ଗୁରୁ, ଶ୍ରୀ, ସନକ ଆଦି ସମ୍ପ୍ରଦାୟର ବର୍ଣ୍ଣନା ମଧ୍ୟ ଦେଇଛନ୍ତି ।

“ନନ୍ଦ ଚଇତନ ରୂପ ପ୍ରକାଶ ହେ ରୂପ,
ସ୍ଥିର ଧର୍ମର ଅନ୍ତ ଜାଣ ଏହୁ ବାପ ।
ରାମାନନ୍ଦ ହେବେ ପୁଣି ଶ୍ରୀ ସମ୍ପ୍ରଦା ଗୁରୁ,
ବ୍ରହ୍ମ ସମ୍ପ୍ରଦାରେ ଯେ ମାଧବାନନ୍ଦ ଗୁରୁ ।

ସନକ ସଂପ୍ରଦା ଗୁରୁ ରାମାନନ୍ଦ ହେବେ,
ରୁଦ୍ର ସଂପ୍ରଦାରେ ଶ୍ୟାମାନନ୍ଦ ବୋଲାଇବେ ।

× × × ×

"ଗୁରୁ ଆଚାର୍ଯ୍ୟଙ୍କ ନଥାଇ ହୃଦେ ଦ୍ୱନ୍ଦ୍ୱ
ନ ଜାଣିଣ ପାପୀମାନେ କରୁଥାନ୍ତି ଦ୍ୱନ୍ଦ୍ୱ" । (୧ । ୩୭)

ଏଥିରୁ ପୁରାଣକାରଙ୍କର ଯେଉଁ ସମନ୍ୱୟବାଦୀ ଦୃଷ୍ଟିକୋଣର ପରିଚୟ ମିଳେ ତାହା ଅନ୍ୟତ୍ର ଦୁର୍ଲଭ । ପୁରାଣକାର କୌଣସି ଧର୍ମାବଲମ୍ବୀ ନଥିଲେ କିମ୍ବା କୌଣସି ସଂପ୍ରଦାୟ-ଅନ୍ତର୍ଭୁକ୍ତ ନଥିଲେ । ଏକ ମନରେ ସିଏ ପ୍ରେମଭକ୍ତି ଓ ଜ୍ଞାନଭକ୍ତିର ଏକ ସମନ୍ୱୟ-ଚିତ୍ର ପ୍ରଦାନ କରିଛନ୍ତି ଏବଂ ସବୁ ସଂପ୍ରଦାୟଙ୍କୁ ସମ୍ମାନ ପ୍ରଦର୍ଶନ କରିଛନ୍ତି । ପୁରାଣକାରଙ୍କ ମତରେ—

"ସର୍ବଭୂତେ ନାରାୟଣ ଏ ଧର୍ମର ହେତୁ
ଏହା ନଜାଣି ମରନ୍ତି ଧରି ବାଦ କେତୁ ।
ସଂପ୍ରଦା ନଚିହ୍ନି ବାଦ ଲଗାନ୍ତି ଅଜ୍ଞାନେ
ବୈଷ୍ଣବ ଧର୍ମ ନିନ୍ଦନ୍ତି ମୂର୍ଖେ ମୂଢ଼ ପଣେ ।
ଆପେ ଧର୍ମ ମୂଳ ବୋଲି ହୁଅନ୍ତି ବଡ଼
ନ ବୋଲନ୍ତି ଏହୁ ସିନା ବିଷ୍ଣୁଙ୍କର ଖେଡ଼ ।"
(୧ । ୧୪୭)

ଏଥିରୁ ସହଜରେ ଅନୁମେୟ ଯେ ପୁରାଣକାରଙ୍କ ନିକଟରେ ସର୍ବଧର୍ମ ସମାନ ଥିଲା । ସର୍ବଧର୍ମର ଏକ ଦେବତା ଏବଂ ସିଏ ହେଉଛନ୍ତି ବିଷ୍ଣୁ ବା ନାରାୟଣ । ତେଣୁ ବିଷ୍ଣୁଙ୍କ ଲୀଳାଖେଳା ବର୍ଣ୍ଣନା ତାଙ୍କର ମୂଳ ଲକ୍ଷ୍ୟ । କୌଣସି ଏକ ଦେବତାଙ୍କୁ ପ୍ରାଧାନ୍ୟ ନଦେଇ ଉତ୍କଳର ବୈଷ୍ଣବ ଦେବତା ଜଗନ୍ନାଥଙ୍କ ସହ ଶ୍ରୀକୃଷ୍ଣ ଏବଂ ରାମଙ୍କ ରାସଲୀଳା ବର୍ଣ୍ଣନା ମଧ୍ୟ ସିଏ କରିଛନ୍ତି ।

ତୃତୀୟ ରତ୍ନାକରରେ ବର୍ଣ୍ଣିତ 'ନୃସିଂହ ରାସଲୀଳା' ବର୍ଣ୍ଣନା ଦେବା କୌଣସି ଉତ୍କଳୀୟ ବୈଷ୍ଣବଙ୍କ ପକ୍ଷେ ସମ୍ଭବ ନୁହେଁ । ଏକାଧିକବାର ପୁରାଣକାର

ବୃନ୍ଦାବନରେ ନୃସିଂହ ବନ୍ଧନ୍ନରୂପ ପରବ୍ରହ୍ମକର ରାସକରିବେ ବୋଲି ସୂଚନା ଦେଇଚନ୍ତି । ଏଥିରେ ବର୍ଣ୍ଣିତ ରାସଲୀଳାରେ ଯେପରି ଅଶ୍ଳୀଳତା ପ୍ରକାଶିତ (ଷଷ୍ଠ ରତ୍ନାକର । ପୃ: ୪୬) ତାହା ଅନ୍ୟାନ୍ୟ ଗ୍ରନ୍ଥରେ ବର୍ଣ୍ଣିତ କୃଷ୍ଣଗୋପୀଙ୍କ ଭକ୍ତିଭାବନାରେ ଦେଖିବାକୁ ମିଳେନାହିଁ ।

ସପ୍ତମ ରତ୍ନାକରରେ ଶ୍ରୀକୃଷ୍ଣଙ୍କ ରାସଲୀଳାର ବର୍ଣ୍ଣନା କରି କବି କହିଛନ୍ତି, "ଏଥି ଉତ୍ତାରୁ ଶ୍ରୀକୃଷ୍ଣ କଲେକ ଯେ ରାସ/କାଳନ୍ଦୀରେ ଯାଇ ପ୍ରଭୁ ହୋଇଲେ ପ୍ରବେଶ" (୭/୯୫) ଏଠାରେ ସୂଚାଇଦେବା ଆବଶ୍ୟକ ଯେ କେବଳ ନୃସିଂହ ବା କୃଷ୍ଣଙ୍କ ରାସ ନୁହେଁ, ପୂର୍ବକାର ରାମଙ୍କ ରାସଲୀଳାର ବର୍ଣ୍ଣନା ମଧ୍ୟ ଦେଇଚନ୍ତି ।

"ଲେଉଟି ଆମ୍ଭେ ଜନମ ହେବୁ ମଥୁପୁରେ
ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ରୂପରେ ।
ଚୌଷଠୀ ସହସ୍ର ତୁମେ ଅଧେ କନ୍ୟା ଯିବ
ବତିଶ ସହସ୍ର ଯାଏ ତୁମ୍ଭେ ଗଣା ହେବ ।
ସରଯୂ ନଦୀର ତୀରେ ରାସକ୍ରୀଡ଼ା ହେବ
ବାଳକ ଭାବରେ ଗୃରବର୍ଷ ପୂରିଯିବ ।
ତୁମ୍ଭର ଏ ରାସକ୍ରୀଡ଼ା ଯେବେ ରସବାଣୀ
ନତ୍ୟେ ଶୁଣିବ ରାମାୟଣେ ସାଧୁବାଣୀ ।
ରାମ ଅବତାର ଅନ୍ତେ ତୁମ୍ଭେମାନେ ଯାଇ
ନତ୍ୟସ୍ଥଳରେ କରିବ ସେବା ମତେ ରହି"

× × ×

ତୁମ୍ଭଙ୍କୁ ଯେମନ୍ତ ରାସ କରିବ ଯମୁନା
ତୁମ୍ଭେ ଯେ ମୋହର ରାସ ପ୍ରାଣବନ୍ଧୁ ସିନା ।
ସେହି ଅବତାର ଶେଷେ କଳିଯୁଗେ ଯାଇ
ନୀଳଗିରି ଜଗନ୍ନାଥ ବୋଲାଇବ ମୁହିଁ ।
ତୁମ୍ଭେ ଷୋଳ ସହସ୍ରରୁ ଅଧେ କନ୍ୟା ଯିବ
ପଣ୍ଡା ପଡ଼ି ଆଞ୍ଚ ପଶୁପାଳକ ହୋଇବ ।

ଶୃଙ୍ଗାର ମେନାପ ଯେ ଦକ୍ଷିଣପନ୍ଥ ହୋଇ
ସେବା ପୂଜା କରୁଥିବ ମୋ' କ୍ଷେତ୍ରରେ ରହି ।"
(୭/୬୯)

ଏଠାରେ ଉଲ୍ଲେଖନୀୟ ଯେ ଉତ୍ତର ଭାରତରେ ମଧ୍ୟଯୁଗୀୟ ସାହିତ୍ୟ-ପରମ୍ପରାରେ 'ରସିକ୍ ସମ୍ପ୍ରଦାୟଙ୍କ' ପ୍ରାଧାନ୍ୟ ସ୍ୱୀକୃତ ହୋଇଥିଲା । ସେମାନଂକ ଆରାଧ୍ୟଦେବତା ଥିଲେ ରାମ ଏବଂ ରାମଲୀଳା ସେମାନଂକ ରଚନାର ପ୍ରଧାନ ବିଷୟ ଥିଲା । ଏପରି ସେ ସବୁ ରଚନାରୁ ହିଁ ପ୍ରଥମେ ରାମ ରାସ କରିଥିବାର ସୂଚନା ମିଳେ । ପରବର୍ତ୍ତୀକାଳରେ ଏ ସମ୍ପ୍ରଦାୟର ପ୍ରାଧାନ୍ୟ ବିଭିନ୍ନ ପ୍ରାଦେଶିକ ଭାଷା-ସାହିତ୍ୟରେ ପରିବ୍ୟାପ୍ତ ହୋଇଥିବା ଅସମ୍ଭବ ନୁହେଁ । ପୁରାଣକାର ଉପରୋକ୍ତ ସମ୍ପ୍ରଦାୟ ଦ୍ୱାରା ପ୍ରଭାବିତ ହୋଇଥିବା ଅସମ୍ଭବ ନୁହେଁ । ପୀତାମ୍ବରଂକ ପୁରାଣରେ ରାମଂକ ରାସଲୀଳା ବର୍ଣ୍ଣନା ସର୍ବପ୍ରଥମ । ଏଥି ପୂର୍ବରୁ ଓଡ଼ିଆ ସାହିତ୍ୟରେ ଏ ପ୍ରକାର ବର୍ଣ୍ଣନା ଦେଖିବାକୁ ମିଳେନାହିଁ । କୌଣସି ନିର୍ଦ୍ଦିଷ୍ଟ ମତବାଦର ପ୍ରତିଷ୍ଠା ଉକ୍ତ ପୁରାଣର ଉଦ୍ଦେଶ୍ୟ ନୁହେଁ । ପୁରାଣ ପରମ୍ପରାର ସୁଯୋଗ୍ୟ ଦାୟାଦଭାବେ ଯୁଗେଯୁଗେ ପାପର ବିନାଶ ଏବଂ ଧର୍ମ-ସଂସ୍ଥାପନା-ଉଦ୍ଦେଶ୍ୟରେ ଭଗବାନଂକ ଅବତାର ଗ୍ରହଣ ଓ ସନ୍ଥପାଳନ ବିଷୟବସ୍ତୁର ବର୍ଣ୍ଣନା ପୁରାଣକାରଂକର ଉଦ୍ଦେଶ୍ୟ । ତେଣୁ ବିଭିନ୍ନ ଅବତାରକୁ ପ୍ରାଧାନ୍ୟଦେବା ସଙ୍ଗେ ସଙ୍ଗେ ପୀତାମ୍ବର ପ୍ରେମଭକ୍ତି, ଜ୍ଞାନଭକ୍ତିକୁ ସମ୍ମାନ ପ୍ରଦର୍ଶନ ପୂର୍ବକ ସେହି ସମ୍ବନ୍ଧୀୟ ବିଭିନ୍ନ ବିଷୟକୁ ନିଜ ପୁରାଣରେ ସନ୍ନିବିଷ୍ଟ କରିଚନ୍ତି । ଯେପରି ଜଗନ୍ନାଥ ଓ ଲକ୍ଷ୍ମୀଙ୍କୁ ସେହିପରି ରାଧା ଏବଂ କୃଷ୍ଣଂକୁ । ଯେପରି ଆତ୍ମସଂଯମ ପିଣ୍ଡିତ ଯୋଗାଭ୍ୟାସ ସହ ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱର ସୂଚନା ଦେଇଛନ୍ତି ସେହିପରି ବିଭିନ୍ନ ରାସ ଏବଂ ପ୍ରେମଭକ୍ତିର ସୂଚନା ଦେଇଛନ୍ତି ।

ଶ୍ରୀ ଜଗନ୍ନାଥ ଧର୍ମ ଏବଂ ଉତ୍କଳୀୟ ବୈଷ୍ଣବଂକ ଅଖଣ୍ଡ ପ୍ରତିଷ୍ଠା ଏବଂ ଲୋକପ୍ରିୟତା ବୃଦ୍ଧି ପାଇବା ପରେ ପରବର୍ତ୍ତୀକାଳରେ ଯେତେକ ପୁରାଣ ରଚିତ ହୋଇଚି ସବୁଥିରେ ଶ୍ରୀଜଗନ୍ନାଥ ଏବଂ ନୀଳଗିରି ମାହାତ୍ମ୍ୟ ମୁଖ୍ୟ ପ୍ରତିପାଦିତ୍ୟ ବିଷୟ ହୋଇଥିବା ଜଣାଯାଏ । ନୃସିଂହଂକ ଜଗନ୍ନାଥ ମହାତ୍ମ୍ୟ କଥନ ଏବଂ ନାୟିକାମାନଙ୍କ ଶ୍ରବଣ ମାଧ୍ୟମରେ ଏହା ପ୍ରକାଶିତ (୭ମ ରତ୍ନାକର

/୨-୩) । ଏହା ବ୍ୟତୀତ ସପ୍ତମ ରତ୍ନାକରରେ ବର୍ଣ୍ଣିତ 'ଶ୍ରୀ ନୃସିଂହଙ୍କ ମହାଲକ୍ଷ୍ମୀ ମନ୍ଦିରରେ ପ୍ରବେଶ,' 'ନୀଳଗିରି ମାହାତ୍ମ୍ୟ' 'ଚନ୍ଦନ ଯାତ୍ରା' ଇତ୍ୟାଦି ପ୍ରସଙ୍ଗରେ ଏହାର ବିଶଦ ବର୍ଣ୍ଣନା ପ୍ରଦତ୍ତ । ଅପରପକ୍ଷେ ନୃସିଂହଙ୍କ ସ୍ଥିତିରେ ମହାଲକ୍ଷ୍ମୀଙ୍କୁ ପ୍ରାଧାନ୍ୟ ପ୍ରଦାନ, ନୃସିଂହଙ୍କଠାରେ ଜଗନ୍ନାଥତ୍ତ୍ୱ ଆରୋପର ଏକ ଅଭିନବ ପ୍ରୟାସ ମାତ୍ର । ତାଙ୍କ ମତରେ—

"ଯେ ଅଟଇ ଜଗନ୍ନାଥ ସେ ନୃସିଂହ ଅଟେ,
ଜଗନ୍ନାଥ ହୃଦୁ "ଜନ୍ମ ନୃସିଂହ ପ୍ରକଟେ"
(୩/୨୦୬)

ପୂର୍ବୋକ୍ତ ଲକ୍ଷଣ ବ୍ୟତୀତ ଉତ୍କଳୀୟ ସଂସ୍କୃତିର ରୂପାୟନ ବିଭିନ୍ନ ଗଳ୍ପ ମାଧ୍ୟମରେ ଏଥିରେ ସ୍ପଷ୍ଟ । ତତ୍କାଳୀନ ସମାଜ ଗୌଡ଼ୀୟ ପ୍ରେମ ଭକ୍ତିଦ୍ୱାରା ପ୍ରଭାବିତ ହେବା ସଙ୍ଗେ ସଙ୍ଗେ ରାଜନୈତିକ ଦୁର୍ଯୋଗ ଓ ସାମାଜିକ ବ୍ୟଭିଚାରର ବିଡ଼ମ୍ବନା ଦ୍ୱାରା ଉତ୍କଳୀୟ ସଂସ୍କୃତିର ଆଭିମୁଖ୍ୟ ଯେପରି ପଥଭ୍ରଷ୍ଟ ହୋଇଥିଲା ତାହା ଅନେକେ ବହୁତେ ସମସ୍ତଙ୍କୁ ଜଣାଅଛି । ଏହିପରି ପରିସ୍ଥିତିରେ ଶୃଙ୍ଖଳିତ ସଂଯମବିଶିଷ୍ଟ ସୁସ୍ଥ ସମାଜ ଗଠନପାଇଁ ପଞ୍ଚସଖାଙ୍କ ଅବଦାନ ସର୍ବଦା ସ୍ମରଣୀୟ । ଏହାର ପ୍ରଭାବରେ ପୀତାମ୍ବର ମଧ୍ୟ ଏକ ସୁସ୍ଥ ସମାଜର ପରିକଳ୍ପନା କରିଥିଲେ । କେବଳ ପୌରାଣିକ ବ୍ୟାପ୍ତି ନୁହେଁ, ତାତ୍ତ୍ୱିକ ଗାମ୍ଭୀର୍ଯ୍ୟତା ସହ ବହୁ ବିଷୟଗତ ସ୍ୱାତନ୍ତ୍ର୍ୟରେ ଏହା ଭରପୂର । ଜଗନ୍ନାଥ ଧର୍ମଧାରଣାକୁ ଭକ୍ତିପ୍ରଦର୍ଶନ ପୂର୍ବକ ପଞ୍ଚସଖାଙ୍କ ପିଣ୍ଡ ବ୍ରହ୍ମାଣ୍ଡତତ୍ତ୍ୱ, ଜ୍ଞାନର ମହିମା ଓ ଜ୍ଞାନୀଙ୍କ ଉତ୍କର୍ଷ, ସଗୁଣ ନିର୍ଗୁଣ ଉପାସନା, ଆତ୍ମସଂଯମ ଓ ସଙ୍କୀର୍ତ୍ତନପ୍ରୀତି, କାୟାସାଧନା ଇତ୍ୟାଦି ବିଭିନ୍ନଦିଗର ବର୍ଣ୍ଣନାରେ ଉତ୍କଳୀୟ ସଂସ୍କୃତି ପ୍ରକାଶ ପାଇଛି । ୪ର୍ଥ ରତ୍ନାକରରେ ବର୍ଣ୍ଣିତ "ନୃସିଂହଙ୍କ କନକବତୀ ପୁରରେ ପ୍ରବେଶ ଓ ରାଜପୁତ୍ରଙ୍କ ବିଦ୍ୟାଶିକ୍ଷା", ପ୍ରଥମ ରତ୍ନାକରରେ ବର୍ଣ୍ଣିତ 'ଲକ୍ଷ୍ମୀଙ୍କ ଜନ୍ମ', ୨ୟ ରତ୍ନାକରରେ ବର୍ଣ୍ଣିତ କାର୍ତ୍ତିକ ପୂର୍ଣ୍ଣିମାଦିନ ନୃସିଂହଙ୍କ ରାସ' 'କାର୍ତ୍ତିକ ବ୍ରତ', ସପ୍ତମ ରତ୍ନାକରରେ ବର୍ଣ୍ଣିତ 'ଚନ୍ଦନ ଯାତ୍ରା' ତୃତୀୟ ରତ୍ନାକରରେ ବର୍ଣ୍ଣିତ 'ଭଗବତୀ ବିବାହ', 'ନୃସିଂହଙ୍କ ଜନ୍ମ', ବାଲ୍ୟ-ଲୀଳା', 'ବଦରିକାପୁରରେ ନୃସିଂହଙ୍କ ଯୌବରାଜ୍ୟାଭିଷେକ', 'ଭରତରାଜା

ବୃତ୍ତାନ୍ତ'ରେ ନୀତିଶିକ୍ଷା, ରାଜନୀତି, ସତ୍ୟଧର୍ମ (ଜ୍ୟୋତିଷ ରତ୍ନାକର) ଇତ୍ୟାଦି ପ୍ରସଙ୍ଗରୁ ତତ୍କାଳୀନ ସମାଜଜୀବନର ଏକ ସ୍ଥୂଳ ପରିଚୟ ମିଳିଥାଏ । ଏସବୁ ବର୍ଣ୍ଣନା ପରମ୍ପରା ଦ୍ୱାରା ପ୍ରଭାବିତ ହୋଇ କବି ପ୍ରଦାନ କରିବା ହେତୁ ଏଥିରେ କୌଣସି ନୂତନତ୍ୱ ନଥାଇପାରେ କିନ୍ତୁ 'ଲକ୍ଷ୍ମୀଙ୍କ ଜନ୍ମ' 'ଶେଷ ନୃସିଂହ ଓ ଇଲା କମଳା ବିଭା' ପ୍ରସଙ୍ଗ ଏବଂ ସପ୍ତମ ସାଗରରେ ବର୍ଣ୍ଣିତ ପିତାମାତାଙ୍କ ସହ ବୃଦ୍ଧପୁତ୍ରଙ୍କ ପୁରରେ ହେଉଥିବା ଚନ୍ଦନଯାତ୍ରା ଦେଖିବାକୁ ଯିବା ବିଷୟ ଇତ୍ୟାଦିରେ ଯେଉଁ ମାନବୀକରଣର ପ୍ରଲେପ ପୁରାଣକାର ଦେଇଚନ୍ତି ତାହା ଅତ୍ୟନ୍ତ ବାସ୍ତବଧର୍ମୀ ଏବଂ ହୃଦୟଗ୍ରାହୀ ହୋଇପାରିଛି । "ଶ୍ୱେତରାଜାର ଯଜ୍ଞ ଓ ଅଗ୍ନି ଦେହରେ ଲୁଦୁବୁଦୁ ବ୍ୟାଧି ଜାତ ଏବଂ ଧନ୍ୱନ୍ତରୀ ଜନ୍ମ" ପ୍ରସଂଗରୁ ତତ୍କାଳୀନ ସମାଜରେ ବୈଦ୍ୟମାନଙ୍କର ପ୍ରତିଷ୍ଠା ଅନୁମାନ କରାଯାଇ ପାରେ । ମାନବ ଶରୀର ସଦୃଶ ଅଗ୍ନିଙ୍କ ଦେହରେ ଲୁଦୁବୁଦୁ ବ୍ୟାଧି ଦେଖା ଦେଇଛି (ଘିଅଧାରି ହୋଇ ଭୁଂଜିଲେ ସିନା ଅଗ୍ନି ଲୋଭେ/ଜୀର୍ଣ୍ଣ କରି ନପାରିଲେ ବ୍ୟାଧି ହେଲ ଗର୍ଭେ । ଲୁଦୁବୁଦୁ ହୋଇ ଶିର ନପାରିଲେ ଗୃକା/ କେ କାହିଁ ହୋମ କରିଲେ ପକାନ୍ତି ଓକାଳି । ଗର୍ଭେ ପଡ଼ିଲେ ଓକାଳି ବାହ୍ନି କରୁଥାନ୍ତି/ମନ୍ଦ ଅଗ୍ନି ହୋଇ ଉଠି ଚଳି ନପାରନ୍ତି । ପୃ : ୬୭) । ଏବଂ ଏହାର ପ୍ରତିକାର ଦେଇ ପୁରାଣକାର ଲେଖିଛନ୍ତି—

"ଏମନ୍ତ ବେଳେ ଯେ ଧନ୍ୱନ୍ତରୀ ଗଲେ ଏକା
ଅଗ୍ନିଙ୍କର ହସ୍ତଧରି ଚପିଲେ ନାଡିକା ।

× × ×

କାଶ ଶ୍ୱାସ ହିକ୍କା ଅରୁଚି ଅଜୀର୍ଣ୍ଣ ଧୂଗଣ୍ଡ
ପେଟ ଫୁଲି ଟାଣିବା ଏ ବ୍ୟାଧି ଯେତେ ନାଡ଼ୀ ।
ଉଷାଜଳ ପିଅନ୍ତେ ସେ ହୋଇଯିବ ଭଲ
ଭୁଞ୍ଜିବ ଛୀର ଲବଙ୍ଗ ଗୁଲେ ଜାଇଫଳ ।

× × ×

ଭୁଂଜିବ ଅରୁଣ ଉଦେ କାଳେ ଦନ୍ତମାର୍ଜ୍ଜି
ତେବେ ଜଠରେ ଉଠିବ ଜାଣ ଅଗ୍ନି ତେଜ
ଏ ରୂପେ ଦିନ ସପ୍ତାହ କଲେ ଭଲହେବ
ଉଦର ରୋଗ ଗ୍ରହଣ କ୍ଳେଶ କ୍ଷୟ ଯିବ ।"
(୫/୭୨-୭୩)

'ନୃସିଂହ ପୁରାଣ'ର ଭାଷା ଏବଂ ଶୈଳୀ ସରଳ ତଥା ସାବଲୀଳ । ପରମ୍ପରା ଅନୁସରଣରେ ପୁରାଣକାର ବିଭିନ୍ନ ନୀତିବଚନ ଦେବାରେ ପ୍ରଯତ୍ନଶୀଳ ହୋଇଛନ୍ତି—

"ନୃପତି ହୋଇ ଯେ କରେ ନ୍ୟାୟରେ ଅନ୍ତର
ପତି ତେଜି ପତ୍ନୀ ଯେବେ ଲଭେ ଅନ୍ୟ ନର ।
ଯତି ହୋଇଣ ନାରୀକି କରେ ଯେବେ ଆଶ
ପଣ୍ଡିତ ହୋଇ ଯେବେ ନ କହେ ସତ୍ୟ ଭାଷ ।
ଜ୍ଞାନୀ ହୋଇଣ ଯଦ୍ୟପି କରେ ଜୀବ ବଧ
ପୁତ୍ର ହୋଇଣ ଯେବେ ନକରେ ପିତୃଶ୍ରାଦ୍ଧ
ଶୂଦ୍ର ହୋଇଣ ଯଦ୍ୟପି ହରେ ବିପ୍ରନାରୀ
ସଭାରେ ବସିଣ ଯେହୁ କହେ ପକ୍ଷ କରି ।
X X X
ଦେବତା ବିପ୍ରର ଯେହୁ ହରେ ଦାନ ବୃତ୍ତି
ସାଧୁଙ୍କୁ ନସେବ ଯେହୁ ଅର୍ଜେ ଅପକୀର୍ତ୍ତି ।
ଗୁରୁଙ୍କର ଶିଷ୍ୟ ଯେବେ ଲୁଚଇ ଦେଖିଲେ
ଏତେ ଲୋକ ପଡ଼ନ୍ତି ନର୍କେ ଜାଣ ଭଲେ ।"
(୫ । ୭୪)

ପୁରାଣ ପରମ୍ପରାରେ ପୁନରାବୃତ୍ତି ଏକ ମୂଲ୍ୟହୀନ ଦାଗ । ଅନ୍ୟାନ୍ୟ ପୁରାଣ ଅପେକ୍ଷା ସ୍ଥଳ ବିଶେଷରେ ଗୋଟିଏ ଶବ୍ଦର ପୁନଃ ପୁନଃ ପୁନରାବୃତ୍ତି ଉକ୍ତ ପୁରାଣର ମୂଲ୍ୟ ବୃଦ୍ଧିର ବିରୋଧୀ । ଏଥିରେ ନୂତନତ୍ୱ ଜଣାପଡ଼େନାହିଁ ।

"ଶଙ୍କର ଯାକରେ କେତେ ଶିର କେତେ ନାମ
ଶଙ୍କର ଯାକରେ କେତେ ଆତ୍ମା କେତେ ବ୍ରହ୍ମ ।
ଶଙ୍କର ଯାକରେ କେତେ ମୂର୍ଖ କେତେ ମନ
ଶଙ୍କର ଯାକରେ କେତେ ମୂର୍ତ୍ତି ଦସ୍ଥା ବୃଦ୍ଧି ଜ୍ଞାନ ।"
(ପୃ. ୬୯)

"କାହିଁ ମତ୍ସ୍ୟ ହୋଇ କର ମାରୁଛନ୍ତି ଶଙ୍ଖ
କାହିଁ କୂର୍ମ ରୂପେ ପୃଥ୍ୱୀ ହୋଇଅଛ ଟେକା ।
କାହିଁ ମୁର ଦୈତ୍ୟକୁ ଯେ ନବାରନ୍ତି ହରି
କାହିଁ ବରାହ ହୋଇଣ ଦନ୍ତେ ପୃଥ୍ୱୀ ଧରି
କାହିଁ ସ୍ତମ୍ଭରୁ ଜନମି ହିରଣ୍ୟକୁ କୋପେ
କାହିଁ ବାମନ ପାତାଳେ ବଳିକ ଯେ ରୂପେ ।
କାହିଁ ପଶୁରାମ ସଙ୍ଗେ ଅର୍ଜୁନର ବାଦ
କାହିଁ ରାମ ରାବଣର ହୁଏ ଘୋର ଯୁଦ୍ଧ ।"
(୫ । ୭୦)

ଏହା ସତ୍ତ୍ୱେ ଏଥିରେ ପ୍ରକାଶିତ ଓଡ଼ିଆ ପରମ୍ପରାର ସମନ୍ୱୟବାଦୀ ଦୃଷ୍ଟିକୋଣର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ପୁରାଣ ସାହିତ୍ୟରେ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ । ଅଷ୍ଟାଦଶ ଶତାବ୍ଦୀରେ ଏ ଦୃଷ୍ଟିକୋଣର ଗମ୍ଭୀରତା ଅତ୍ୟନ୍ତ ସମ୍ବେଦନଶୀଳ-ଏଥିରେ ହିଁ ପୀତାମ୍ବରଙ୍କ ପ୍ରତିଭାର ସାର୍ଥକତା ।

# ସୂର୍ଯ୍ୟ ପୁରାଣ—

## ଏକ ସିଂହାବଲୋକନ

ମମତା ବନ୍ଧ୍ୟା ଏମ୍. ଏ.

ଭାରତୀୟ ସାହିତ୍ୟରେ 'ପୁରାଣ' ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରେ । ପ୍ରତ୍ୟେକ ହିନ୍ଦୁ ପ୍ରାଣରେ ପୁରାଣ ପାଇଁ ଏକ ସ୍ୱତନ୍ତ୍ର ଆଦର ରହିଅଛି । ଏହି ପୁରାଣର ସୃଷ୍ଟି ବହୁ ପ୍ରାଚୀନ । ବେଦରେ ମଧ୍ୟ ପୁରାଣର ନାମୋଲ୍ଲେଖ ହୋଇଥିବାର ଦେଖାଯାଏ । ଅଥର୍ବବେଦର ଉଚ୍ଛିଷ୍ଟ ସୂକ୍ତରେ ଲେଖାଯାଇଛି—

"ଋଚଃସାମାନ ଛନ୍ଦାଂସି ପୁରାଣଂ ଯଜୁଷା ସହ
ଉଚ୍ଛିଷ୍ଟାଜ୍ଜଜ୍ଞିରେ ସର୍ବେ ଦିବିଦେବା ଦିବିଶ୍ରିତଃ"

(ଅଥର୍ବ—୧୧ । ୭ । ୧ (୨୪))

ଅର୍ଥାତ୍, ପ୍ରଳୟ କାଳରେ ଏକମାତ୍ର ଅବଶେଷ ପରମାତ୍ମାଙ୍କଠାରୁ ଋକ୍, ସାମ, ଅଥର୍ବ ଏବଂ ଯଜୁର୍ବେଦ ସହିତ ପୁରାଣ ଉତ୍ପନ୍ନ ହୋଇଥିଲ । ମନୁସ୍ମୃତି ମତରେ ଶ୍ରାଦ୍ଧକାଳରେ ପିତୃପୁରୁଷଙ୍କୁ ପୁରାଣ ଶୁଣାଇବା ଆବଶ୍ୟକ । ସାଧାରଣତଃ ପୁରାଣ କହିଲେ ସଂସ୍କୃତ ସାହିତ୍ୟରେ ବେଦବ୍ୟାସ ପ୍ରଣୀତ ଅଷ୍ଟାଦଶ ମହାପୁରାଣକୁ ବୁଝାଇଥାଏ । ସେ ଗୁଡ଼ିକ ହେଲ, ବ୍ରହ୍ମା, ବିଷ୍ଣୁ, ଶିବ, ଲିଙ୍ଗ, ଗରୁଡ଼, ନାରଦ, ଭାଗବତ, ଅଗ୍ନି, ସ୍କନ୍ଦ, ଭବିଷ୍ୟ, ବ୍ରହ୍ମବୈବର୍ତ୍ତ,

ମାର୍କଣ୍ଡେୟ, ବାମନ, ବରାହ, ମତ୍ସ୍ୟ, କୂର୍ମ, ଓ ବ୍ରହ୍ମାଣ୍ଡ ପୁରାଣ । ଏହି ମହାପୁରାଣ ବ୍ୟତୀତ ଅଷ୍ଟାଦଶ ଉପପୁରାଣ ଏବଂ ଅଷ୍ଟାଦଶ ଔପପୁରାଣ ଥିବାର ଜଣାଯାଏ । ଏ ସମ୍ବନ୍ଧରେ ଭାଗବତ ପୁରାଣର ଟୀକାକାର ଶ୍ରୀଧର ସ୍ୱାମୀଙ୍କ ଶିଷ୍ୟ ନୀଳକଣ୍ଠ ଲେଖିଛନ୍ତି—

"ଅଷ୍ଟାଦଶ ପୁରାଣରୁ ଭିନ୍ନ ଯେଉଁ ପୁରାଣ ଦେଖାଯାଏ, ସେ ସବୁ ଏହି ଅଷ୍ଟାଦଶରୁ ହିଁ ବାହାରିଛି ବୋଲି ବୁଝିବାକୁ ହେବ ।" ଏହି ଉପପୁରାଣ ଗୁଡ଼ିକ ହେଲ—ଆଦି, ନୃସିଂହ, ସ୍କନ୍ଦ, ଶିବଧର୍ମ, ଦୁର୍ବାସା, ନାରଦ, କପିଳ, ବାମନ ଔଶନସ, ବ୍ରହ୍ମାଣ୍ଡ, କାଳିକା, ବାରୁଣ, ମାହେଶ୍ୱର, ଶାମ୍ବ, ସୌର, ପାରାଶର ମାରୀଚ ଓ ଭାର୍ଗବ ପୁରାଣ । ସେହିପରି ଅଷ୍ଟାଦଶ ଔପପୁରାଣର ନାମ ହେଲ— ସନତ୍ କୁମାର, ବୃହନ୍ନାରଦୀୟ, ଆଦିତ୍ୟ, ମାନବ, ନନ୍ଦିକେଶ୍ୱର, କୌର୍ମ, ଭାଗବତ, ବାଶିଷ୍ଠ, ଭାର୍ଗବ, ମୁଦ୍‌ଗଳ, କଲ୍‌କି, ଦେବୀ, ମହାଭାଗବତ, ବୃହଦ୍ଧର୍ମ, ପରାନନ୍ଦ, ପଶୁପତି, ବହ୍ନି ଏବଂ ହରିବଂଶ ପୁରାଣ ।

ସଂସ୍କୃତ ସାହିତ୍ୟରେ ଇତିହାସ ଓ ପୁରାଣର ଦୁଇଟି ଭିନ୍ନ ବିଭାଗ ଥିଲା । କିନ୍ତୁ ଓଡ଼ିଆ ସାହିତ୍ୟରେ ଉଭୟଙ୍କୁ ପୁରାଣ ଆଖ୍ୟା ଦିଆଗଲା । ସେହି ଦୃଷ୍ଟିକୋଣରୁ ଓଡ଼ିଆ ସାହିତ୍ୟରେ କେତେକ ପୁରାଣ ଦେଖାଯାଏ । ତନ୍ମଧ୍ୟରୁ ସାରଳା ଦାସଙ୍କ ମହାଭାରତ, ବିଳଙ୍କା ରାମାୟଣ, ବଳରାମ ଦାସଙ୍କ ଜଗମୋହନ ରାମାୟଣ, ଜଗନ୍ନାଥ ଦାସଙ୍କ ଭାଗବତ, ଅଚ୍ୟୁତାନନ୍ଦଙ୍କ ପଦ୍ମ ପୁରାଣ, ମହାଦେବ ଦାସଙ୍କ ମାର୍କଣ୍ଡେୟ ପୁରାଣ କୃଷ୍ଣକେଶରୀ ପଟ୍ଟନାୟକଙ୍କ ବାମନ ପୁରାଣ, ପୀତାମ୍ବର ଦାସଙ୍କ ନୃସିଂହ ପୁରାଣ, ପ୍ରଭୃତି ମୁଖ୍ୟସ୍ଥାନ ଗ୍ରହଣ କରନ୍ତି । ଏମାନଙ୍କ ବ୍ୟତୀତ ଅନ୍ୟ ଯେଉଁ କେତୋଟି ଓଡ଼ିଆ ପୁରାଣ ରହିଅଛି, ସେଥିମଧ୍ୟରୁ ଆମର ଆଲୋଚ୍ୟ ସୂର୍ଯ୍ୟପୁରାଣ ଅନ୍ୟତମ । ଓଡ଼ିଆ ସୂର୍ଯ୍ୟପୁରାଣ ସଂସ୍କୃତ ଉପପୁରାଣ 'ସୌରପୁରାଣ', 'ଶାମ୍ବପୁରାଣ' ଏବଂ ଔପପୁରାଣ 'ଆଦିତ୍ୟ ପୁରାଣ'ର କଥାବସ୍ତୁ ଉପରେ ଆଧାରିତ । ଯେଉଁ ଓଡ଼ିଆ ସୂର୍ଯ୍ୟପୁରାଣକୁ ନେଇ ଏହି ପ୍ରବନ୍ଧଟି ଆଲୋଚିତ ହେବାକୁ ଯାଉଛି, ତାହା 'ଧର୍ମଗ୍ରନ୍ଥ ଷ୍ଟୋର' କଟକ ଦ୍ୱାରା ମୁଦ୍ରିତ

ହୋଇଅଛି । ପୁରାଣଟିରେ କୌଣସି ସ୍ଥାନରେ ଭଣିତା ନାହିଁ । ଫଳରେ ଏହା କାହାଦ୍ୱାରା ରଚିତ ତାହା ଜାଣିହୁଏ ନାହିଁ ।

ପୁରାଣର ସଂଜ୍ଞା ନିରୂପଣ କରିବାକୁ ଯାଇ ପଦ୍ମପୁରାଣ କହେ, "ପୁରାଣ ହେଉଛି ପୁରାପରମ୍ପରା (ancient chronology) ସେହିପରି ଶୁକ୍ରନୀତି ମତରେ ଏହା ହେଉଛି ପ୍ରାଗ୍‌ବୃତ୍ତ କଥନ (narration of ancient history) । କିନ୍ତୁ ପୁରାଣର ସାଧାରଣ ସଂଜ୍ଞା ଯାହା 'ଅମରକୋଷ'ରେ କୁହାଯାଇଛି, ତାହା ହେଉଛି—

"ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋମନ୍ୱନ୍ତରାଣିଚ
ବଂଶାନୁ ଚରିତଂଚୈବ ପୁରାଣଂ ପଞ୍ଚ ଲକ୍ଷଣଂ ।"

ଅର୍ଥାତ୍, ପୁରାଣରେ ସର୍ଗ ଅର୍ଥାତ୍ ସୃଷ୍ଟି, ପ୍ରତିସର୍ଗ ଅର୍ଥାତ୍ ସୃଷ୍ଟିର ବିବରଣ, ପ୍ରଳୟ ଓ ପୁନଃ ସର୍ଜନା, ବଂଶ ଅର୍ଥାତ୍ ସୃଷ୍ଟିର ଆଦିବଂଶାବଳୀ ମନ୍ୱନ୍ତର ଅର୍ଥାତ୍ କେଉଁ କେଉଁ ମନୁଙ୍କ ସମୟ କେତେକାଳ ରହିଥିଲା ଏବଂ ସେ କାଳ ମଧ୍ୟରେ ବିଶିଷ୍ଟ ଘଟଣା ଏବଂ ବଂଶାନୁଚରିତ ଅର୍ଥାତ୍ ସୂର୍ଯ୍ୟ ଓ ଚନ୍ଦ୍ରବଂଶୀୟ ରାଜାମାନଙ୍କ ଚରିତ ରହିଥିବା ଆବଶ୍ୟକ । କିନ୍ତୁ ସମୟର ସ୍ରୋତରେ ପୁରାଣର ଲକ୍ଷଣ କ୍ରମେ ଗୋଟିଏ ପରେ ଗୋଟିଏ ବୃଦ୍ଧି ପାଇବାରେ ଲାଗିଛି ।

ପୁରାଣର ଏହିସବୁ ଲକ୍ଷଣ ଦୃଷ୍ଟିରୁ 'ସୂର୍ଯ୍ୟପୁରାଣ', ପୁରାଣ ରୂପେ କେତେ ଦୂର ଗ୍ରହଣୀୟ ତାହା ବର୍ତ୍ତମାନ ବିଗ୍ଭର କରାଯାଇପାରେ । ଏଥିରେ ଆଦି ସୃଷ୍ଟିର କଥା,ବର୍ଣ୍ଣନା କରାଯାଇଛି । ୪ର୍ଥ ଅଧ୍ୟାୟରେ ପାର୍ବତୀ, ଶିବଙ୍କୁ ପ୍ରଶ୍ନ କରିଛନ୍ତି—

"ନାଭି କମଳରୁ ପ୍ରଜାପତି ଜନ୍ମ ହେଲେ
କେଉଁପରି ପ୍ରାଣୀମାନେ ଜନମ ଲଭିଲେ
ବୃକ୍ଷଲତା ଗୁଳ୍ମତୃଣ କାହିଁ ହେଲେ ଜାତ
କେ ଆଗ ଜନମ ହେଲା କହ ସେ ଚରିତ ।"

ଉତ୍ତରରେ ମହାଦେବ କହୁଛନ୍ତି, ବ୍ରହ୍ମାଙ୍କ ପୂର୍ବମୁଖରୁ ଋକ୍‌ବେଦ, ଦକ୍ଷିଣମୁଖରୁ ଯଜୁର୍ବେଦ, ପଶ୍ଚିମମୁଖରୁ ସାମବେଦ, ଓ ଉତ୍ତରମୁଖରୁ ଅଥର୍ବ ବେଦ ସୃଷ୍ଟି ହେଲ । ତାପରେ ବ୍ରହ୍ମାଙ୍କ ହୁଂକାରରୁ ମରୀଚିଙ୍କ ଜନ୍ମ, ତାଙ୍କଠାରୁ କଶ୍ୟପମୁନିଙ୍କ ଜନ୍ମ । ବ୍ରହ୍ମାଙ୍କ ଦକ୍ଷିଣାଙ୍ଗୁଳିରୁ ଦକ୍ଷଙ୍କ ଉତ୍ପତ୍ତି ତାଙ୍କଠାରୁ ତେରଟି ଦୁହିତାଙ୍କ ସୃଷ୍ଟି । କଶ୍ୟପଙ୍କ ବୀର୍ଯ୍ୟରୁ ଏହି କନ୍ୟାମାନଙ୍କ ଗର୍ଭରୁ ଦେବଗଣ, ଦାନବ, ଗରୁଡ଼, ଅରୁଣ, ପକ୍ଷୀ ସର୍ପ, ମୁନି, ଗନ୍ଧର୍ବ, ନଦନଦୀ, ଅପ୍ସରା, ଐରାବତ ହସ୍ତୀ, ଶୂଳ, ବୃକ୍ଷଲତା, ପତଙ୍ଗ ପ୍ରଭୃତିଂକ ସୃଷ୍ଟି ।

ଏହି ପୁରାଣରେ ବୈବସ୍ୱତମନୁଂକ ଚରିତ ବର୍ଣ୍ଣନା କରାଯାଇଛି । ସେହି ପରି ପୁରାଣରେ ଲକ୍ଷଣ ଅନୁଯାୟୀ ଏଥିରେ ସୂର୍ଯ୍ୟବଂଶୀୟ ରାଜାମାନଂକର ଚରିତଗାନ କରାଯାଇଛି । ଯେପରି ବୃଷଧର, ନାଭାଗ, ପ୍ରମତ ପ୍ରଭୃତି ରାଜା-ମାନଂକ ଚରିତ ବର୍ଣ୍ଣିତ ହୋଇଛି ।

'ସୂର୍ଯ୍ୟପୁରାଣ'ରେ ଏହିପରି ଭାବରେ ପୁରାଣର କେତେକ ଲକ୍ଷଣ ଦେଖାଯାଉଛି । ବର୍ତ୍ତମାନ ଅନ୍ୟାନ୍ୟ ଦୃଷ୍ଟିକୋଣରୁ ଏହି ପୁରାଣକୁ ଆଲୋଚନା କରାଯାଇପାରେ ।

ସୂର୍ଯ୍ୟଦେବଂକ ମହିମା ଉପସ୍ଥାପନ ନିମନ୍ତେ 'ସୂର୍ଯ୍ୟପୁରାଣ' ଉଦ୍ଦିଷ୍ଟ । ପ୍ରତ୍ୟେକ ହିନ୍ଦୁପ୍ରାଣରେ ସୂର୍ଯ୍ୟଦେବଙ୍କ ପ୍ରତି ଭକ୍ତିଭାବ ସୃଷ୍ଟି କରିବା ଦିଗରେ ଏହା ଏକ ରଚନା । ଏଥିରେ ସର୍ବମୋଟ ୫୭ଟି ଅଧ୍ୟାୟ ଅଛି । ଏହି ପୁରାଣରେ ମୁଖ୍ୟବକ୍ତା ହେଉଛନ୍ତି ମହାଦେବ ଏବଂ ମୁଖ୍ୟଶ୍ରୋତା ହେଉଛନ୍ତି ପାର୍ବତୀ । ଦିନେ ମହାଦେବ ପାର୍ବତୀଙ୍କୁ ନେଇ କୈଳାସ ଶିଖରରେ କ୍ରୀଡ଼ା କରୁଥିବା ସମୟରେ ପାର୍ବତୀ ମହାଦେବଙ୍କୁ କହୁଛନ୍ତି—

"ଦୟାକରି ପ୍ରାଣନାଥ ଅକପଟ ଚିତ୍ତେ
କହନ୍ତୁ ସୂର୍ଯ୍ୟପୁରାଣ ଚରିତ ହେ ମୋତେ"

ତାପରେ ମହାଦେବଂକ କଣ୍ଠରୁ ସୂର୍ଯ୍ୟ ପୁରାଣ ଚରିତ ଆରମ୍ଭ ହୋଇଛି ।

ସୂର୍ଯ୍ୟଦେବଂକ ଶ୍ରେଷ୍ଠତ୍ୱ ପ୍ରକାଶନ ଉଦ୍ଦେଶ୍ୟରେ ଏହି ପୁରାଣରେ କେତେକ କାହାଣୀର ଅବତାରଣା କରାଯାଇଛି । ତନ୍ମଧ୍ୟରୁ "ଶାମ୍ବଂକ ଅର୍କ ପୂଜା ଉପାଖ୍ୟାନ" ଅନ୍ୟତମ ।

ଶାମ୍ବ ହେଉଛନ୍ତି ଶ୍ରୀକୃଷ୍ଣଂକ ପୁତ୍ର । ଏକଦା ଶାମ୍ବଙ୍କୁ ଦ୍ୱାର ଜଗାଇ ଶ୍ରୀକୃଷ୍ଣ ସତ୍ୟଭାମାଂକ ନିକଟକୁ ଯାଇଥିବା ସମୟରେ ଦୁର୍ବାସା ଋଷି ଆସି ଶ୍ରୀକୃଷ୍ଣଂକ ସହିତ ମିଳିତ ହେବାପାଇଁ ଚାହିଁଲେ । ଶାମ୍ବ ଭୟଭୀତ ହୋଇ ଯେତେବେଳେ ଭିତରକୁ ଗଲେ, ସେତେବେଳେ ଶ୍ରୀକୃଷ୍ଣ, ସତ୍ୟଭାମା ହାସ-ପରିହାସରେ ବ୍ୟସ୍ତ ଥିଲେ । ତେଣୁ ଏଭଳି ଅବସ୍ଥାରେ ଶ୍ରୀକୃଷ୍ଣ କ୍ରୋଧରେ ଶାମ୍ବଙ୍କୁ କୋଷ୍ଠ ହୋଇଯାଉ ବୋଲି ଅଭିଶାପ ଦେଲେ । କିନ୍ତୁ ପରମୁହୂର୍ତ୍ତରେ ଶ୍ରୀକୃଷ୍ଣ ଅନୁତାପରେ ଦଗ୍ଧ ହୋଇ ଦୁର୍ବାସା ଋଷିଙ୍କୁ ଅଭିଶାପର ପ୍ରତିକାର ପଚାରିବାରୁ ଋଷି କହିଲେ—

'ଦୁର୍ବାସା ବୋଇଲେ ଯାଉ ଅର୍କତୀର୍ଥ ଠାରେ
× × ×
ନୀଳଗିରି ନିକଟରେ ସେ ତୀର୍ଥ ଅଛଇ
ସେଠାରେ ସୂର୍ଯ୍ୟଙ୍କ ଆରାଧନା କରୁ ଯାଇ
ତାହାଙ୍କ କୃପାରେ ରୋଗ ହୋଇବ ମୋଚନ"

ତା'ପରେ ଶାମ୍ବ ନାରଦଙ୍କ ସଙ୍ଗରେ ଅର୍କତୀର୍ଥକୁ ଯାଇ ସୂର୍ଯ୍ୟାପତିଙ୍କୁ ଏକାଗ୍ର ଚିତ୍ତରେ ଧ୍ୟାନକରି ସାଗରରେ ସ୍ନାନ କରି ଉଠିଲା ବେଳକୁ ତାଙ୍କ ଦେହର ଖଣ୍ଡିଆ ସ୍ଥାନମାନ ଶୁଖିଗଲା । ବାଲୁକାରେ ରବିନାରାୟଣ ମୂର୍ତ୍ତି ସ୍ଥାପନ କରି, ନାନାବିଧ ପୁଷ୍ପରେ ତାହାଙ୍କୁ ମଣ୍ଡନ କରି, ଗନ୍ଧ ଚନ୍ଦନ ଲେପନ କରି, ଧୂପଦୀପ ଦେଇ ପୂଜା କରିବାରୁ ତାଙ୍କ ଦେହରୁ କୁଷ୍ଠବ୍ୟାଧି ସମ୍ପୂର୍ଣ୍ଣ ଅପସାରିତ ହୋଇଗଲା ।

ଏହି ପୁରାଣରେ କେବଳ ସୂର୍ଯ୍ୟ ଦେବଙ୍କ ଚରିତ ନୁହେଁ, ତାଙ୍କର ବଂଶଧରଙ୍କ ଚରିତ ବିଭିନ୍ନ ଉପାଖ୍ୟାନ ମାଧ୍ୟମରେ ସୁନ୍ଦର ଭାବରେ ପ୍ରକାଶ କରାଯାଇଛି । ତନ୍ମଧ୍ୟରୁ ସପ୍ତବିଂଶ ଅଧ୍ୟାୟର "ଦେବଗୁରୁ ବୃହସ୍ପତିଙ୍କ ପ୍ରତି ଶନିଗ୍ରହଙ୍କ ଦୃଷ୍ଟିପାତ" ଅନ୍ୟତମ ।

ଶନି ହେଉଛନ୍ତି ସୂର୍ଯ୍ୟଙ୍କର ପୁତ୍ର । ଏକଦା ସୂର୍ଯ୍ୟଦେବ ନିଜର ପୁତ୍ର-ମାନଙ୍କୁ ଆଶୀର୍ବାଦ ଦେବା ସମୟରେ ଶନିଙ୍କୁ କହିଥିଲେ—

"ଶନୈଶ୍ଚରଙ୍କୁ ବୋଇଲେ ରୁଦ୍ର ଗ୍ରହ ରୂପେ
ରହିବୁ ନିଶ୍ଚିନ୍ତେ ନବଗ୍ରହଙ୍କ ସମୀପେ ।
ଯହିଁ ତୋ ଦୃଷ୍ଟି ପଡ଼ିବ ସେ ହେବ ବିନାଶ"

ତେଣୁ ସେହି ଦିନଠାରୁ ଶନିଙ୍କ ଦୃଷ୍ଟି ଯେଉଁ ପ୍ରାଣୀ ଉପରେ ପଡ଼େ ସେ ବହୁ କଷ୍ଟ ପାଇଥାଏ । ଶନିଙ୍କର ବିଦ୍ୟାଗୁରୁ ହେଉଛନ୍ତି ବୃହସ୍ପତି । ଶନି ଛଦ୍ମ-ବେଶରେ ବୃହସ୍ପତିଙ୍କ ନିକଟରେ ବିଦ୍ୟାଧ୍ୟୟନ କରୁଥିଲେ । ଗୁରୁଙ୍କଠାରୁ ବିଦାୟ ନେବାବେଳେ ଯେତେବେଳେ ଶନି ଦକ୍ଷିଣା ଦେବାକୁ ଚାହିଁଛନ୍ତି, ସେତେବେଳେ ଗୁରୁ ଶନିଙ୍କ ପ୍ରକୃତ ପରିଚୟ ଜାଣି ତାଙ୍କ କୋପ ଦୃଷ୍ଟିରୁ ବଞ୍ଚିତ ହେବା ପାଇଁ ଚାହିଁଛନ୍ତି । କିନ୍ତୁ ଏହା ଅସମ୍ଭବ ଜାଣି ଶନି କହିଛନ୍ତି ଯେ, ମାତ୍ର ଗୋଟିଏ ଦିନ ତାଙ୍କର ଅଶୁଭ ଦୃଷ୍ଟି ଗୁରୁଙ୍କ ଉପରେ ପଡ଼ିବ ।

ଏକଦା ଗୁରୁ ଫୁଲଡ଼ାଲି ଧରି ଗୋଟିଏ ବଗିଚାରେ ଫୁଲ ତୋଳୁଥାଆନ୍ତି । ସେଦିନ ସେହି ଉଦ୍ୟାନକୁ ସେହି ଦେଶର ରାଜା ବୀରବାହୁ ତାଙ୍କର ପୁତ୍ର ଓ ସୈନ୍ୟଗଣ ସହ ମୃଗୟା କରିବା ପାଇଁ ଆସି ଥାଆନ୍ତି । ସେହି ପୁତ୍ର ସୈନ୍ୟମାନଙ୍କ ସହିତ କ୍ରୀଡ଼ା କରୁଥିବା ସମୟରେ ହଠାତ୍ ତାକୁ କିଏ ନେଇଗଲା—ତାହା ଜାଣି ନ ପାରି, ସୈନ୍ୟମାନେ ଖୋଜି ଖୋଜି ଉଦ୍ୟାନ ଭିତରେ ରକ୍ତଧାରର ସନ୍ଧାନ ପାଇ କିଛି ଦୂର ଗଲା ପରେ ଶେଷରେ ଗୁରୁଙ୍କ ଆଶ୍ରମରେ ଯାଇ ଦେଖିଲେ ତାଙ୍କର ଫୁଲଡ଼ାଲିରୁ ରକ୍ତବିନ୍ଦୁ ପଡ଼ୁଛି । ସୈନ୍ୟମାନେ ଡାଲିରୁ ଢାଙ୍କୁଣୀ କାଢ଼ି ଦେବାରୁ ତା' ମଧ୍ୟରେ ରାଜପୁତ୍ରର ଗଣ୍ଡି ମୁଣ୍ଡ ଅଲଗା ପଡ଼ିଥିବାର ଦେଖିଲେ । ଫଳତଃ ରାଜା ଗୁରୁ ବୃହସ୍ପତିଙ୍କୁ ବନ୍ଦୀକରି ନେଇ ଯିବାରୁ ସେ ଆକୁଳ ହୃଦୟରେ ଶନି ଦେବଙ୍କୁ ବନ୍ଦନା କରିବାରୁ ଶନି ସନ୍ତୁଷ୍ଟ ହୋଇ ଆସି ଗୁରୁଙ୍କୁ କହିଲେ ପୂର୍ବେ ସେ ଯେଉଁ ସତ୍ୟ କରିଥିଲେ ଯେ ମାତ୍ର ଗୋଟିଏ ଦିନ ତାଙ୍କର ଅଶୁଭ ଦୃଷ୍ଟି ଗୁରୁଙ୍କ ଉପରେ ପଡ଼ିବ ତାହା ବାସ୍ତବ ହେଲା । ତା'ପରେ ଶନି ରାଜା ବୀରବାହୁଙ୍କୁ ସମସ୍ତ

ଘଟଣା ବୁଝାଇ ତାଙ୍କ ପୁତ୍ରଙ୍କୁ ଜୀବଦାନ ଦେଲେ ଏବଂ ସେହି ଦିନଠାରୁ ଗୁରୁ ବୃହସ୍ପତି ଶନିଙ୍କ କୋପ ଦୃଷ୍ଟିରୁ ମୁକ୍ତି ପାଇ ମହା ଆନନ୍ଦରେ କାଳ ଅତିବାହିତ କଲେ ।

ସେହିପରି ଅଷ୍ଟାଦଶ ଅଧ୍ୟାୟର "ଖନିନେତ୍ର ନୃପତି କଥା" ଅନ୍ୟ ଏକ ଚରିତ । ବିବିଂଶ ନୃପତିଙ୍କ ପୁତ୍ର ଖନିନେତ୍ର ଅପୁତ୍ରକ । ତେଣୁ ଏକଦା ସେ ଯଜ୍ଞ କରିବା ଉଦ୍ଦେଶ୍ୟରେ ଅରଣ୍ୟ ମଧ୍ୟରେ ମୃଗର ଅନୁସନ୍ଧାନ କରୁ କରୁ ହଠାତ୍ ଗୋଟିଏ ମୃଗ ଆସି ତାକୁ ବଧ କରିବା ପାଇଁ ନୃପତିଙ୍କୁ ଅନୁରୋଧ କଲା । ନୃପତି ତାର କାରଣ ଜିଜ୍ଞାସା କରିବାରୁ ସେ କହିଲା ଯେ ଅପୁତ୍ରକ । ତେଣୁ ନିରର୍ଥକ ଦେହଧାରଣ କରିବା ଅପେକ୍ଷା ଯଜ୍ଞ ପାଇଁ ମୃତ୍ୟୁ ବରଣ କରିବା ଶ୍ରେୟସ୍କର । ଠିକ୍ ଏହି ସମୟରେ ଅନ୍ୟ ଏକ ମୃଗ ଧାଇଁ ଆସି ନୃପତିଙ୍କୁ କହିଲା ଯେ, ଅପୁତ୍ରକ ମୃଗ ଯଜ୍ଞ ପାଇଁ ଅପବିତ୍ର, ତେଣୁ ତାକୁ ଯଜ୍ଞ ପାଇଁ ବଧ କରାଯାଉ । ନୃପତି ଦ୍ୱିତୀୟ ମୃଗକୁ କାରଣ ପଚାରିବାରୁ ସେ କହିଲା ଯେ, ତା'ର ବହୁ ପୁତ୍ର କନ୍ୟା ଯାହାଙ୍କୁ କି ସେ ଖାଇବାକୁ ମଧ୍ୟ ଦେଇ ପାରୁନି । ପ୍ରଥମ ମୃଗ କହିଲା ସେ ମରିଗଲେ ତା' ପାଇଁ କାନ୍ଦିବାକୁ କେହି ନାହାନ୍ତି, କିନ୍ତୁ ଦ୍ୱିତୀୟ ମୃଗ ମରିଗଲେ ତା'ର ପୁତ୍ର କନ୍ୟାମାନେ କାନ୍ଦିବେ । କିନ୍ତୁ ପୁତ୍ରବନ୍ତ ମୃଗ କହିଲା, ସେହି ପୁତ୍ର କନ୍ୟାଙ୍କ ଜଞ୍ଜାଳ ଭିତରେ ସେ ଧର୍ମକର୍ମ ସବୁ ହରାଇ ମହା ଦୁଃଖ ପାଉଛି । ତେଣୁ ନୃପତି ତାହାକୁ ବଧ କଲେ ସେ ମୁକ୍ତ ହେବ । ଏହିପରି ଦୁଇ ମୃଗଙ୍କ କଥୋପକଥନ ଭିତରେ ନୃପତି ମହା ସନ୍ଦେହରେ ପଡ଼ିଲେ । କିନ୍ତୁ ସେହିଦିନ ଠାରୁ ପ୍ରତିଜ୍ଞା କଲେ ଯେ ପୁତ୍ନାମ ନର୍କରୁ ରକ୍ଷା ପାଇବା ପାଇଁ ସେ କେବେହେଲେ ପଶୁବଧ କରିବେ ନାହିଁ । ତାହା ପରଠାରୁ ଗୋମତୀ ନଦୀ ତୀରରେ ଘୋର ତପ କରି ଇନ୍ଦ୍ର ଦେବଙ୍କୁ ସନ୍ତୁଷ୍ଟ କରି ବଳାଶ୍ୱ ନାମକ ଗୋଟିଏ ପୁତ୍ର ପାଇଲେ ।

ଷଡ୍‌ବିଂଶ ଅଧ୍ୟାୟର "ଯମଯମୀଙ୍କ ଉପାଖ୍ୟାନ" ଅନ୍ୟ ଏକ ଚରିତ । ଯମ ଓ ଯମୀ ସୂର୍ଯ୍ୟ ଦେବଙ୍କ ପୁତ୍ର ଓ କନ୍ୟା । ଯେତେବେଳେ ଉଭୟ ଯୌବନରେ ପଦାର୍ପଣ କଲେ, ଅପୂର୍ବ ସୁନ୍ଦରୀ ଯମୀ ନିଜ ଭାଇ ଯମର

ସୌନ୍ଦର୍ଯ୍ୟ ଦେଖି କାମପୀଡ଼ାରେ ଅଧୀର ହୋଇ ଯମ ଆଗରେ ନିଜର ଅଭିପ୍ରାୟ ପ୍ରକାଶ କଲା । ଏହା ଶୁଣି ଯମ ନିଜର କାନରେ ହାତ ଦେଇ ଯମୀକୁ ବୁଝାଇବାରେ ଲାଗିଲେ । କିନ୍ତୁ ଯମୀ କହିଲା ଯେ ଦୈତ୍ୟମାନେ ତ ଭଗିନୀମାନଙ୍କୁ ରମଣ କରନ୍ତି, ସେହି ଦୃଷ୍ଟିରୁ ଯମ ମଧ୍ୟ ଯମୀର ପତି ହେବାରେ କୌଣସି ବାରଣ ନାହିଁ । କିନ୍ତୁ ଯମ ବାରମ୍ବାର ଭଗିନୀକୁ ବୁଝାଇବା ଦ୍ୱାରା ସେ ଯେତେବେଳେ ବୁଝିଲା ନାହିଁ, ଯମ କ୍ରୋଧରେ ଅତି ଅତି ଅଜ୍ଞାନ ପ୍ରାୟ ହୋଇ ଯମୀକୁ ପାପୀୟସୀ ବୋଲି କହି ତାକୁ ବାହାରି ଯିବା ପାଇଁ କହିଲେ । ସୂର୍ଯ୍ୟଦେବ ଯମଙ୍କର ଏହି ସୁପୁରୁଷତ୍ୱରେ ମୁଗ୍ଧ ହୋଇ ତାଙ୍କୁ ସଞ୍ଜୀବନୀ ପୁରର ଅଧୀଶ୍ୱର କରାଇଲେ ।

ଏହିପରି ଭାବରେ ବିଭିନ୍ନ କାହାଣୀର ସମ୍ମିଶ୍ରଣରେ 'ସୂର୍ଯ୍ୟପୁରାଣ'ର ଶରୀର ପରିପୁଷ୍ଟ ।

ଏହି ପୁରାଣରେ 'ଅର୍କତୀର୍ଥ'ର ବର୍ଣ୍ଣନା ରହିଛି । କିନ୍ତୁ ଏହି ଅର୍କତୀର୍ଥ କେଉଁଠାରେ, ତାହାର କୌଣସି ସ୍ପଷ୍ଟ ସୂଚନା ନାହିଁ । କେବଳ ଏତିକି ରହିଛି—

'ସମୁଦ୍ରତଟ ବିସ୍ତାର ସହସ୍ର ଯୋଜନ
ଅର୍କତୀର୍ଥ ନାମେ ଖ୍ୟାତ ଅଟେ ତ୍ରିଭୁବନ ।

ଏହି ତୀର୍ଥରେ ଯେଉଁ ବ୍ୟକ୍ତି ପିଣ୍ଡଦାନ କରେ ତାହାର ପିତୃଲୋକ ସ୍ୱର୍ଗ ପୁରରେ ସ୍ଥାନ ପାଆନ୍ତି । ଯେ ସେହି ତୀର୍ଥରେ ସଂକଳ୍ପ କରି ସ୍ନାନ କରେ ସେ ତାହାର ସପ୍ତପୁରୁଷଙ୍କୁ ନର୍କରୁ ଉଦ୍ଧାର କରେ ।

ସୂର୍ଯ୍ୟପୁରାଣ'ର ବିଭିନ୍ନ ଅଂଶରେ ଏହି ପୁରାଣ ଶ୍ରବଣର ଉପାଦେୟତା ଏବଂ ସୂର୍ଯ୍ୟପୂଜାର ମହତ୍ତ୍ୱ ପ୍ରତିପାଦନ କରାଯାଇଛି । ଶତଭାର ସ୍ୱର୍ଣ୍ଣଦାନ, କୋଟିଏ ଧେନୁଦାନ, କୋଟିଏ କନ୍ୟାଦାନ କଲେ ଯେତିକି ଫଳ ମିଳେ, ମହାମହିମ ସୂର୍ଯ୍ୟଦେବଙ୍କ ଆରାଧନା କଲେ ସେତିକି ଫଳ ମିଳେ । ଯେଉଁ ବ୍ୟକ୍ତିର ଅଷ୍ଟକୁଷ୍ଠ ବ୍ୟାଧି ହୋଇଥିବ ସେ ଯଦି ରବିବାର ଦିନ ସୂର୍ଯ୍ୟଙ୍କ

ବିଧିମତେ ଆଚରଣ କରି ବ୍ରାହ୍ମଣ ଡକାଇ ହୋମ କରି ସେହି ଭସ୍ମକୁ ନେଇ କୁଷ୍ଠରେ ଲେପନ କରିବ । ତେବେ ସେହି କୁଷ୍ଠ ଲୋପ ପାଇବ । ଯେଉଁ ବ୍ୟକ୍ତି ଅନ୍ଧ, ସେ ରବିବାର ଦିନ ଉପବାସ କରି ସୂର୍ଯ୍ୟଦେବଙ୍କୁ ଅର୍ଘ୍ୟ ଦେଇ ସେହି ଅର୍ଘ୍ୟଜଳ ଚକ୍ଷୁରେ ମାରିଲେ ଦିବ୍ୟଚକ୍ଷୁ ଲଭ କରିବ । ଏହି ପୁରାଣ ଶ୍ରବଣ ଓ ପଠନରେ ମନୁଷ୍ୟର ଆୟୁଷ ବୃଦ୍ଧି ହୁଏ, ଧନସମ୍ପଦରେ ଗୃହ ପୂର୍ଣ୍ଣ ହୋଇଯାଏ, ଅପୁତ୍ରକ ଦୋଷ କଟିଯାଏ ।

ଓଡ଼ିଆ ଭାଷାରେ ଅଷ୍ଟାଦଶ ପୁରାଣ ରଚନା କରିବା ଦିଗରେ 'ସୂର୍ଯ୍ୟ-ପୁରାଣ'ର ରଚନା ଏକ ମହତ୍ତ୍ୱପୂର୍ଣ୍ଣ ପଦକ୍ଷେପ । 'ପୁରାଣ' ସାହିତ୍ୟର ବିଭିନ୍ନ ଧର୍ମ ନେଇ ଏହାର ଶରୀର ବିମଣ୍ଡିତ । କିନ୍ତୁ ପୁରାଣକାରଙ୍କ ପରିଚୟ ଅନ୍ଧ-କାରରେ ରହିଯିବା ନିଶ୍ଚିତରୂପେ ଦୁଃଖର ବିଷୟ । କାରଣ ଯେଉଁ 'ସୂର୍ଯ୍ୟ-ପୁରାଣ'କୁ ନେଇ ଏହି ପ୍ରବନ୍ଧଟି ଆଲୋଚିତ, ତହିଁରେ କୌଣସିଠାରେ ଲେଖକଙ୍କର ନାମ ନାହିଁ । କେବଳ ବନ୍ଦନାରେ ଲେଖକ ଲେଖିଛନ୍ତି—

"ସୂର୍ଯ୍ୟପୁରାଣ ବିଷୟ ସରଳ ଭାଷାରେ
ଲେଖିବାକୁ ମନ ବଳି ଅଛଇ ମୋହରେ ।
ଆଜନ୍ମ ମୂରୁଖ ମୁହିଁ ନ ଜାଣଇ ଧର୍ମ
କାହୁଁ ପାଇବଇଁ ସାଧୁସନ୍ଥ ଗ୍ରନ୍ଥ ମର୍ମ ।"

ଏଭଳି ଭାବରେ ବନ୍ଦନାରେ ବାରମ୍ବାର କହିଲେ ସୁଦ୍ଧା କବି ନିଜର ପରିଚୟ କୌଣସିଠାରେ ଦେଇ ନାହାନ୍ତି । ସେ ଯାହା ହେଉ 'ସୂର୍ଯ୍ୟ ପୁରାଣ', ଓଡ଼ିଆରେ ଅଷ୍ଟାଦଶ ପୁରାଣର ରଚନା ପାଇଁ ଅନ୍ୟତମ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ । ଏହା ନିଶ୍ଚିତ ରୂପେ ଗ୍ରହଣଯୋଗ୍ୟ ।

# ମତ୍ସ୍ୟପୁରାଣ—

## ଏକ ବିଚାରଣା

ଅଧ୍ୟାପକ ଶ୍ରୀ ଭାସ୍କରଚନ୍ଦ୍ର ଖଟାଇ, ଏମ୍.ଏ

ପୂର୍ବକାଳରେ ଗୁରୁଧର୍ମ ପ୍ରଚଳିତ ହେବାପରେ ମୂର୍ତ୍ତିପୂଜା ଆରମ୍ଭ ହେଲା ଏବଂ ଏହି ମୂର୍ତ୍ତିପୂଜାର ବିଷୟାବଳୀ ଓ ଫଳଶ୍ରୁତିମାନ କିମ୍ବଦନ୍ତୀ ଆକାରରେ ଲୋକମୁଖରେ ପ୍ରଚଳିତ ହେବାକୁ ଲାଗିଲା । ଫଳରେ ଏହି କଥିତ କିମ୍ବଦନ୍ତୀ-ମାନଙ୍କର ଏକତ୍ରୀକରଣରୁ ହିଁ ପୁରାଣର ସୃଷ୍ଟି ଯାହାର ଜ୍ୱଳନ୍ତ ପ୍ରମାଣ 'ତୈତ୍ତିରୀୟ ବ୍ରାହ୍ମଣ' ଓ 'ଶତପଥ ବ୍ରାହ୍ମଣ'ରୁ ହିଁ ମିଳିଥାଏ ।

କିମ୍ବଦନ୍ତୀମାନଙ୍କର ଏକତ୍ରୀକରଣ ଦ୍ୱାରା ଯେଉଁ ପୁରାଣ ସୃଷ୍ଟି ହେଲା ତାହା ପୌରାଣିକ ଶୃଙ୍ଖଳାଦ୍ୱାରା କିପରି ଲୋକଲୋଚନରେ ପ୍ରକାଶିତ ହେଲା ତାର ଲକ୍ଷଣ ନିର୍ଦ୍ଦେଶ କରିବାକୁଯାଇ କୁହାଯାଇଛି—

> "ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶମନ୍ୱନ୍ତରାଣିଚ ।
> ବଂଶାନୁ ଚରିତଂ ଚେତି ପୁରାଣଂ ପଞ୍ଚ ଲକ୍ଷଣମ୍ ।"

ପୁରାଣରେ ସର୍ଗ ସୃଷ୍ଟି, ପ୍ରତିସର୍ଗ (ପ୍ରଳୟ), ବଂଶ (ବଂଶ ବିସ୍ତାର), ମନ୍ୱନ୍ତର (ଯୁଗାଂଶ ବିସ୍ତାର) ଓ ବଂଶାନୁଚରିତ (ବଂଶର ଇତିହାସ) ପାଞ୍ଚଗୋଟି ଲକ୍ଷଣ ଥାଏ ।

ଉପର୍ଯ୍ୟୁକ୍ତ ଲକ୍ଷଣ ବ୍ୟତୀତ ଜଗନ୍ନାଥ ଦାସଙ୍କ ଭାଗବତ, ପୁରାଣରେ ଲକ୍ଷଣ ସମ୍ବନ୍ଧରେ ସୂଚାଇଦିଏ—

"ସର୍ଗ ବିସର୍ଗ ବୃତ୍ତିରକ୍ଷା । ହେତୁ ଯେ ମନ୍ୱନ୍ତର ସଂଖ୍ୟା ॥
ବଂଶାନୁଚରିତ ଯେ ସଂସ୍ଥା । ଆଶ୍ରୟ ବଂଶର ବ୍ୟବସ୍ଥା ॥
ଏ ଦଶ ଲକ୍ଷଣରେ ଯୁକ୍ତ । ବଡ଼ ପୁରାଣ ନାମେ ଖ୍ୟାତ ॥"

ପୁରାଣମାନ ମୂଳତଃ ସଂସ୍କୃତ ଭାଷାରେ ଲିଖିତ ହେଲେ ମଧ୍ୟ ଆଧୁନିକ କାଳରେ ବହୁପୁରାଣ ଆଞ୍ଚଳିକଭାଷାମାନଙ୍କରେ ଅନୁବାଦିତ ହୋଇ ବହୁଜନପ୍ରିୟ ହୋଇପାରିଛି ।

ଆଧୁନିକ ଯୁଗରେ ପୁରାଣ ବିଷୟରେ ସାଧାରଣତଃ ଲୋକମାନେ ଅଜ୍ଞ ନୁହନ୍ତି । ସେମାନେ କାହାଣୀ କାହୁଁ ପୌରାଣିକ ତତ୍ତ୍ୱ ଜାଣିଥାନ୍ତି ଏବଂ ହୃଦୟଙ୍ଗମ କରିଥାନ୍ତି ।

ପୁରାଣମାନଙ୍କୁ ସାଧାରଣତଃ ଦୁଇଶ୍ରେଣୀରେ ବିଭକ୍ତ କରାଯାଇଥାଏ । ଯଥା:—ମହାପୁରାଣ ଏବଂ ଉପପୁରାଣ । ଏହାବ୍ୟତୀତ ଅନେକଗୁଡ଼ିଏ ଅତିରିକ୍ତ ପୁରାଣ ମଧ୍ୟ ମିଳେ । ମହାପୁରାଣର ସଂଖ୍ୟାପରି ଉପପୁରାଣର ସଂଖ୍ୟା ମଧ୍ୟ ଅଠର ଖଣ୍ଡ ।

ଅଷ୍ଟାଦଶ ପୁରାଣର ନାମୋଲ୍ଲେଖ କରିବା ନିମନ୍ତେ ପଣ୍ଡିତମାନେ ନିମ୍ନଲିଖିତ ଶ୍ଳୋକଟି ପଢ଼ିଥାନ୍ତି—

'ମ' ଦ୍ୱୟଂ 'ଭ' ଦ୍ୱୟଂ ଚୈବ 'ବ୍ର' ତ୍ରୟଂ 'ବ' ଚତୁଷ୍ଟୟମ୍ 'ଅ' 'ନା' 'କୂ' 'ସ୍କ' 'ପ' 'ଲିଂ' 'ଗ' 'ନ' ପୁରାଣାନି ବିଦୁର୍ବୁଧାଃ ।

ଯଥା:—ମତ୍ସ୍ୟପୁରାଣ, ମାର୍କଣ୍ଡେୟ ପୁରାଣ, ଭାଗବତ, ଭବିଷ୍ୟ ପୁରାଣ, ବ୍ରହ୍ମାଣ୍ଡ ପୁରାଣ, ବ୍ରହ୍ମ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ବାୟୁ ପୁରାଣ, ବାମନ ପୁରାଣ, ବରାହପୁରାଣ, ବିଷ୍ଣୁ ପୁରାଣ, ଅଗ୍ନି ପୁରାଣ, ନାରଦୀୟ ପୁରାଣ, କୂର୍ମ ପୁରାଣ, ସ୍କନ୍ଦପୁରାଣ, ପଦ୍ମ ପୁରାଣ, ଲିଙ୍ଗ ପୁରାଣ, ଗରୁଡ଼ ପୁରାଣ ।

ବିଭିନ୍ନ ସମାଲୋଚକଙ୍କ ମତରେ ପ୍ରାୟ ଅଧିକାଂଶ ପୁରାଣମାନଙ୍କର ସମୟ ନିର୍ଦ୍ଧାରିତ ହୋଇଥିଲେ ମଧ୍ୟ ମତ୍ସ୍ୟପୁରାଣର ନିର୍ଦ୍ଦିଷ୍ଟକାଳ ନିରୂପଣ ସମ୍ପର୍କରେ ସେମିତି କିଛି ଉଲ୍ଲେଖଯୋଗ୍ୟ ପ୍ରମାଣ ମିଳେନାହିଁ । ମତ୍ସ୍ୟ ପୁରାଣରେ କବି ପ୍ରାଚୀନ ପରମ୍ପରାକୁ ରକ୍ଷାକରିବାକୁ ଯାଇ ମଙ୍ଗଳାଚରଣରେ ପୁରାଣ ଆରମ୍ଭ କରି ପ୍ରତ୍ୟେକ ଅଧ୍ୟାୟ ଶେଷରେ ନିଜ ନାମର ଭଣିତା କରିଛନ୍ତି ।

ପୁରାଣମାନଂକ ମଧ୍ୟରୁ ବାୟୁ ଓ ମତ୍ସ୍ୟ ପୁରାଣକୁ ଗବେଷକମାନେ ପୁରାତନ ବୋଲି ପ୍ରମାଣ କରିଛନ୍ତି । ଉଇଲ୍‌ସନ୍ ସାହେବଂକ ମତରେ ମତ୍ସ୍ୟ ପୁରାଣ ପଦ୍ମ ପୁରାଣର ପରେ ସୃଷ୍ଟି ହୋଇଛି । ମାତ୍ର ବଂକିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ଏହି ମତର ଖଣ୍ଡନ କରିଛନ୍ତି । ବ୍ରହ୍ମ ପୁରାଣରେ କୋଣାର୍କ, ପୁରୀ, ଭୁବନେଶ୍ୱର ତୀର୍ଥମାନଂକର ବିଷୟ, ସ୍କନ୍ଦ ପୁରାଣର ଉତ୍କଳ ଖଣ୍ଡରେ ଉତ୍କଳ ତୀର୍ଥମାନଂକ ବିଷୟ, ଗରୁଡ଼ ପୁରାଣରେ ତନ୍ତ୍ରବିଦ୍ୟା, ଜ୍ୟୋତିଷ, ସାମୁଦ୍ରିକ ଓ ଔଷଧ ବିଷୟ ଉଲ୍ଲେଖ ରହିଛି । ମତ୍ସ୍ୟ ପୁରାଣରେ ଶ୍ରୀକ୍ଷେତ୍ରର ଐତିହ୍ୟ ବର୍ଣ୍ଣନା କରାଯାଇଛି । ମତ୍ସ୍ୟ ପୁରାଣକୁ ଆଦି ପୁରାଣ କୁହାଯାଇ-ଥାଏ । ମତ୍ସ୍ୟ ପୁରାଣର ଶ୍ଳୋକ ସଂଖ୍ୟା ଚଉଦହଜାର ଏବଂ ଏହାର ପ୍ରଣେତା ମୁନି ହେଉଛନ୍ତି ବ୍ୟାସ । ମତ୍ସ୍ୟ ପୁରାଣରେ ସ୍ଥୂଳତଃ ପ୍ରଳୟ ବର୍ଣ୍ଣନା ଓ ପ୍ରଳୟାନ୍ତରେ ସୃଷ୍ଟିର ବିକାଶ ସମ୍ବନ୍ଧରେ ବିଶଦଭାବେ ଆଲୋଚନା କରାଯାଇଛି । ଓଡ଼ିଆ ଭାଷାରେ ଲିଖିତ ମତ୍ସ୍ୟପୁରାଣ ବିପ୍ରକବି କାମପାଳଂକ କୃତ ଓ ଡାକ୍ତର ସ୍ୱର୍ଗତ ନାରାୟଣ ଚନ୍ଦ୍ର ଦାନଂକ ଦ୍ୱାରା ସଂଶୋଧିତ ।

ଏଥିରେ ପାରଂପାରିକ ରୀତିରେ କବି ବନ୍ଦନା କରିବାକୁ ଯାଇ ନୀଳାଦ୍ରୀ-ବିହାରୀ ଶ୍ରୀ ଶ୍ରୀ ଜଗନ୍ନାଥଙ୍କୁ ପରଂବ୍ରହ୍ମରୂପେ କଳ୍ପନା କରି ଲେଖିଛନ୍ତି—

"ନମସ୍ତେ ହେ ଜଗନ୍ନାଥ ପରଂବ୍ରହ୍ମ ମୂର୍ତ୍ତି ।
ନବ ରତ୍ନରେ ଜଡ଼ିତ ଅଙ୍ଗ ମେଘକାନ୍ତି ।"

କବି ପରଂବ୍ରହ୍ମଙ୍କର କାନ୍ତିକୁ ମେଘ ସଦୃଶ୍ୟ କଳ୍ପନା କରିଅଛନ୍ତି । ନିରାକାର ପରଂବ୍ରହ୍ମଂକର ସାକାର ସ୍ୱରୂପ ଯେ ଜଗନ୍ନାଥ ତାହା କବିଂକର ବର୍ଣ୍ଣନାର ବିଷୟବସ୍ତୁ ।

ଶ୍ରୀ ଜୟଦେବ ଗୋ.ସ୍ୱାମୀ ତାଂକର ରଚିତ ଗୀତଗୋବିନ୍ଦରେ ଦଶାବତାର ବର୍ଣ୍ଣନା କଲବେଳେ ସେ ଭଗବାନଙ୍କୁ ପ୍ରଥମେ ମତ୍ସ୍ୟ ଅବତାର ରୂପେ ବର୍ଣ୍ଣନା କରିଥିଲେ ।

ମତ୍ସ୍ୟ ପୁରାଣରେ ରାଜା ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କୁ ପ୍ରଥମରୁ ପୁରାଣ ଚରିତମାନ ଜାଣିବାକୁ ଜିଜ୍ଞାସା କରିବା ସହିତ ଶେଷରେ ମହାପ୍ରଳୟ ଜଳରେ ନାରାୟଣ କିପରି ମତ୍ସ୍ୟ ଅବତାର ଗ୍ରହଣ କରିଥିଲେ ପ୍ରଶ୍ନ କରିବାରୁ ନାରଦ ସମସ୍ତ ପୁରାଣ ସାରର ସଂକ୍ଷିପ୍ତ ସୂଚନାଦେଇ ମତ୍ସ୍ୟ ପୁରାଣର ମହିମା ରାଜାଂକ କୌତୁହଳ ମେଣ୍ଟାଇବା ପାଇଁ ନିମ୍ନୋକ୍ତମତେ ବର୍ଣ୍ଣନା କରିଛନ୍ତି—

" ନାରଦ ବୋଇଲେ ପୃଥ୍ୱୀ ହେଲା ଯେଉଁ କାଳେ ।
ବହୁ ପୁରାଣ ହୋଇଛି ଏହି ଭୂମଣ୍ଡଳେ ॥
ବ୍ରହ୍ମାଣ୍ଡ ପୁରାଣେ ପଢେ଼ ବ୍ରହ୍ମାଣ୍ଡର ଗତି ।
ବ୍ରହ୍ମବୈବର୍ତ୍ତ ପୁରାଣେ ବ୍ରହ୍ମ ଉତପତ୍ତି ॥
ଇଦଂ ଶାମ୍ବ ପୁରାଣ ଯେ ଅଟେ ବାକ୍ୟ ସାର ।
ପାପକୁ ବିଷ୍ଣୁ ପୁରାଣ ଯେସନ୍ତେ ଅଗ୍ନି ଶର ॥
ଶିବ ପୁରାଣେ ପଢ଼ଇ ଶିବଙ୍କ ଚରିତ ।
ଆଦ୍ୟ ପୁରୁଷ ଅଟନ୍ତି ପ୍ରଭୁ ବିଶ୍ୱନାଥ ॥
ତାହା ଶୁଣିଲେ ରାଜାହେ ଶିବଲୋକ ପାଇ ।
ରୁଦ୍ର ରୂପେ ରୁଦ୍ରଗଣ ସଙ୍ଗେ ବିହରଇ ॥
ସ୍କନ୍ଦ ପୁରାଣ ଯେ ପଦ୍ମ ପୁରାଣ ପୋଥିରେ ।
ଗଙ୍ଗା ମାହାତ୍ମ୍ୟ ଲିଖିତ ହୋଇଛି ତହିଁରେ ॥
ପାପ ନାଶନ ଅଟଇ ବିଷ୍ଣୁ ପଦ ମାନ ।
ଶାମ୍ବ ପୁରାଣ ଶୁଣିଲେ ପାପ ବିମୋଚନ ॥

ମତ୍ସ୍ୟ ପୁରାଣେ ଅମୃତ ପରାୟେ ଚରିତ ।
ମୀନ ଅବତାର ହେଲେ ପ୍ରଳୟେ ଅଚ୍ୟୁତ ॥
କୂର୍ମ ପୁରାଣରେ କୂର୍ମ ଅବତାର ହରି ।
ବରାହ ପୁରାଣେ ପୃଥ୍ୱୀ ଦନ୍ତାଗ୍ରରେ ଧରି ॥
ନୃସିଂହ ପୁରାଣେ ହେଲେ ନରସିଂହ ରୂପ ।
ନଖେ ବିଦାରିଲେ ପ୍ରଭୁ ହିରଣ୍ୟକଶ୍ୟପ ॥
ବାମନ ପୁରାଣେ ହରି ବାମନାବତାର ।
କଳିଙ୍କ ଛନ୍ଦ ରଖିଲେ ପାତାଳର ପୁର ॥
ମାର୍କଣ୍ଡ ପୁରାଣେ ପାପ ପୁଣ୍ୟ କଥା ଯାକ ।
ପୁଣ୍ୟ ଜନଙ୍କୁ ଅମୃତ ପାପିଙ୍କୁ ନରକ ॥
ଯମ ପୁରାଣ ମହିମା ଅଟେ ସେ ପ୍ରକାର ।
ପୁଣ୍ୟକୁ ଉତ୍ତମ ସ୍ଥାନ ପାପିକୁ ପ୍ରହାର ।
ଶ୍ରୀଭାଗବତ ଅଟଇ ଅମୂଲ୍ୟ ପୁରାଣ ।
ଶ୍ରଦ୍ଧାରେ ଶୁଣନ୍ତି ତାକୁ ଭକ୍ତ ପ୍ରାଣୀଗଣ ॥
ଅଗ୍ନି ପୁରାଣେ ଭକତ ଅଗ୍ନିର ଚରିତ ।
ଯେଉଁ ମହିମା ବହନ୍ତି ପ୍ରଭୁ ଦେବହୁତ ॥

× × ×

ଶୁଣି ରାଜା ବୋଲେ ମତ୍ସ୍ୟ ପୁରାଣକୁ କୁହ ।
ତାହା ଶୁଣିଣ ପବିତ୍ର ହେବ ମୋର ଦେହ ॥
ମହା ପ୍ରଳୟ ଜଳରେ ନାରାୟଣ ପ୍ରଭୁ ।
କିମ୍ପା ମତ୍ସ୍ୟ ରୂପ ହୋଇ ବିହରିଲେ ସବୁ ॥

× × ×

ନାରଦ ବୋଇଲେ ତୁହି ଧନ୍ୟ ନୃପମଣି ।
ନାନା ରସରୁ ବାଛିଲୁ ଅମୃତର ବାଣୀ ॥

ଏହି ପ୍ରଳୟର ଆରମ୍ଭ କାଳ ବ୍ରହ୍ମାଙ୍କର ଆୟୁ ଶେଷ ସହିତ ସଂଯୋଜିତ ହୋଇ ଅଛି । କବି ପ୍ରଳୟର ପୂର୍ବାଭାଷ ଦେବାକୁ ଯାଇ କହିଛନ୍ତି ଦ୍ୱାଦଶ ସୂର୍ଯ୍ୟ ଓ ଷୋଡ଼ଶ ଚନ୍ଦ୍ର ନିରଞ୍ଜନଙ୍କ ଆଦେଶରେ ଦାବାଗ୍ନି ପ୍ରଖର କିରଣ ପ୍ରଦାନ କରି ଜୀବଜଗତକୁ ଧ୍ୱଂସ କଲେ । ଫଳରେ ବିନା ବୃଷ୍ଟିରେ ଶସ୍ୟ ଉତ୍ପାଦିତ ହୋଇ ପାରିଲି ନାହିଁ ।

କିରଣ ଜ୍ୱାଳାରେ ସମସ୍ତ ଉଦ୍ଭିଦ ଜଗତ ଜଳିପୋଡ଼ି ନଷ୍ଟ ହୋଇ ଗଲା । ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ ଦେଖାଗଲା । ସମୁଦ୍ରମାନ ଶୁଷ୍କ ହୋଇଗଲା । ନିରଞ୍ଜନଙ୍କ ମୁଖ ନିର୍ଗତ ଅଗ୍ନିରେ ଖଣ୍ଡ ପାତାଳ ଦହନ ହେଲା । ଧ୍ରୁବକୋର ଏହି ପ୍ରଳୟ ଓ ପ୍ରଳୟାନ୍ତର ଅବସ୍ଥାକୁ ପ୍ରାଣୀର ଜନ୍ମ ମରଣ ସହିତ ତୁଳନା କରିଛନ୍ତି । ପ୍ରଳୟକୁ ମୃତ୍ୟୁ ଓ ସୃଷ୍ଟି ସର୍ଜନାକୁ ଜୀବର ଜନ୍ମ ସହିତ ତୁଳନା କରାଯାଇଛି । ଏହି କାର୍ଯ୍ୟ କେବଳ ନିରଞ୍ଜନଙ୍କ ଦ୍ୱାରା କାଭଳି ସମ୍ଭବ ହୋଇଥିଲା ସେ ବିଷୟରେ କବି ଲେଖିଛନ୍ତି—

"ନିରଞ୍ଜନ ମୁଖରୁ ଅଗ୍ନି ହେଲା ଜାତ ।
ସେ ଦହିଲା ନାଗଲୋକ ପାତାଳ ସହିତ ।।
କୁଟି କୁଟି ଭସ୍ମ ଦିଶେ ଗିରିମାନ ପୋଡ଼ି ।
ଥୋକେ ଭସ୍ମ ଅନ୍ତରୀକ୍ଷେ ଯାଇଅଛି ଉଡ଼ି ।।
ପୃଥ୍ୱୀ ଗୁଡ଼ି ଗୁଳିଗଲେ ଯହୁଁ ନାରାୟଣ ।
ଆତ୍ମାରୂପେ ବ୍ରହ୍ମ ଥିଲେ ହୋଇଲେ ସେ ଲୀନ ।।
ସୂର୍ଯ୍ୟ ଅସ୍ତ ହେଲେ ଯେହ୍ନେ ରଶ୍ମି ପ୍ରକାଶଇ ।
ତେଜ ଘେନିକରି ସେହ୍ନେ ନିଜ ପୁରେ ଯାଇ ।।
ତେସନେ ଶ୍ରୀ ନାରାୟଣ ପୃଥ୍ୱୀ ପୂରିଥିଲେ ।
ସକଳ ଆତ୍ମାକୁ ଘେନି ନିଜ ପୁରେ ଗଲେ ।।

ପ୍ରଳୟ ବର୍ଣ୍ଣନାରେ କବି କହିଛନ୍ତି ପ୍ରଳୟ ଜଳ ସମସ୍ତ ଲୋକଙ୍କୁ ଅତିକ୍ରମ କରି ନିରଞ୍ଜନଙ୍କ ନିକଟରେ ପ୍ରବେଶ କଲା । ନିରଞ୍ଜନ ଶୂନ୍ୟଦେହ

ଓ ଲୋକାତୀତ । ଆଧ୍ୟାତ୍ମିକ ଭାବଧାରାରେ କବି ପ୍ରଳୟକୁ ଓ ପ୍ରଳୟାନ୍ତରକୁ ଜନ୍ମ ମୃତ୍ୟୁ ସହ ତୁଳନା କରି ଶୂନ୍ୟବାଦର ସୂଚନା ଦେଇଛନ୍ତି । ଜଳ ସଦା ଶୀତଳ ଓ ଶ୍ଳେଷ କାରକ । ସ୍ୱାଭାବିକ ଭାବରେ ଜଣାଯାଏ ମନୁଷ୍ୟ ମଳ ଧୂଆଁରୁ ତାର ସର୍ବାଙ୍ଗ ଶୀତଳ ଅନୁଭୂତ ହୁଏ । କଫ କଣ୍ଠ ରୁଦ୍ଧ କରେ । ଶ୍ୱାସ ପ୍ରଶ୍ୱାସ ମନ୍ଥର ହୋଇ କ୍ରମେ ସ୍ଥିର ହୋଇଯାଏ । ଏହି ଅବସ୍ଥାରେ ନୟନଯୁଗଳ ମଧ୍ୟ ସ୍ପନ୍ଦନହୀନ ହୋଇଯାଏ । ଧ୍ୟାନସ୍ଥ ହେଲେ ମନୁଷ୍ୟ ନିଜର ଶାରୀରିକ ସ୍ପର୍ଶ ଅନୁଭବ କରେନାହିଁ । ଚକ୍ଷୁ ସ୍ଥିର ଓ ଶ୍ୱାସ ପ୍ରଶ୍ୱାସ ବନ୍ଦ ହୋଇଯାଏ । ପ୍ରାଣାୟାମ ସୂତ୍ର ଏହିପରି । ଏହି ଅବସ୍ଥାରେ କୁହାଯାଏ—

"ଅଛୁ କି ନାହୁଁ ନିଜ ଦେହି ।
ଉଭୟ ମତ ନ ଜାଣଇ ॥

ଯୋଗଭ୍ରଷ୍ଟ ହେଲେ ପ୍ରାଣୀର ମୃତ୍ୟୁ ହୁଏ । କାରଣ ପ୍ରଣାୟାମ ସୂତ୍ରରେ ପବନକୁ ରୁଦ୍ଧ କରିବା ଦ୍ୱାରାହିଁ ପବନ ବହୁ ସମୟ ଧରି ସ୍ଥିର ହୋଇଯାଏ । ଉପରି ଅବସ୍ଥାରେ ନିୟମର ବ୍ୟତିକ୍ରମ ହେଲେ ବାୟୁ ଶରୀର ମଧ୍ୟରେ ଠିକ୍ ସମୟରେ ସଞ୍ଚାଳିତ ହୋଇ ନ ପାରିବାରୁ ପ୍ରାଣ ନାଶ ଘଟେ । ସେହିପରି ମନୁଷ୍ୟର ମୃତ୍ୟୁବେଳେ ତାର ପ୍ରାଣବାୟୁ ଶରୀରରୁ ଅନ୍ତର ହେବା ପରେ ଆଉ ଫେରି ଆସି ପାରେ ନାହିଁ । ଅନେକ ମଧ୍ୟ ପ୍ରାଣାୟାମ ସୂତ୍ରରେ ଇଚ୍ଛାମୃତ୍ୟୁକୁ ସ୍ୱାଗତ କରନ୍ତି ଯେହେତୁ ସେମାନଙ୍କର ଆଧ୍ୟାତ୍ମିକ ଚିନ୍ତାଧାରା ସଦାସର୍ବଦା ଜାଗ୍ରତ ଥାଏ । କିନ୍ତୁ ସାଧାରଣତଃ ପ୍ରାଣୀର ଆଧ୍ୟାତ୍ମିକ ଚିନ୍ତାଧାରା ମୃତ୍ୟୁବେଳେ ନଥାଏ । ତେଣୁ ପ୍ରାଣ ପବନର ପ୍ରତ୍ୟାଗମନ ପଥ ସେମାନଙ୍କୁ ଅଜଣା ଥାଏ ।

ନିରଞ୍ଜନ ଯେ ସେ ଶୂନ୍ୟ ପୁରୁଷ । ସେ ପରମମଣ୍ଡଳରେ ଥାଆନ୍ତି ଏବଂ ସେ ଅବିନାଶୀ ବ୍ରହ୍ମ । ସୂର୍ଯ୍ୟଙ୍କପରି ତାଙ୍କର ବର୍ଣ୍ଣ ।

ଏହି ପ୍ରଳୟରେ ଜଣେ ମାତ୍ର ତେଜବନ୍ତରାଜା ବଞ୍ଚିଥିଲେ ଯେ କି ସତ୍ୟବ୍ରତ । ସତ୍ୟବ୍ରତର ଉପାଖ୍ୟାନରେ କବି ବର୍ଣ୍ଣନା କରିବାକୁ ଯାଇ ମତ୍ସ୍ୟ ପୁରାଣର ଦ୍ୱିତୀୟ ଅଧ୍ୟାୟରେ କହିଛନ୍ତି—

"ଆକାଶରେ ପ୍ରାଣ ଧେନାଛନ୍ତି ସୁରଗଣେ ।
ମନୁଷ୍ୟରେ ବ୍ରହ୍ମାଣ୍ଡରେ ଅଛୁ ଏକ ଜଣେ ।।

× × ×

ନାରଦ କହନ୍ତି ସତ୍ୟବ୍ରତ ନରପତି ।
ଜନ୍ମରୁ ବିଷ୍ଣୁ ଚରଣେ ତାହାର ଭକତି ।।
ବିଷ୍ଣୁ ବିନା ଆନକୁ ନ ଜାଣଇ ରାଜା ।
ସର୍ବଦା ବିଷ୍ଣୁଙ୍କ ସେହୁ କରୁଥାଏ ପୂଜା ।।

× × ×

ନାରାୟଣ ମୂରତିକୁ ସେହୁ କରେ ଧ୍ୟାନ ।
ନାରାୟଣ ନାମ ତାର ହୃଦୟ ରତନ ।।
ଲୋଭ-ମୋହ-କାମ-କ୍ରୋଧ ତେଜିଲା ସମସ୍ତ ।
ଗୋରୁଙ୍କ ପ୍ରାୟ ସକଳ ସହେ ସେ ନରତ ।।

କବି କାମପାଳଙ୍କ ଦୃଷ୍ଟିରେ ସତ୍ୟବ୍ରତରାଜା ପ୍ରଳୟରେ ନଷ୍ଟ ହୋଇ ନଥିଲେ । ସତ୍ୟ ଯା'ର ବ୍ରତ ସେହି ହିଁ ସତ୍ୟବ୍ରତ । ସତ୍ତ୍ୱ କେବଳ ଅନୁଭବ ଦ୍ୱାରାହିଁ ଉପଲବ୍ଧି କରାଯାଇଥାଏ । ତେଣୁ ଏହି ସତ୍ତ୍ୱହିଁ ହେଉଛି ଶୂନ୍ୟପୁରୁଷ, ବିଷ୍ଣୁ ସ୍ୱରୂପ ଓ ସତ୍ତ୍ୱଗୁଣ ସମ୍ପୂର୍ଣ୍ଣ ।

ମତ୍ସ୍ୟପୁରାଣ ପ୍ରଳୟରେ ରଜ ଓ ତମୋଗୁଣର ବିଲୀନହେବା ପ୍ରମାଣ କରେ । ଏଣୁ ସତ୍ୟବ୍ରତଙ୍କୁ ସାଧାରଣ ରାଜାଭାବରେ ଏଠାରେ ବର୍ଣ୍ଣନା କରାଯାଇନାହିଁ । ପ୍ରଳୟରେ ସତ୍ୟବ୍ରତଙ୍କୁ ନାରାୟଣ ରକ୍ଷା କରିବା ପାଇଁ ତାଙ୍କ ଚକ୍ର ସୁଦର୍ଶନକୁ କପର ପ୍ରେରଣ କରିଥିଲେ ସେ ସମ୍ବନ୍ଧରେ କବି ଲେଖିଛନ୍ତି—

"ରାଜାର ଆରତ ଜାଣି ପ୍ରଭୁ ନାରାୟଣ ।
ଆଜ୍ଞା ଦେଲେ ବେଗେ ଯାଅ ଚକ୍ର ସୁଦର୍ଶନ ।।
ମୋହର ଭକତ ସତ୍ୟବ୍ରତ ନୃପବର ।
ଦକ୍ଷିଣ ସମୁଦ୍ର ଜମ୍ବୁଦ୍ୱୀପେ ତାର ଘର ।।

କଣ୍ଟକର ନାମ ସେହୁ ବସ୍ତ୍ର ନଗ ଦେଲ ।
ଏକାନ୍ତ ହୃଦୟରେ ସେ ମତେ ସେ ଚର୍ଚ୍ଚିଲ ॥
ସେ ରଜା ସୂର୍ଯ୍ୟ ବଂଶରେ ହେଲା ଉତ୍ପନ୍ନ ।
ଭକତଙ୍କ ବର ସେହୁ ମୋହର ଜୀବନ ॥

ଭଗବାନ୍ ଭକ୍ତାଧୀନ । ସେ ଭକ୍ତର ଭକ୍ତିଦ୍ୱାରା ବଶୀ ହୋଇଥାନ୍ତି । ମତ୍ସ୍ୟପୁରାଣରେ ନାରାୟଣ ଏ ବିଷୟରେ କହନ୍ତି—

"ତିନିପୁରେ ତାର ତହୁଁ ବଡ଼ ଭକ୍ତ ନାହିଁ ।
ନିତ୍ୟ ତାର ସନ୍ନିଧିରେ ବସି ରହିଥାଇଁ ॥
× × ×
ସବୁ ଭକ୍ତଙ୍କ ମଧ୍ୟରେ ନକ୍ଷତ୍ରର ସମ ।
ଭକତରେ ଉତ୍ତମ ସେ ମନୁଷ୍ୟରେ ସୋମ ॥
ସକଳ ହିଁ ନାଶଯିବ ପୃଥ୍ୱୀ ହେବ ଦହ ।
ମୋର ଭକତ ପ୍ରଳୟ ନପାରିବ ସହ ॥
ଏକ ସୂର୍ଯ୍ୟ କିରଣ ତୁ ହେବୁ ସୁଦର୍ଶନ ।
ରାତିରେ ଚନ୍ଦ୍ର ପର୍ଯ୍ୟେ କରିବୁ କିରଣ ॥
ପ୍ରଳୟର ବାଧା ତାକୁ ନହୁଏ ଯେମନ୍ତେ ।
ମୋର ଭକ୍ତକୁ ରଖିବୁ ନେଇ ସେଇମତେ ॥
ଏମନ୍ତ କହିଣ ପଦ୍ମ ସମର୍ପିଲେ ନେଇ ।
ଅମୃତର ସୁଧାଧାର କେଶରେ ପୂରାଇ ॥
ତାହା ଘେନି ସୁଦର୍ଶନ ଚଳେ ଅତି ଖରେ ।
ପ୍ରବେଶ ହୋଇଲା ସତ୍ୟବ୍ରତର ସ୍ଥାନରେ ॥

କବି ମତ୍ସ୍ୟ ପୁରାଣର ତୃତୀୟ ଅଧ୍ୟାୟରେ ନବସୃଷ୍ଟି ସୃଜନା ଓ ନାନା କଥା, ଚତୁର୍ଥ ଅଧ୍ୟାୟରେ ଚତୁର୍ମୁଖ ବ୍ରହ୍ମାଙ୍କର ଉତ୍ପତ୍ତି, ପଞ୍ଚମ ଅଧ୍ୟାୟରେ ଶଙ୍ଖାସୁରର ବେଦ ହରଣ ଓ ନାରାୟଣ ଆବର୍ତ୍ତନ, ଷଷ୍ଠ ଅଧ୍ୟାୟରେ ସୃଷ୍ଟି ରଚନା ବର୍ଣ୍ଣନା, ସପ୍ତମ ଅଧ୍ୟାୟରେ ନାରାୟଣ ଓ ଶେଷଦେବଙ୍କର ବାଦ

ସବାଦ ଓ ନାନାକଥା, ଅଷ୍ଟମ ଅଧ୍ୟାୟରେ ଦକ୍ଷ ପ୍ରଜାପତିଙ୍କ ବିବରଣ, ନବମ ଅଧ୍ୟାୟରେ ମନୁଷ୍ୟାଦିମାନଙ୍କର ଜନ୍ମ ଓ ଇନ୍ଦ୍ରଙ୍କର ବିବରଣ, ଦଶମ ଅଧ୍ୟାୟରେ ଗରୁଡ଼ ଜନ୍ମ ଓ ତାର ବିବରଣ ଏବଂ ଶେଷରେ ଏକାଦଶ ଅଧ୍ୟାୟରେ ସତ୍ୟବ୍ରତ ରାଜାଙ୍କର ବିବାଦ୍ର ବର୍ଣ୍ଣନାଦି କରି ପୁରାଣ ସାଙ୍ଗ କରିଛନ୍ତି ।

ପୁରାଣ ବିଷୟ ବସ୍ତୁ ଅନୁସାରେ ବିଷ୍ଣୁଙ୍କ ମନରୁ ବିଶ୍ୱକର୍ମା ଉତ୍ପତ୍ତି-ହେଲେ ଏବଂ ସେ ସୁଧର୍ମା ସଭା ନିଜ କଳ୍ପନାରୁ ନିର୍ମାଣ କଲେ । ଏହା ସଚରାଚର ବ୍ୟାପ୍ତ ହେଲା । ତତ୍ପରେ ବ୍ରହ୍ମାଙ୍କଠାରୁ ଆରମ୍ଭ କରି ସକଳ ପ୍ରକାର ଜୀବଜନ୍ତୁ ଇତ୍ୟାଦି ତ୍ରିଭୁବନରେ ସୃଷ୍ଟି ହେଲା ।

ବ୍ରହ୍ମାଙ୍କ ଉତ୍ପତ୍ତିଠାରୁ ପୁରାଣ ବର୍ଣ୍ଣନାନୁଯାୟୀ ନାରାୟଣ ନିଦ୍ରାଯୋଗ ଭଙ୍ଗ କଲେ । ପଞ୍ଚାଶ ଯୋଜନ କରି ବଢ଼ାଇ ଜଳକୁ ମନ୍ଥନ କରିବାରୁ ଫେଣ ବୁଦ୍ ବୁଦ୍ ଓ ତହିଁରୁ ମାଟି ଜାତ ହେଲା । ଏହି ପୃଥିବୀ ପ୍ରଳୟ ଜଳରେ ପଦ୍ମ ଓ କେଶବ ଭ୍ରମର ହୋଇ ସଙ୍ଗମ କରନ୍ତେ ବୀର୍ଜ ପତନ ହୋଇ ଭ୍ରମର ଉଡ଼ିଗଲା ( ଭ୍ରମର-ନିରଞ୍ଜନ ) । କେଶବଙ୍କ ନାଭିକମଳରୁ ଯେଉଁ ପଦ୍ମ ଉତ୍ପତ୍ତି ହେଲା ତା'ର ନାଡ଼ରୁ ଯେଉଁ ପୁରୁଷ ଉତ୍ପତ୍ତିହେଲେ ସେ ହେଉଛନ୍ତି ବ୍ରହ୍ମା । ବ୍ରହ୍ମା ନାରାୟଣଙ୍କର ପ୍ରଥମ ସ୍ୱରୂପ । ଏହିଠାରୁ ଶବ୍ଦର ଉତ୍ପତ୍ତି ହେଲା । ଏହି ବ୍ରହ୍ମା ପ୍ରଥମେ ଶୁଣିଲେ—

"ନିଃଶବ୍ଦୋ ଜାତ ଶବ୍ଦଃ",

ଶବ୍ଦ ହିଁ ବ୍ରହ୍ମା ଓ ଓଁକାର ସ୍ୱରୂପ, ଓଁକାର ହିଁ ତେଜବନ୍ତ । ଓଁକାର ନିରଞ୍ଜନ ସ୍ୱରୂପ, ଓଁକାରଠାରୁ ଯେଉଁ ନାରୀ ଜନ୍ମ ନେଲେ ଅନାଦି ପୁରୁଷ ସେହି ନାରୀଙ୍କ ସହ ରମଣ କରି ଚତୁର୍ଭୁଜ ନାରାୟଣଙ୍କୁ ଜନ୍ମ ଦେଲେ ଏବଂ ସେହିପରି ପଞ୍ଚାନନ, ଦଶଭୁଜ, ପଞ୍ଚଦର ନୟନ, ଶୁକ୍ଳବର୍ଣ୍ଣ ମହା ଦେବଙ୍କୁ ମଧ୍ୟ ଜନ୍ମ ଦେଲେ । ଅନାଦି ସମସ୍ତ ଦେବତା ଓ ଅନନ୍ତଙ୍କ ଜନ୍ମକର୍ତ୍ତା । ଅନନ୍ତଙ୍କ ଠାରୁ ବିରାଟ ପୁରୁଷଙ୍କର ଜନ୍ମ ଏବଂ ତାଙ୍କ ଠାରେ ସଚରାଚର ପୂରି

ରହିନ୍ତି । ଓଁକାର ଆଦି ଶକ୍ତି ରୂପରେ ଗାୟତ୍ରୀଙ୍କୁ ଜନ୍ମ ଦେଲେ, ଗାୟତ୍ରୀଙ୍କ-ଠାରୁ ସାବିତ୍ରୀ, ସରସ୍ୱତୀ ଓ ଋଗ୍‌ବେଦ ଉତ୍ପତ୍ତି ହେଲେ । ନାରାୟଣଙ୍କର ନୟନରୁ ଦକ୍ଷ ପ୍ରଜାପତି ଜନ୍ମ ନେଲେ । ଏହାଙ୍କର ଦେହ ବ୍ରହ୍ମାଙ୍କ ସଦୃଶ୍ୟ ଶୋଭି ପାଇଲା ।

ପ୍ରଳୟ ସଂହାର ନିମନ୍ତେ ଅନାଦି ନାରାୟଣ ରୁଦ୍ରଙ୍କୁ ସୂଚନା ଦେବାରୁ ରୁଦ୍ର ନାସ୍ତି କଲେ ଏବଂ ପରେ ନାରାୟଣ ବିଷ୍ଣୁ ଓ ବ୍ରହ୍ମାଙ୍କୁ ପ୍ରଳୟ ସଂହାର ନିମନ୍ତେ କପର ସୂଚନା ଦେଲେ, ବିଷ୍ଣୁଙ୍କ ମତାନୁଯାୟୀ ବ୍ରହ୍ମା ପୃଥିବୀ ସର୍ଜନା କଲେ ଏବଂ ବିଷ୍ଣୁ ଆତ୍ମାରୂପରେ ତହିଁରେ କପର ଅବସ୍ଥାନ କଲେ, ରୁଦ୍ରଙ୍କ ଦ୍ୱାରା କପର ଗୋଟିଏ ଡିମ୍ବ ସମ୍ଭବ ହୋଇ ସେହି ଡିମ୍ବରୁ କପର ସ୍ୱୟଂ ମତ୍ସ୍ୟନାରାୟଣ ଜନ୍ମ ନେଲେ ସେ ବିଷୟରେ କବି ବର୍ଣ୍ଣନା କରିଛନ୍ତି—

"ରୁଦ୍ରଙ୍କୁ ଚାହିଁ ବୋଲନ୍ତି ପ୍ରଭୁ ନାରାୟଣ ।
ପ୍ରଳୟ ଜଳକୁ ତୁହି କର ସଂହାରଣ ॥
ରୁଦ୍ର ବୋଇଲେ ମୁହିଁ ତ ନପାରିବି ତାହା ।
ଶୁଣି ବ୍ରହ୍ମାଙ୍କୁ ତହୁଁ ଚାହିଁଲେ ଚଉବାହା ॥
ତାହାକୁ ବୋଇଲେ ପୁଣି ଶୁଣ ପ୍ରଜାପତି ।
ସଂହାର ଏ ମହାଜଳ ହେଉ ବିନଶ୍ୟତି ॥
ବ୍ରହ୍ମା ବୋଇଲେ ସଂସାର କରିବି ଭିଆଣ ।
ଏ ଜଳ ସଂହାର ବୁଦ୍ଧି କରନ୍ତୁ ଆପଣ ॥
ବିଷ୍ଣୁଙ୍କୁ ବୋଇଲେ ତୁହି ପାରିବୁ କି ହରି ।
ବିଷ୍ଣୁ ବୋଇଲେ ଏହା ମୁଁ ନ ପାରିବି କରି ॥
ପୃଥ୍ୱୀ ସୃଜନା କରିବେ ଜନେ ବେଦବର ।
ଆତ୍ମାରୂପେ ରହିବି ମୁଁ ଜନଙ୍କ ହୃଦର ॥
ତାହା ଶୁଣି ନାରାୟଣ ସନ୍ତୋଷ ହୋଇଲେ ।
ପୁଣି ହିଁ ରୁଦ୍ରଦେବଙ୍କୁ ଆଜ୍ଞାଦାନ କଲେ ॥
ପ୍ରଳୟ ଜଳକୁ ଏବେ ସଂହାରତୁ ସବୁ ।
ଆଉ ଲକ୍ଷମାନ ତୋତେ ନ ଲଗିବ କାବୁ ॥

ତାହାଙ୍କ ବଚନେ ରୁଦ୍ର କରିଲେ ସମ୍ମତ ।
ତକ୍ଷଣେ ଉମ୍ବୁ ଗୋଟିଏ କରିଲେକ ଜାତ ॥
ସେ ଉମ୍ବୁରୁ ଜାତ ହେଲେ ଏକଇ ପୁରୁଷ ।
ମତ୍ସ୍ୟ ନାରାୟଣେ ସେବେ କାମପାଳ ଦାସ ॥

ଉପରୋକ୍ତ ପ୍ରମାଣ ମତେ ମତ୍ସ୍ୟ ପୁରାଣରେ ନାମକରଣ ସଫଳ ହୋଇଛି । ମତ୍ସ୍ୟ ପୁରାଣାନୁଯାୟୀ ନାରାୟଣ ନିଦ୍ରାବସ୍ଥାରେ ଥିବା ସମୟରେ ତାଙ୍କ ହସ୍ତରୁ ଶଙ୍ଖ ପ୍ରଳୟ ଜଳରେ ପତିତ ହୋଇ ଶଙ୍ଖାସୁର ଜନ୍ମର କାରଣ ହେଲା । ଶଙ୍ଖାସୁର ଶଙ୍ଖକୁ ମଧ୍ୟ ଶେଷରେ ଭକ୍ଷଣ କଲା । ଶଙ୍ଖାସୁରର ରକ୍ତ ଶୁକ୍ଳବର୍ଣ୍ଣ । ଏହି ସମ୍ବାଦ ବ୍ରହ୍ମା ପ୍ରଥମେ ନାରଦଙ୍କୁ କହିଥିଲେ ଏବଂ ନାରଦ ପରେ ସୋମ ରାଜାଙ୍କୁ ଓ ମତ୍ସ୍ୟ ପୁରାଣରେ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କୁ କହିଥିଲେ ।

ଦଶମ ଅଧ୍ୟାୟରେ ବ୍ରହ୍ମା ସୋମରାଜାଙ୍କୁ ବିବାହ କରାଇଥିଲେ । ପୁରାଣର ଶେଷ ଅଧ୍ୟାୟରେ ଅର୍ଥାତ୍ ଏକାଦଶ ଅଧ୍ୟାୟରେ ସତ୍ୟବ୍ରତ ରାଜାଙ୍କର ବିବାହ ଉତ୍ସବ ବର୍ଣ୍ଣନା କରାଯାଇଛି । ସୋମରାଜାଙ୍କର କନ୍ୟା ସୁପ୍ରଭା ଅତି ଅନିନ୍ଦ୍ୟସୁନ୍ଦରୀ ଏବଂ ସୁଲକ୍ଷଣୀ ଥିବାରୁ ଯୁବା ବୟସରେ ତାଙ୍କ ସହିତ ସତ୍ୟବ୍ରତ ରାଜାଙ୍କର ବିବାହ କାର୍ଯ୍ୟ ସମାପନ କରାଯାଇଛି । ମତ୍ସ୍ୟ ପୁରାଣରେ ମୁଖ୍ୟତଃ ପ୍ରଳୟତତ୍ତ୍ୱର ବିଶଦ ଆଲୋଚନା କରାଯାଇଥିଲେ ମଧ୍ୟ କବି ଏହି ପୁରାଣରେ ସାମାଜିକ ଚିତ୍ର ଦେବାକୁ ଭୁଲି ନାହାନ୍ତି । ସମାଜର ସାଧାରଣ ଚିତ୍ରଭଳି ସତ୍ୟବ୍ରତ ରାଜାଙ୍କର ବିବାହ ଉତ୍ସବ ବେଳେ ବ୍ରାହ୍ମଣମାନଙ୍କର କର୍ମ, ବାଣ ନିଶାଣ, ବେଦି, ଛାମୁଣ୍ଡିଆ, ମଙ୍ଗଳ-ଗୀତର ବର୍ଣ୍ଣନା, ହୁଳହୁଳିର ବ୍ୟବହାର, ବର କନ୍ୟାର ବେଶ, ସୁବର୍ଣ୍ଣ ମୁକୁଟର ବର୍ଣ୍ଣନା, ଲବଣ ଭ୍ରମର, କୁଶଚଣ୍ଡି ଓ ଅଗ୍ନି ହୋମ ଇତ୍ୟାଦିର ବର୍ଣ୍ଣନା କରାଯାଇଛି । ଆଜିର ସମାଜଭଳି ସେତେବେଳେ ବୈଦିକ ମତରେ କପରି ବିବାହ ଉତ୍ସବ ବେଳେ ଯୌତୁକ, ବର କନ୍ୟାର ବିଦାଣ ଓ ମଧୁଶଯ୍ୟା ଇତ୍ୟାଦିର ପ୍ରଚଳନ ଦେଖା ଦେଇଥିଲା ସେ ବିଷୟରେ ସତ୍ୟବ୍ରତ ରାଜାଙ୍କର ବିବାହ ଉତ୍ସବ ସମୟରେ କବି ଲେଖନ୍ତି—

"ଯଜ୍ଞଭୂକ ଦ୍ୱିଆଶୀର୍ବାଦ କଲେ ପୁରୋହିତ ।
ଯେହନେକ ସୂକ୍ତ ବିଧି ଅଛି ବେଦମତ ॥
ସୋମରାଜା ରତ୍ନ ଯଉତୁକ ସମର୍ପିଲେ ।
ବର କନ୍ୟାଙ୍କୁ ବନ୍ଦାଇ ଗୃହେ ଘେନିଗଲେ ॥
ଜୁଆ ଖେଳିଲେ ସୁବର୍ଣ୍ଣ କଉଡ଼ି କରେ ଘେନି ।
ଶୀତଳ ଭୁଣ୍ଡୀ କରିଲେ ବରକନ୍ୟା ବେନି ॥
ଆଚମନ ସାରି ଆସି ଆସ୍ଥାନେ ବସିଲେ ।
ସେନେକ ସମୟରେ ରବି ଅସ୍ତ ଗଲେ ॥
ମନ୍ଥୁଶଯ୍ୟାରେ ଶୟନ କରିଲେକ ବେନି ।
ବିବିଧ କଉତୁକରେ ବଞ୍ଚିଲେ ରଜନୀ ॥

ସୋମରାଜାଙ୍କ କନ୍ୟା ସୁପ୍ରଭାଙ୍କ ସହିତ ରାଜା ସତ୍ୟବ୍ରତଙ୍କର ବିବାହ ପରେ ପରେ ବଂଶ ବିସ୍ତାର ହେଲା । ସ୍ତ୍ରୀମାନେ ଆଦ୍ୟ ଶକ୍ତିଙ୍କଠାରୁ ଓ ପୁରୁଷମାନେ ପରମ ପୁରୁଷଙ୍କ ଠାରୁ ଜନ୍ମ ନେଲେ ।

ସୂର୍ଯ୍ୟଙ୍କ ପୁତ୍ର ମନୁଙ୍କଠାରୁ ସୂର୍ଯ୍ୟବଂଶ, ଚନ୍ଦ୍ରଙ୍କ ପୁତ୍ର ବୁଧ ଏବଂ ବୁଧଙ୍କ ପୁତ୍ର ପୁରୋରବାଙ୍କଠାରୁ ଚନ୍ଦ୍ରବଂଶ, ଭୃଗୁଙ୍କର ପୁତ୍ର ଶୁକ୍ର ଏବଂ କଶ୍ୟପଙ୍କଠାରୁ କପର ରାକ୍ଷସମାନେ ଜନ୍ମ ନେଲେ ସେ ବିଷୟ ରାଜା ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କୁ ପଗ୍ରରିବାରୁ କବି ନାରଦ ମୁଖରେ କହିଛନ୍ତି—

"ନାରଦ କହନ୍ତି ସୂର୍ଯ୍ୟଠାରୁ ମନୁ ଜାତ ।
ତହୁଁ ସୂର୍ଯ୍ୟବଂଶୀ ରାଜା ହୋଇଲେ ସମ୍ଭୂତ ॥
ଚନ୍ଦ୍ରଙ୍କ ନନ୍ଦନ ଜାଣ ବୁଧ ଗ୍ରହ ହେଲା ।
ପୁରୋରବା ତାଙ୍କଠାରୁ ଜାଣ ଜନମିଲା ॥
କାଳେ ପୃଥ୍ୱୀରେ ସେ ଯେ ହୋଇଲେ ନୃପତି ।
ତହିଁରୁ ଚନ୍ଦ୍ରବଂଶୀ ଯେ ଜନ୍ମହେଲେ ପୃଥ୍ୱୀ ॥
ଭୃଗୁଙ୍କର ନନ୍ଦନଯେ ଶୁକ୍ର ହେଲେ ଜାତ ।
କଶ୍ୟପଙ୍କର ସୁତେ ଯେ ଅଟଇ ଦଇତ୍ୟ" ॥

( ବ୍ରହ୍ମାଙ୍କଠାରୁ ଶଙ୍ଖାସୁର ବେଦ ଚୋରି କରି ନେବାରୁ ପରମ ପୁରୁଷ ମତ୍ସ୍ୟରୂପ ଧାରଣ କରି ଅବତାର ଗ୍ରହଣ କଲେ ଏବଂ ଶଙ୍ଖାସୁରକୁ ବଧ କରି ବେଦୋଦ୍ଧାର କଲେ । ଶଙ୍ଖାସୁରଦ୍ୱାରା ବେଦ ଖଣ୍ଡିତ ହୋଇ ଥିବାରୁ ବେଦରୁ ସଂସାର ଉତ୍ପତ୍ତି ହୋଇ କ୍ଷଣ ଭଙ୍ଗୁର ହେଲା ! )

ମତ୍ସ୍ୟ ପୁରାଣ ପୁରାଣରେ ସାର ଆଦ୍ୟ ପୁରାଣ ଏବଂ ମତ୍ସ୍ୟ ଅବତାର ଦଶାବତାରର ପ୍ରଥମରୁ ହିଁ ସୃଷ୍ଟି । ଶେଷାଂଶରେ ପୁରାଣକାର କବି-ବିପ୍ର କାମପାଳ ପୁରାଣରେ ମହିମାକୁ ଖୁବ୍ ସରଳ ସହଜ ଭାବରେ ପାଠକ ତଥା ଜିଜ୍ଞାସୁମାନଙ୍କ ସମ୍ମୁଖରେ ଉପସ୍ଥାପନା କରିଅଛନ୍ତି ।

କବି ଏଠାରେ ଚଉଦପୁରର ସୃଷ୍ଟି, ତନ୍ମଧ୍ୟସ୍ଥ ସମସ୍ତ ଜୀବଜଗତ ଓ ପ୍ରାଣୀ ଜଗତର ଲୀଳାଖେଳା ସମ୍ବନ୍ଧରେ ଏକ ସୁନ୍ଦର ତଥା ସଂକ୍ଷିପ୍ତ ବିବରଣୀ ପ୍ରଦାନ କରି ପାଠକର ସୃଷ୍ଟି ରହସ୍ୟ ଜାଣିବାର ଇଚ୍ଛାକୁ ପୂରଣ କରିଛନ୍ତି ।

ଦେବ ଲୋକ, ମର୍ତ୍ତ୍ୟ ଲୋକ, ନାଗ ଲୋକ ଓ ଯକ୍ଷ ଲୋକ ସମ୍ବନ୍ଧରେ ମଧ୍ୟ କବି ଏହି ପୁରାଣରେ ସମ୍ୟକ ସୂଚନା ଦେଇଛନ୍ତି । କେବଳ ସେତିକି ନୁହେଁ ,ମର୍ତ୍ତ୍ୟଲୋକକୁ ଏଠାରେ ନାରଦ ମୃତ୍ୟୁପୁର ନାମରେ ନାମିତ କରିଛନ୍ତି । ଦୈତ୍ୟ ଗର୍ଭଗତ ଭଗ୍ନ ବେଦରୁ ବ୍ରହ୍ମା ଜଗତ ରଚନା କରିଥିବାରୁ ଏ ସଂସାର ଅନିତ୍ୟ ଓ ମରଣଶୀଳ । କିନ୍ତୁ ଏ ମରଣଶୀଳ ଜଗତର ବୁଦ୍ଧିଦୀପ୍ତ ପ୍ରାଣୀ ମନୁଷ୍ୟ ଧର୍ମ ଆରାଧନା କରି ମୁକ୍ତି ଲୋକର ସନ୍ଧାନ ଲାଭ କରିଥାଏ ।

ଆଲୋଚ୍ୟ ମତ୍ସ୍ୟ ପୁରାଣ ପାଠରେ ବେଦ ଅଧ୍ୟୟନ ଓ ଯଜ୍ଞାନୁଷ୍ଠାନ ପ୍ରଭୃତିର ସୁଫଳ ମିଳେ ବୋଲି ପୁରାଣକାର ଏଠାରେ ଉଲ୍ଲେଖ କରିଅଛନ୍ତି । ଏଣୁ ଆଦ୍ୟ ପୁରାଣ ହିସାବରେ ମତ୍ସ୍ୟ ପୁରାଣ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ଆସିଅଛି ।

## ସହାୟକ ଗ୍ରନ୍ଥ ତାଲିକା


1. ମତ୍ସ୍ୟ ପୁରାଣ—ବିପ୍ରକବି କାମପାଳ ।
2. କୃଷ୍ଣ ଚରିତ ( ପ୍ରଥମ ଖଣ୍ଡ )—ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ।
   ଅନୁବାଦକ—ଶ୍ରୀ ଗୋଲୋକ ପ୍ରସାଦ ରାୟ
3. ଓଡ଼ିଆ ସାହିତ୍ୟ ପରିକ୍ରମା—ଅଧ୍ୟାପକ ଶ୍ରୀ ଜାନକୀବଲ୍ଲଭ ମହାନ୍ତି ( ଭରଦ୍ୱାଜ )
4. ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ବିନାୟକ ମିଶ୍ର
   ( ପୁରାଣ ସାହିତ୍ୟ ପ୍ରବନ୍ଧ )
5. ନନ୍ଦ ଘୋଷ—ଦ୍ୱିତୀୟ ବର୍ଷ ! ପ୍ରଥମ ସଂଖ୍ୟା (ପୁରାଣ ସାହିତ୍ୟ ପ୍ରବନ୍ଧ)
   ଅଧ୍ୟାପକ ପରୀକ୍ଷିତ ନନ୍ଦ ।
6. Hindu Mythology—W.Z. Wilkins.
7. ପୁରାଣ ରହସ୍ୟ—କେଶବଚନ୍ଦ୍ର ମେହେର
8. ଗୋପାଳ ପ୍ରହରାଜଙ୍କ ଭାଷାକୋଷ—( ଚତୁର୍ଥ ଖଣ୍ଡ )




# କଳ୍କି ପୁରାଣ –

## ଏକ ସମୀକ୍ଷା

ଅଧ୍ୟାପକ **ପ୍ରାଣରଞ୍ଜନ ଦାସ**

ଆଜି ଜୀବନ ସନ୍ତ୍ରାସରେ ପୃଥିବୀ ଯେତେବେଳେ ବିପର୍ଯ୍ୟସ୍ତ, ଅସ୍ଥିରତା, ହତାଶା, ପ୍ରବଞ୍ଚନାର ତାଡ଼ନରେ—ନାନା ଇକମ୍ବର ସଂଘର୍ଷରେ ସତ୍ୟ ଯେଉଁଠି ପ୍ରତିହତ, ନିରିସ୍ଖଳିତ—ଜୀବନ ଏକ ଜଳାବତ୍ତି, ପ୍ରେମ କୁଣ୍ଠୀଳ ପ୍ରଶ୍ନବାଚୀ; ସେତେବେଳେ ଶାଶ୍ୱତ—ସତ୍ୟାନେ୍ୱଷଣବ୍ରତୀ ପୁରାଣ ସାହିତ୍ୟ ମାନବ ସମାଜ ପାଇଁ ନିଶ୍ଚିତ ଭାବେ ଏକ ଦିଗନିର୍ଣ୍ଣୟକ ଯନ୍ତ୍ରୀଣି ବୋଲି କୁହାଯାଇ ପାରେ। ଏହି ପରିପ୍ରେକ୍ଷୀରେ ପୁରାଣ ସାହିତ୍ୟର ଅଂଶ ବିଶେଷ 'କଳ୍କିପୁରାଣ' ଅବୟବ-ଦୃଷ୍ଟିରୁ କ୍ଷୁଦ୍ର ହୋଇଥିଲେ ହେଁ ବିଶିଷ୍ଟ ଭୂମିକା ଗ୍ରହଣ କରିଛି କହିଲେ ଅତ୍ୟୁକ୍ତି ହେବନାହିଁ।

ଯେତେବେଳେ ସଂସାରରେ ଅଧର୍ମର ପ୍ରଳୟଙ୍କାରୀବନ୍ୟା ସମାଜର ନୀତି-ନିୟମର ବନ୍ଧଭାଙ୍ଗି ଉଚ୍ଛୃଙ୍ଖଳ ପଡ଼ିଛି ସେତେବେଳେ ସ୍ୱୟଂଭଗବାନ ନାନାରୂପ ପରିଗ୍ରହ କରି ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ ହୋଇଛନ୍ତି—ଦୁଷ୍ଟମାନଙ୍କ ବିନାଶ କରି ସନ୍ଥ, ସାଧୁମାନଙ୍କୁ ରକ୍ଷା କରିବା ନିମନ୍ତେ। ଏହାହିଁ ହିନ୍ଦୁଧର୍ମ ଦର୍ଶନ। ତେଣୁ ଶ୍ରୀମଦ୍‌ଭଗବତ ଗୀତାରେ କୁହାଯାଇଛି ;—

ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁଥାନାମଧର୍ମସ୍ୟ ତଦାତ୍ମନଂ ସୃଜାମ୍ୟହଂ
ପରିତ୍ରାଣାୟ ସାଧୂନାଂ ବିନାଶାୟଚ ଦୁଷ୍କୃତାଂ
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେଯୁଗେ ।"

ଅନ୍ଧ ଧର୍ମଶାସ୍ତ୍ର କହେ—ସତ୍ୟ, ତ୍ରେତା, ଦ୍ୱାପର ଏହି ତିନିଯୁଗ ନିର୍ଦ୍ଦିଷ୍ଟ ସମୟ ପରିସରରେ ଧରାପୃଷ୍ଠରେ ନିଜ ନିଜର ସ୍ଥିତି ବଜାୟ ରଖିବାପରେ କଳିଯୁଗର ପାଳି ପଡ଼ିବ । ଏହି ଯୁଗ ମଧ୍ୟ ନିର୍ଦ୍ଦିଷ୍ଟ ସମୟ ସୀମାରେ କାର୍ଯ୍ୟ ଦାନ ବିରାଜିତ କରିବ । କିନ୍ତୁ କଳି ଯୁଗରେ ମାନବ ସମାଜରେ ଦେଖାଦେବ ବିଭିନ୍ନ ଅନ୍ୟାୟ, ଅନାଚାର; ଯାହାଫଳରେ ବହୁ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହୋଇ ମାନବ ସମାଜ ଧ୍ୱଂସଗାମୀ ହେବ । ତେଣୁ ଧ୍ୱଂସ ମୁଖରୁ ରକ୍ଷା ପାଇବା ପାଇଁ କେବଳ ଧର୍ମ ମାର୍ଗହିଁ ସାହାଯ୍ୟ କରିବ । ଏଥିପାଇଁ କଲ୍କି-ପୁରାଣରେ କେତେକ ପନ୍ଥା ନିର୍ଦ୍ଦେଶିତ ହୋଇଛି ।

**ବିଷୟବସ୍ତୁ :—**

"ଭବିଷ୍ୟତ ଗ୍ରନ୍ଥ ଏହି କଲ୍କି ପୁରାଣ
କଲ୍କିରୂପେ ହରିଲୀଳା ହୋଇଛି ବଖାଣ ।"

( ବନ୍ଦନା-ପୃଷ୍ଠା-୨ )

ଅର୍ଥାତ୍ ଭବିଷ୍ୟତ କାଳରେ ନିଜେ ବିଷ୍ଣୁ କଲ୍କିରୂପ ଗ୍ରହଣ କରି ଧରାପୃଷ୍ଠରେ ଯେଉଁ ଲୀଳା ରଚନା କରିବେ ତାହାହିଁ ଏଥିରେ ବର୍ଣ୍ଣିତ ହୋଇଛି । ନୈମିଷ୍ୟାରଣ୍ୟରେ ଶୌନକ ଏବଂ ଅନ୍ୟ ମୁନିମାନେ କଳିଯୁଗର ଆରମ୍ଭ ଓ ତାହାର କାର୍ଯ୍ୟକଳାପ ବର୍ଣ୍ଣନା କରିବା ପାଇଁ ସୂତଙ୍କୁ ଅନୁରୋଧ କରିଥିଲେ । ମାର୍କଣ୍ଡେୟ ଓ ଅନ୍ୟାନ୍ୟ ଋଷିମାନଙ୍କୁ ଶୁକ ଦେବ ଯେଉଁ ଭାଗବତ ଧର୍ମ ଶୁଣାଇଥିଲେ ତାହାକୁ ସୂତ ଶ୍ରବଣ କରିଥିଲେ ବୋଲି ସେ ନିଜେ ସ୍ୱୀକାର କରି ବର୍ଣ୍ଣନା କରିଛନ୍ତି ଯେ ବ୍ରହ୍ମାଙ୍କ ପୃଷ୍ଠଦେଶରୁ ଅଧର୍ମର ସୃଷ୍ଟି ଏବଂ ମିଥ୍ୟା ନାମ୍ନୀ କନ୍ୟାକୁ ଅଧର୍ମର ବିବାହ ସମ୍ପନ୍ନ ହେବା ପରେ ସେମାନଙ୍କଠାରୁ ଦମ୍ଭ ଓ ମାୟା ନାମକ ଯଥାକ୍ରମେ ପୁତ୍ର ଓ କନ୍ୟା ଜାତ ହେଲେ । ଏହାପରେ ମାୟାକୁ ନିଜର ସ୍ତ୍ରୀରୂପେ ଦମ୍ଭ ବାଛିନେଇଛି ଏବଂ ସେମାନଙ୍କଠାରୁ ଲୋଭ ନାମକ ପୁତ୍ର ଓ ନିକୃତି ନାମକ କନ୍ୟା ଜାତ ହେଲି । ଲୋଭ ଓ ନିକୃତି ପରସ୍ପର ସ୍ୱାମୀ-ସ୍ତ୍ରୀ ରୂପରେ ସମ୍ବନ୍ଧ ସ୍ଥାପନ କରି କ୍ରୋଧ ଓ ହିଂସା ନାମରେ ଯଥାକ୍ରମେ ପୁତ୍ର କନ୍ୟା ଜାତ କଲେ । ହିଂସା ନିଜର ଭାଇ କ୍ରୋଧକୁ ସ୍ୱାମୀ ରୂପେ ଗ୍ରହଣକଲା—

"ପୂରୁଷେକ ଉପୁଜିଲ ଗର୍ଭ ତାହାଙ୍କର
ମହାବଳବନ୍ତ ସେହି ମହା ଭୟଙ୍କର ।
ନାମ କଳିଯୁଗ ତାର ରୂପ ଗୁଣ ଶୁଣ
କଜ୍ଜ୍ୱଳଗିରି ପରାୟେ ଦଶେ କୃଷ୍ଣବର୍ଣ୍ଣ ।"

( ପ୍ରଥମ ଅଧ୍ୟାୟ ପୃଷ୍ଠା-୨ )

ପରେ ପରେ ଦେଖା ଦେଇଛନ୍ତି କଳିର ଅସଂଖ୍ୟ ବଂଶଧର । ସେହି ବଂଶଧରଙ୍କ କାର୍ଯ୍ୟ ହୋଇଛି;—

"ଯହିଁ ଧର୍ମକୁ ଦେଖନ୍ତି ତାହାକୁ ମାରନ୍ତି
ଅଧର୍ମକୁ ନେଇ ତାର ସ୍ଥାନରେ ବସାନ୍ତି
ଏମନ୍ତେ ଅଧର୍ମ ବୃଦ୍ଧି ହେବ ବେଳୁବେଳ
ଜଗତକୁ ଗ୍ରାସିବ ସେ ଘୋର କଳି କାଳ ।"

( ୧ମ ଅଧ୍ୟାୟ ପୃଷ୍ଠା-୩ )

କଳିଯୁଗରେ ମାନବସମାଜ ଯାବତୀୟ କୁ-କର୍ମରେ ଲିପ୍ତ ରହିବେ, ତେଣୁ ଦେବତାମାନଙ୍କ ଅନୁରୋଧ କ୍ରମେ ସ୍ୱୟଂ ବିଷ୍ଣୁ ସେମାନଙ୍କୁ ପ୍ରତିଶ୍ରୁତି ଦେଇ-ଛନ୍ତି—'କଳି'କୁ ବିନାଶ କରି ସାଧୁସନ୍ଥମାନଙ୍କୁ ପାଳନ କରି ଧର୍ମ ସ୍ଥାପନ କରିବାକୁ ସେ ନିଜେ ଶମ୍ଭଳ ଗ୍ରାମର ପୁଣ୍ୟବନ୍ତ ବିଷ୍ଣୁଯଶା ବ୍ରାହ୍ମଣର ସ୍ତ୍ରୀ ସୁମତି ଗର୍ଭରୁ ଚତୁର୍ଭୁଜ ମୂର୍ତ୍ତି ହୋଇ ଜନ୍ମଗ୍ରହଣ କରିବେ ଓ ନିଜର ପ୍ରିୟତମା ପତ୍ନୀ ଲକ୍ଷ୍ମୀଠାକୁରାଣୀ ସିଂହଳ ଦ୍ୱୀପର ରାଜା ବୃହଦ୍ରଥଙ୍କ ପାଟରାଣୀ କୌମୁଦୀଙ୍କ ଉଦରରୁ ଜନ୍ମଗ୍ରହଣ କରିବେ । ବ୍ରହ୍ମାଙ୍କ ପରାମର୍ଶରେ ବିଷ୍ଣୁ ଦ୍ୱି-ଭୁଜ ବିଶିଷ୍ଟ ମାନବ ରୂପରେ 'କଳ୍କି' ନାମ ଗ୍ରହଣ କରିଛନ୍ତି । କଳ୍କି-ରୂପୀ ହରିଙ୍କର ପରଶୁରାମଙ୍କଠାରୁ ବିଦ୍ୟାଶିକ୍ଷା, ଶିବଙ୍କଠାରୁ ବର ପ୍ରାପ୍ତି ଓ ଶୁକପକ୍ଷୀ ପ୍ରାପ୍ତି ପ୍ରଭୃତି ବହୁ ବିଷୟ ସହି ପଦ୍ମାବତୀଙ୍କ ସହିତ ବିବାହ ଏବଂ ଅଶ୍ୱମେଧ ଯଜ୍ଞ ଛଳରେ କୀଟକପୁରକୁ ଯୁଦ୍ଧଯାତ୍ରା, ଜୀବ ବଧ, ବୌଦ୍ଧଯୁଦ୍ଧ, ମ୍ଳେଚ୍ଛ ସଂହାର, ମ୍ଳେଚ୍ଛ—ସ୍ତ୍ରୀମାନଙ୍କର ଯୁଦ୍ଧ,କୁଥୋଦରୀ ରାକ୍ଷସୀ ଓ ତା'ର ପୁଅ ବିକଞ୍ଜ ବଧ, ଶ୍ରୀରାମଚରିତ, ଚନ୍ଦ୍ରବଂଶାନୁ ଚରିତ, ଛଦ୍ମବେଶୀ ସତ୍ୟଯୁଗର

ପ୍ରବେଶ, ଧର୍ମବିପ୍ର ହନ୍ତେ କଳିର ଯୁଦ୍ଧ ଇତ୍ୟାଦି ବିଷୟବସ୍ତୁ ଏଥିରେ ବର୍ଣ୍ଣିତ ହୋଇଛି । କେବଳ ଏତିକି ନୁହେଁ, ଏ ସବୁ ସହିତ କଳ୍କିସ୍ତବ, ରମାକଳ୍କି ବିଭା, ଭକ୍ତ ଲକ୍ଷଣ, ଭକ୍ତ-ଭକ୍ତି ମହିମା, ଗଙ୍ଗାସ୍ତବ ପ୍ରଭୃତି ଅନ୍ୟାନ୍ୟ ଅନେକ କଥା କଳ୍କି ପୁରାଣର ବିଷୟବସ୍ତୁରେ ଗ୍ରନ୍ଥିତ ହୋଇଛି । ବିଷୟବସ୍ତୁକୁ ପର୍ଯ୍ୟାଲୋଚନା କଲେ ନିମ୍ନକେତୋଟି ତତ୍ତ୍ୱ ଆମ ଦୃଷ୍ଟି ପ୍ରଥାରୂଢ଼ ହୁଏ ।

## ଅବତାର ବାଦ :—

ସାମଗ୍ରିକ ଭାବେ ବିଚାର କଲେ ଜଣାଯାଏ ଯେ 'କଳ୍କି ପୁରାଣ' ବୈଷ୍ଣବ ଧର୍ମକୁ ଆଧାର କରି ବର୍ଣ୍ଣିତ ହୋଇଛି । ଏଥିରେ 'ବିଷ୍ଣୁ' ଯେଉଁ ବୈଷ୍ଣବ ଧର୍ମର ମୂଳ ଦେବତା ତାଙ୍କର ଦଶାବତାର ରୂପ ଗ୍ରହଣର ତାତ୍ପର୍ଯ୍ୟ ଓ କାର୍ଯ୍ୟକଳାପ ବର୍ଣ୍ଣିତ । ତାହାକୁ କଳ୍କିପୁରାଣର ଆରମ୍ଭରେ ପୁରାଣକାର ବନ୍ଦନା ଛଳରେ କହିଛନ୍ତି-୧ମ-ମୀନ ଅବତାର ୨ୟ-କୂର୍ମ ଅବତାର; ୩ୟ-ବରାହ ଅବତାର, ୪ର୍ଥ-ନୃସିଂହ ଅବତାର, ୫ମ-ବାମନାବତାର, ୬ଷ୍ଠ-ପର୍ଶୁ-ରାମାବତାର, ୭ମ-ଶ୍ରୀରାମ ଅବତାର, ୮ମ-ବଳଭଦ୍ର ଅବତାର, ୯ମ-ବୌଦ୍ଧ ଅବତାର । ପୁରାଣକାର ଏମାନଙ୍କର ଆବିର୍ଭାବର ପୃଷ୍ଠଭୂମି ଓ ମହାତ୍ମ୍ୟ ଦର୍ଶାଇ ଅଛନ୍ତି ଓ ଶେଷରେ ( ୧୦ମରେ ) କଳ୍କି ଅବତାର ରୂପେ ଭବିଷ୍ୟତରେ ଆବିର୍ଭୂତ ହେବେ ବୋଲି ସମାଜକୁ ଭବିଷ୍ୟତ ବାଣୀ ଶୁଣାଇ ଅଛନ୍ତି । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ପରଂବ୍ରହ୍ମ ବିଷ୍ଣୁ ଅବତାରୀ ଓ ଅନ୍ୟମାନେ ତାଙ୍କର କଳା ବା ଅଂଶବିଶେଷ ଅର୍ଥାତ୍ ଅବତାର । ଏଥିରେ ବୈଷ୍ଣବ ଧର୍ମର ପରମ ଆରାଧ୍ୟ ଭଗବାନ ବିଷ୍ଣୁହିଁ କୃଷ୍ଣ ବୋଲି କୁହାଯାଇଛି ।

## ବୈଷ୍ଣବ ଧର୍ମର ବୈଶିଷ୍ଟ୍ୟ—

ବୈଷ୍ଣବ ଧର୍ମର ବୈଶିଷ୍ଟ୍ୟ ଦର୍ଶାଇ କୁହାଯାଇଛି;— "ଶୁଭ ଭାଗବତ ଏହି ଭବିଷ୍ୟତ ଗ୍ରନ୍ଥ" ଏବଂ ଯେ କୃଷ୍ଣ ହିଁ ଭାଗବତ । କଳିଯୁଗରେ ଲୋକ ମାନେ ହିଂସା, ଦ୍ୱେଷ, ଲୋଭ, କାମ ପ୍ରଭୃତି ରିପୁମାନଙ୍କର ବଶବର୍ତ୍ତୀ ହୋଇ ଧର୍ମାଧର୍ମ ଜ୍ଞାନ ହରାଇବେ ଓ ବିଷ୍ଣୁ ଉପାସନା ପାଶୋର ଯାଇ "ହରିଙ୍କି ନଭଜି ଭଜିବେ ଅଲେଖ" ବୋଲି ଯାହା କୁହାଯାଇଛି, ଯେଥିରୁ

ସ୍ପଷ୍ଟ ଜଣାପଡେ ଅଲେଖ ଧର୍ମ ବା ମହିମା ଧର୍ମ ଅପେକ୍ଷା ବୈଷ୍ଣବ ଧର୍ମକୁ ଶ୍ରେଷ୍ଠତ୍ୱ ପ୍ରଦାନ କରାଯାଇଛି । କଲ୍କି ଅବତାରଙ୍କ ଜନ୍ମ ବୃତ୍ତାନ୍ତରେ କୁହାଯାଇଛି ଯେ ସମ୍ବଲ ଗ୍ରାମର "ସୁମତି" "ଶ୍ରୀବିଷ୍ଣୁ ପ୍ରତିମା ଏକ ରଖିଥାନ୍ତି ଗୃହେ । ତାହାଙ୍କ ସେବାପୂଜାରେ ଦିନଯାଏ ॥" ବିଷ୍ଣୁଙ୍କ ଉପାସନା କରୁଥିବାରୁ ସେଠାରେ ସ୍ୱୟଂ ନାରାୟଣ ଅନ୍ୟରୂପରେ ଜନ୍ମଗ୍ରହଣ କରିବାକୁ ଇଚ୍ଛାପ୍ରକାଶ କରିଛନ୍ତି । ଏହା ମଧ୍ୟ ବୈଷ୍ଣବଧର୍ମର ମହାତ୍ମ୍ୟକୁ ପ୍ରକଟିତ କରିବାରେ ସାହାଯ୍ୟ କରନ୍ତି କହିଲେ ସତ୍ୟର ଅପଲାପ ହେବନାହିଁ । ଆହୁରି ମଧ୍ୟ "ବିଷ୍ଣୁ ଭକତକୁ ବାଧୁ ନଛୁଏଁ କଳୁଷ",

"—× ×ବିଷ୍ଣୁ ପୂଜା କରେ ଯେଉଁ ଲୋକ
ଧନଧାନ୍ୟ ଯଶ ଆୟୁ ସକଳ ସମ୍ପଦ
ଭୋଗକରି ପାରିବ ସେ ବଇକୁଣ୍ଠ ପଦ ।" ପ୍ରଭୃତି ପଦ

ବୈଷ୍ଣବ ଧର୍ମର ମହତ୍ତ୍ୱ ପ୍ରକଟିତ କରେ । ଏହି ପୁରାଣରେ ୪ର୍ଥ ଅଧ୍ୟାୟରେ ଭକ୍ତ ଲକ୍ଷଣ ପ୍ରସଙ୍ଗରେ କୁହାଯାଇଛି;

"କଣ୍ଠେ ତୁଳସୀର ମାଳ କରେ ଜପାମାଳ,
ଉତ୍ତରୀୟ କନ୍ଧେ ଥିବ ମୋର ନାମାବଳୀ ।
× × ×
ମୋହର ନାମ କୀର୍ତ୍ତନ କରୁଥିବ ମୁଖେ,
ଶୁଦ୍ଧାସନେ ବସି ନାମ ଜପୁଥିବ ଦୁଃଖେ ।
× × ×
ଚିତ୍ତକୁ ରଖି କରତେ ଥିବ ମୋର ରୂପେ ।
× × ×
ମୋତେ ସକଳ ସମର୍ପି ହୋଇ ଉଦାସୀନ
କରୁଥିବ ସଦା ମୋର ନାମକୁ ଭଜନ ।
ଏମନ୍ତ ଲକ୍ଷଣ ଯାର ସେ ମୋର ଭକତ ।"

ଏହାକୁ ପାଠକଲେ ଗୌଡ଼ୀୟ ବୈଷ୍ଣବ ଧର୍ମର ମୂଳ ଉପାସନାବିଧି "ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋ ଅର୍ଚ୍ଚନଂ ପାଦ ସେବନଂ" ମନେ ପଡ଼େ । ତେଣୁ

ଅନାୟାସରେ କୁହାଯାଇପାରେ ଯେ ପୁରାଣକାର ଯେଉଁ ଭକ୍ତ ଗୋଷ୍ଠୀର ପରିଚୟ ଦେଇଛନ୍ତି ସେମାନେ ହେଉଛନ୍ତି-ବୈଷ୍ଣବ ।

**ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ**—ବୈଷ୍ଣବଧର୍ମର ପ୍ରବୃତ୍ତିମାର୍ଗ ଓ ନିବୃତ୍ତିମାର୍ଗର ବ୍ୟାଖ୍ୟା ସହିତ କଳିକପୁରାଣରେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ବ୍ୟାଖ୍ୟା ଦେଖିବାକୁ ମିଳେ । ହିନ୍ଦୁଧର୍ମଶାସ୍ତ୍ର ଗୀତା, ଭାଗବତ, ଉପନିଷଦ ପ୍ରଭୃତିରେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱର ସୂଚନା ଅଛି । ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ବିଶ୍ୱରୂପ ପ୍ରଦର୍ଶନ କରାଇବା ଭିତରେ ଏହି ବିଶ୍ୱବ୍ରହ୍ମାଣ୍ଡ ତତ୍ତ୍ୱହିଁ ସ୍ପଷ୍ଟରୂପେ ମୂର୍ତ୍ତିମନ୍ତ ହୋଇ ଉଠିଛି । ଶରୀର ଗୋଟିଏ ମନ୍ଦିର ସଦୃଶ ଏବଂ ତା'ମଧ୍ୟରେ ଭଗବାନ (ଦେବତା) ରହିଛନ୍ତି । ଆଲୋଚ୍ୟ ପୁରାଣକାର କହିଛନ୍ତି ଯେ ନିଜ ଶରୀରରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ସ୍ଥିତି ଉପଲବ୍ଧି କଲେ ପରମସୁଖ ଲାଭ କରିହେବ ।

ଯଥା—"ପିଣ୍ଡରେ ବ୍ରହ୍ମାଣ୍ଡ ଦେଖି ବିହରିବ ତହିଁ
ପରମ ସୁଖ ଲଭିବ ଦୁଃଖ ନାହିଁ ଯହିଁ ।"
(ପୃଷ୍ଠା ୪୨-୧୧ ଅଧ୍ୟାୟ)

ଯାହାଙ୍କୁ ପରମ କାରୁଣିକ, ବୈଷ୍ଣବ ସାଧକ ପଞ୍ଚସଖା ଯୁଗର ପଞ୍ଚ-ପୁରୋଧା କବି ବଳରାମଦାସ ତାଙ୍କ ବିରାଟ ଗୀତାରେ କହିଛନ୍ତି;—

"ବ୍ରହ୍ମାଣ୍ଡ ଯେତେ ବିଧିମତ, ପିଣ୍ଡରେ ଅଛନ୍ତି ସମସ୍ତ ।
ପିଣ୍ଡ ବ୍ରହ୍ମାଣ୍ଡ ଏକମତ । ତୋ ଆଗେ କହିଦେଲି ତତ୍ତ୍ୱ ।
ବ୍ରହ୍ମାଣ୍ଡେ ବୁଲି ତୁ ନ ମର । ଏ ପିଣ୍ଡେ ସବୁ ହେତୁ କର ।"

ବିଂଶ ଶତାବ୍ଦୀର ଅନ୍ୟତମ ବିଶିଷ୍ଟ ସାଧକ ଶ୍ରୀ ଅଭିରାମ ପରମହଂସ ତାଙ୍କର କଳିଭାଗବତରେ ମଧ୍ୟ ଏହି ତତ୍ତ୍ୱର ବିଶ୍ଳେଷଣ କରିଛନ୍ତି—

"ପିଣ୍ଡ ବୋଲି ବା ଯାହାକହି । ସେଇଟି ବ୍ରହ୍ମାଣ୍ଡ ଅଟଇ ।।
ଯାହାକୁ ବୋଲନ୍ତି ବ୍ରହ୍ମାଣ୍ଡ । ସେହି ହେଉଛି ପ୍ରାଣ ପିଣ୍ଡ ।।
ପିଣ୍ଡ ବ୍ରହ୍ମାଣ୍ଡ ଏକମତ । ସେ କଥା ନୁହଇ ଦୁଇ ତ ।।"

**କର୍ମଯୋଗ, ଜ୍ଞାନଯୋଗ, ଭକ୍ତିଯୋଗ:—**

ଯୋଗ ହେଉଛି ଚିତ୍ତବୃତ୍ତି ନିରୋଧ । ମାୟା ପରିପୂର୍ଣ୍ଣ ଜଗତର ଶତଧାର ଆକର୍ଷଣରୁ ବିକ୍ଷିପ୍ତମନକୁ ଏକାଗ୍ରକରି ଆପଣାଭିତରକୁ ଫେରାଇ ଆଣିବା ହେଉଛି ପ୍ରତ୍ୟେକ ଯୋଗର ପ୍ରଥମ ଏବଂ ପ୍ରଧାନ କଥା । କର୍ମ, ଜ୍ଞାନ ବା ଭକ୍ତି ଯେକୌଣସି ପ୍ରକାର ଯୋଗାଭ୍ୟାସର ମୂଳ ଅର୍ଥ ହେଉଛି ଆପଣାର ମନକୁ ବିଶ୍ୱବୋଧର ଯୋଗ୍ୟ ପାତ୍ର ରୂପେ ପ୍ରସ୍ତୁତକରିବା । ବେଦାନ୍ତ ଶାସ୍ତ୍ରରେ ଏହି ଚିତ୍ତଶୁଦ୍ଧି ନିମିତ୍ତ ଶ୍ରବଣ, ମନନ ଠାରୁ ଆରମ୍ଭକରି ଆସନ, ପ୍ରାଣାୟାମ ପର୍ଯ୍ୟନ୍ତ ନାନା ଅଭ୍ୟାସର ନିର୍ଦ୍ଦେଶ ଦିଆଯାଇଛି । ଆଲୋଚ୍ୟ ପୁରାଣରେ ନିଜେ କଲ୍କି ନାରାୟଣ ମ୍ଲେଚ୍ଛ ସ୍ତ୍ରୀମାନଙ୍କୁ କର୍ମଯୋଗ, ଜ୍ଞାନଯୋଗ, ଓ ଭକ୍ତିଯୋଗର ଉତ୍କର୍ଷ ଶୁଣାଇ ଅଛନ୍ତି । ଯଥା:—

"ଜ୍ଞାନ ଉପୁଜିଲା ବିଷ୍ଣୁ ଭାବେ ହେଲେ ଭୋଳା ।
X X X
ଲୋଭ ମୋହ ତେଜି ଭଜି ଶ୍ରୀରଙ୍ଗା ଚରଣ ।
ଶ୍ରୀ କଲ୍କି ଦେବ ପାଦେ ପଶିଲେ ଶରଣ ।।
X X X
କର୍ମ ଯୋଗ ଗୋଟି ଅଛି ଗରିଷ୍ଠ ଅଟଇ ।
ଅତି ନିଷ୍ଠାପର ହେଲେ ସେ ଯୋଗକୁ ପାଇ ।।
ସଂସାର ଭେଦ ନାଶନ ନିଷ୍କାମ ଲକ୍ଷଣ ।
ନାରୀଗଣଙ୍କୁ କହିଲେ ଦେବ ନାରାୟଣ ।।
X X X
ଆମ୍ଭର ଭକତି ଯୋଗ କଳୁଷ ନାଶନ ।
X X X
କଲକି ଦେବ ଶ୍ରୀମୁଖୁଁ ନାମାମୃତ ଶୁଣି ।
ଭକତ ହୋଇ ଭଜିଲେ ଇନ୍ଦ୍ର ସ୍ତ୍ରୀଙ୍କୁ ଜିଣି ।"

**ବର୍ଣ୍ଣାଶ୍ରମ ଧର୍ମ—** ବ୍ରାହ୍ମଣ୍ୟଧର୍ମର ମହାତ୍ମ୍ୟ ଦର୍ଶାଇବାକୁଯାଇ ପୁରାଣକାର କହିଛନ୍ତି "ବିପ୍ରହିଁ ଜାଣ ସାକ୍ଷାତେ ଦେବ ଚକ୍ରଧର ।" ସେମାନେ ଦଶମ

ସଂସ୍କାର ହୋଇ ବର୍ଣ୍ଣାଶ୍ରମ ଧର୍ମ ପାଳନକରିବା ସଙ୍ଗେ ସଙ୍ଗେ ନିଜ କପୋଳ ଦେଶରେ ତିଳକ ଚିହ୍ନ ଧାରଣକରିବା ଉଚିତ । ହିନ୍ଦୁଧର୍ମରେ ଜାତି ପ୍ରଥାର ଉଦ୍ରେକ ହେବାଠାରୁ ବ୍ରାହ୍ମଣମାନଙ୍କୁ ସମାଜରେ ଉଚ୍ଚସ୍ଥାନ ଦିଆହୋଇଛି । ଯାହା ଉକ୍ତ ପୁରାଣରେ ଅଛି—

"ବ୍ରହ୍ମା ବିଷ୍ଣୁ ଶିବରୂପୀ ଅଟଇ ବ୍ରାହ୍ମଣ ।
ବିପ୍ର ଶରୀରେ ଅଛନ୍ତି ସବୁ ଦେବଗଣ ।"

ସେମାନେ ସମାଜରେ ଉଚ୍ଚାସନ ପାଇ ନିଜର ଆଗୃର କୁଳଧର୍ମକୁ ସନ୍ଧର ସହିତ ପାଳନକରିବାକୁ ଏଥିରେ ନିର୍ଦ୍ଦେଶ ରହିଛି । ଏତଦ୍‌ବ୍ୟତୀତ ଏଥିରେ ତନ୍ତ୍ର, ମନ୍ତ୍ର, ନାମତତ୍ତ୍ୱ, ନାମମହିମା, କର୍ମଫଳ, ସହିତ ତୁଳସୀ ବୃକ୍ଷର ବୈଶିଷ୍ଟ୍ୟ ପ୍ରଭୃତି ବହୁ ତାତ୍ତ୍ୱିକ ବର୍ଣ୍ଣନା ଅଛି ।

**କଲ୍କି ପୁରାଣର ବୈଶିଷ୍ଟ୍ୟ**—ଏହାକୁ 'ପୁରାଣ' ଆଖ୍ୟା ଦେଇ କୁହାଯାଇଛି,—"ସର୍ଗ ପ୍ରତିସର୍ଗ ବଂଶମନ୍ୱନ୍ତର ଆଦି ,
ବଂଶର ଅନୁଚରିତ କହି ଯଥାବିଧି ·
ଏ ପାଞ୍ଚ ଲକ୍ଷଣ ଯୋଗେ ବୋଲଇ ପୁରାଣ
ଶତାଧିକ ଷଡ଼ସସ୍ର ଶ୍ଳୋକେ ଏ ପ୍ରମାଣ ।"

(୨୭ ଅଧ୍ୟାୟ-ପୃଷ୍ଠା ୧୪୯)

ଉକ୍ତ ତାଂଶଟି ଅନୁବାଦକ ବିପ୍ର ଗୋପୀନାଥଙ୍କ ମତ କି କଲ୍କି ପୁରାଣର ମୂଳସ୍ରଷ୍ଟାଙ୍କ ମତ ଅବଶ୍ୟ ଅନୁସନ୍ଧାନର ବିଷୟ । ତଥାପି ଏହି ପୁରାଣ ସମ୍ପର୍କରେ ଆର୍, ସି, ହାଜରାଙ୍କ ମତହେଉଛି—

"This is one of the late Upapuranas· It Claims to be a continuatien of the Bhagavata Purana and to deal with future events" ❊ ଏଥିରେ ଭବିଷ୍ୟତ

---

❊ Studies in the Upapurans—Page—303·

ସମ୍ପର୍କରେ ଚେତାବନୀ ରହିଛି । ତାହାଛଡ଼ା ପୁରାଣଟିକୁ ସମାଜର ସର୍ବଜନାଦୃତ କରିବା ଉଦ୍ଦେଶ୍ୟରେ ଏହା ସପକ୍ଷରେ ବହୁ ମତବ୍ୟକ୍ତ କରାଯାଇଛିଯେ ଏହା ଭାଗବତର ଅଂଶବିଶେଷ ଯଥା—

"ହରିଭକ୍ତି ଲୀଳାରସ ସାର ଏହି ଗ୍ରନ୍ଥ,
ଏହାକୁ ବୋଲନ୍ତି ଜନେ ଅନୁ ଭାଗବତ ।"

(୧ମ ଅଧ୍ୟାୟ-ପୃଷ୍ଠା-୭

ପୁଣି— "ଏଥି ଅନନ୍ତରେ ଶୁଣ ଶୁଣ ମୁନିବରେ
ଏହି ଅନୁଭାଗବତ ସାର ଏ ସଂସାରେ"

ପୁରାଣ ମଧ୍ୟରେ ସାର ଏହି ମହାଗ୍ରନ୍ଥ ।" ଏହି ପୁରାଣ ପାଠକର ପାଠକ ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ବର୍ଗ ଫଳ ପାଇବାକୁ କ୍ଷମହେବେ । ଏହା କଳ୍ପବୃକ୍ଷ କାମ୍ୟା ଧେନୁ ସଦୃଶ । ପାପ ତମିରକୁ ଧ୍ୱଂସକାରୀ ଧର୍ମରୂପକ ସୂର୍ଯ୍ୟ । ସ୍ୱୟଂ "ଶ୍ରୀହରିଙ୍କ ଶ୍ରୀମୁଖରୁ ଜାତ ଏ ପୁରାଣ ।"

ପରିଶେଷରେ ଏତିକି କୁହାଯାଇପାରେ ଯେ କବି ମାନେ ଦିବ୍ୟଦ୍ରଷ୍ଟା ବା ଭବିଷ୍ୟତ ଦ୍ରଷ୍ଟା । ତେଣୁ କୁହାଯାଇଥାଏ—"What we think tomorrow, the poet was thinking yesterday ?

ଅର୍ଥାତ୍ ଆମେ ଯାହା କାଲି ଭାବୁ, କବି ତାହା ଗତକାଲି ଚିନ୍ତା-କରିଥାନ୍ତି । ତେଣୁ ସେମାନେ ନିଶ୍ଚିତ ଭାବରେ ସମାଜର ଯେକୌଣସି ସାଧାରଣ ମଣିଷଠାରୁ ଏକ ପାଦ ଆଗେଇ ଯାଇଥାନ୍ତି । ସେହି ଦିବ୍ୟଦୃଷ୍ଟି ନେଇ ଭବିଷ୍ୟତ କାଳରେ ଯେଉଁ ଯେଉଁ ପରିବର୍ତ୍ତନ ହେବ ଓ ସମାଜର ଅବସ୍ଥା କଣ' ହେବ, ତାହା ଅନୁଭବ କରି ପୁରାଣ ସ୍ରଷ୍ଟା ଏହି ପୁରାଣରେ ବର୍ଣ୍ଣନା କରି ମାନବସମାଜକୁ କୁପଥରୁ ଫେରାଇ ଆଣି ସୁପଥଗାମୀ କରାଇବାକୁ ଚେଷ୍ଟା କରିଛନ୍ତି ।

ଆଧୁନିକକାଳରେ ବିଜ୍ଞାନର ଅଭୂତପୂର୍ବ ଉନ୍ନତି ସାଧିତ ହୋଇଥିଲେ ହେଁ ଚାରିଆଡ଼େ ଧର୍ମଘଟ, ବିପ୍ଲବ, ହତ୍ୟାର ଅଟ୍ଟହାସ୍ୟ, ଦୁର୍ଭିକ୍ଷ ଅନଟନର କରାଳଗ୍ରାସ, ଅତ୍ୟାଚାର, ଉତ୍ପୀଡ଼ନ, ଚୋରି, ଦାଙ୍ଗା, ଅସାମାଜିକତାର ପ୍ରକୋପ ଏତେ ବେଶି ହେଲଣି ଯେ ଶାନ୍ତି ନାୟକ ତଥା ଚିନ୍ତାଶୀଳ ବ୍ୟକ୍ତିମାନେ ନିଜକୁ ପଙ୍ଗୁ, ଅଥର୍ବ, ଏବଂ କିଂକର୍ତ୍ତବ୍ୟବିମୂଢ଼ ବୋଲି ଭାବୁଛନ୍ତି ।

ଏ ପରିସ୍ଥିତିରୁ ତ୍ରାହି ପାଇବାକୁ ହେଲେ କେବଳ ଧର୍ମର ଆଶ୍ରୟ ଲୋଡ଼ା । କାରଣ ଧର୍ମହିଁ ସୃଷ୍ଟିର ଆରମ୍ଭରୁ ମଣିଷ ସଭ୍ୟତା ଲାଗି ଆଲୋକ ଦେଖାଇ ଆସିଛି । ସେହି ଧର୍ମର ପରିପ୍ରଚାର ପାଇଁ କଲ୍କିପୁରାଣକାର ମାନବ ସମାଜକୁ "କଲ୍କିଦେବଙ୍କର ଚରଣେ ଶରଣ" ପଶିବାକୁ କହିଛନ୍ତି ।



# ପୁରାଣ ସାହିତ୍ୟ ଓ
# ଶିବ ପୁରାଣ

ଅଧ୍ୟାପକ—ଶ୍ରୀ ପୂର୍ଣ୍ଣଚନ୍ଦ୍ର ମଲ୍ଲିକ

ସଂସ୍କୃତ ପ୍ରାଚୀନ ଶବ୍ଦର ପ୍ରାକୃତ ରୂପାନ୍ତର ପୁରୁଣା । ବର୍ଣ୍ଣ ପରିବର୍ତ୍ତନ ପ୍ରକ୍ରିୟା ଦ୍ୱାରା ପୁରୁଣା ଶବ୍ଦଟି ପୁରାଣରେ ପରିଣତ ହୋଇଛି । ତେଣୁ ପୁରାଣର ଅର୍ଥ ପୁରୁଣା କଥା । ଭାଷାକୋଷ ଅନୁସାରେ ପୁରାଣ = (ପୁରା + ଭବେ,ଣ; ଯାହା ପୂର୍ବକାଳରେ ଘଟିଥିଲା ) । ପୁରା = ପ୍ରାଚୀନ କାଳରେ + ସଂଘଟିତ ବା ଜାତ ଅର୍ଥେ; ଅର୍ଥାତ୍ ଅତି ପ୍ରାଚୀନ କାଳରେ ପ୍ରସିଦ୍ଧ ବ୍ୟକ୍ତି, ସମାଜ, ଧର୍ମ ଓ ଦେବତା ଆଦିଙ୍କ ଜନ୍ମ ଓ କ୍ରିୟା କଳାପାଦି ଅବଲମ୍ବନରେ ରଚିତ ଆଖ୍ୟାୟିକା (୧) । 'ତେଣୁ ପୁରାଣର ମୂଳଅର୍ଥ 'ପ୍ରାଚୀନ' ବା ପ୍ରାଚୀନ 'ଇତିବୃତ୍ତ' । କିନ୍ତୁ ଖ୍ରୀଷ୍ଟାବ୍ଦ ଆରମ୍ଭ ପୂର୍ବରୁ ମଧ୍ୟ ଏହି ଶବ୍ଦଟି ଅନ୍ୟାନ୍ୟ କେତେକ ବିଷୟ ସହ ପୃଥିବୀର ପୁରାତନ କାହାଣୀ ବା ପାରମ୍ପରିକ ଶ୍ରୁତି କଥନ ସମ୍ପନ୍ନ ଏକ ନିର୍ଦ୍ଦିଷ୍ଟ ଗ୍ରନ୍ଥ ଶ୍ରେଣୀର ସଂଜ୍ଞାରୂପେ ବ୍ୟବହୃତ ହେଉଥିଲା (୨) । ପ୍ରାଚୀନ ମଣିଷର କଥାକୁ ଯଥାଯଥଭାବେ ପୁରାଣରେ

---

(୧) ଗୋପାଳଚନ୍ଦ୍ର ପ୍ରହରାଜ—"ପୂର୍ଣ୍ଣଚନ୍ଦ୍ର ଭାଷାକୋଷ" ୪୯୦୯ ପୃଷ୍ଠା ଦ୍ରଷ୍ଟବ୍ୟ ।

(୨) The old 'Purana' originally means 'ancient' or old narratire' but long before the christian era it came olso to be used as the

ବର୍ଣ୍ଣନା କରାଯାଇଛି । ପ୍ରାକ୍ତନ କାଳରେ ମଣିଷ ଯେତେବେଳେ କୌଣସି ଏକ ବିଷୟରେ ଅନ୍ୟମାନଂକ ମନରେ ଏକ ସନ୍ତୋଷଜନକ ଅବବୋଧ ସୃଷ୍ଟି କରିବାକୁ ଅକ୍ଷମ ହେଉଥିଲା ସେତେବେଳେ ପୌରାଣିକ ଆଖ୍ୟାନ ମାଧ୍ୟମରେ ତାର ବକ୍ତବ୍ୟକୁ ଉପସ୍ଥାପିତ କରୁଥିଲା (୩) ମହାଭାରତରେ ମଧ୍ୟ କୁହାଯାଇଛି ଯେ 'ଇତିହାସ ଓ ପୁରାଣ ଦ୍ୱାରା ବେଦକୁ ପରିବର୍ଦ୍ଧିତ କରିବା ଉଚିତ, କାରଣ ବେଦ ଅଳ୍ପ ଶ୍ରୁତ (ଅର୍ଥାତ୍ ଇତିହାସ ପୁରାଣରେ ଅନଭିଜ୍ଞ) ବ୍ୟକ୍ତିକୁ ଭୟକରେ, କାଳେ ସେ ତାକୁ ପ୍ରହାର କରିବ ଅର୍ଥାତ୍ କଦର୍ଥ କରିବ (୪) । ଏଥିରୁ ଅନୁମିତ ହୁଏ ଯେ ବେଦାଧ୍ୟୟନରେ ମଧ୍ୟ ଇତିହାସ ଓ ପୁରାଣର ସାହାଯ୍ୟ ଏକାଂତ ଅପରିହାର୍ଯ୍ୟ, କିଂତୁ ମହାଭାରତର ବ୍ୟବହୃତ ଏହି 'ପୁରାଣ' ଶବ୍ଦଟି ମଧ୍ୟ ସାଂପ୍ରତିକ କାଳ ବା ମହାଭାରତୋତ୍ତର ଯୁଗୀୟ ଚିଂତାଧାରାରେ ଅର୍ଥ ପରିବର୍ତ୍ତନ କରିଛି । ମହାଭାରତରେ 'ପୁରାଣ' ଶବ୍ଦଟି କେବଳ ପ୍ରାକ୍ତନ ଘଟଣାବଳୀ ଅର୍ଥରେ ବ୍ୟବହାର କରାଯାଇଛି । ବାୟୁ ପୁରାଣରେ ସ୍ପଷ୍ଟ ଭାବେ ଉଲ୍ଲେଖ ରହିଛି ଯେ "ଯସ୍ମାତ୍ ପୁରାହ୍ୟନତୀଦଂ

---

designation of a class of books dealing, among other matters, with old-world stories and legends. Prof. Rajendra Chandra Hazra. The Cultural Heritage of India, Vol-III, Page-240

(୩) Mythology is very aptly described as the language of primitive. What the early man failed to express satisfactorily through the medium of words, he tried to express through the medium of mythological concepts—Prof. R. N. Dandekar, The Cultural Heritage of India, Vol-III, Page-223

ପୁରାଣଂଚେନ ତତ୍‌ସ୍ମୃତମ୍" ଅର୍ଥାତ୍ ପୁରାକାଳରେ ଏ ପ୍ରକାର ଘଟିଥିବାରୁ ଏହାର ନାମ ପୁରାଣ ।

ପୁରାଣରେ ପ୍ରତିଶବ୍ଦ ରୂପେ ଆମେ ଇଂରାଜୀ Mythology ଶବ୍ଦକୁ ଗ୍ରହଣ କରୁଛୁ । ବିଶ୍ୱକୋଷ ବ୍ରିଟାନିକାଙ୍କ ମତରେ ଏହା ସୃଷ୍ଟି ପ୍ରକ୍ରିୟା, ଦେବତା ଓ ବୀରମାନଙ୍କର ମହିମାନ୍ୱିତ ପାରମ୍ପରିକ କାହାଣୀ ଅବଲମ୍ବିତ ବିଜ୍ଞାନ (୫) । ଆମେରିକୀୟ ବିଶ୍ୱକୋଷ ଅନୁସାରେ ଜନପ୍ରିୟ ଭାବେ ଏହି ଶବ୍ଦଟିକୁ ବିଭିନ୍ନ ସଂପ୍ରଦାୟର ଧର୍ମ ଧାରଣା ପ୍ରକାଶ କରିବାକୁ ଯାଇ ଗଢ଼ି ଉଠିଥିବା ଆଖ୍ୟାନ ଓ ଦେବ ଦେବୀମାନଙ୍କର ବିବରଣୀ ଅର୍ଥରେ ବ୍ୟବହୃତ (୬) । ଏ ସଂପର୍କରେ ମଧ୍ୟ କମ୍ପଟନଙ୍କର ସଚିତ୍ର ବିଶ୍ୱକୋଷଙ୍କ ମନ୍ତବ୍ୟ ଦ୍ରଷ୍ଟବ୍ୟ । ତାଙ୍କ ମତରେ Mythology ଶବ୍ଦ ମଣିଷର ବୈଜ୍ଞାନିକ ଜିଜ୍ଞାସାର ପ୍ରାରମ୍ଭିକ ପ୍ରଚେଷ୍ଟାର ପ୍ରତିନିଧି । ଏହି ଶବ୍ଦଟି ମଧ୍ୟ 'ଏ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା କିଏ ଏବଂ ମୋ ସହିତ ତାଙ୍କର ସମ୍ପର୍କ କଣ ?'

---

(୪) ଇତିହାସ ପୁରାଣାଭ୍ୟାଂ ବେଦଂ ସମୁପବୃଂହୟେତ୍
ବିଭେତ୍ୟଲ୍ପ ଶ୍ରୁତାଦ୍ ବେଦୋ ମାମୟଂ ପ୍ର ହରିଷ୍ୟତି ॥
(ପଠାନ୍ତରେ ପ୍ରହରିଷ୍ୟତି = ପ୍ରହରେ ଇତି)—ମହାଭାରତ

(୫) Mythology, the science which examines myths or legends of cosmogony and of Gods and heroes × × ×
Encyclopedia Britanika, vol16.-Page-55

(୬) In the popular acceptation of the term, mythology is however used to signify the religion conceptions of races expressed in the forms of tales and other accounts of their deities,
American Encyclopedia, vol-16, Page-55

—ଏହି ପ୍ରଶ୍ନର ଉତ୍ତର ଦେବାକୁ ମଣିଷର ପ୍ରଥମ ଉଦ୍‌ଯୋଗ । ଏହି ପ୍ରଶ୍ନଟିର ସମାଧାନ କେବଳ ଧର୍ମ, ବିଶ୍ୱାସ ବା ପ୍ରତ୍ୟୟ ଦ୍ୱାରାହିଁ ସଂଭବ । ଏହା ନିଜକୁ ଈଶ୍ୱରଙ୍କ ସହ ସଂପର୍କିତ କରିବା ନିମଂତେ ମଣିଷର ନିରବଚ୍ଛିନ୍ନ ପ୍ରଚେଷ୍ଟାର ଏକ ପଦକ୍ଷେପ (୭) । ସମାଜ ବିଜ୍ଞାନ ବିଶ୍ୱକୋଷ ମଧ୍ୟ ଏ ସଂପର୍କରେ ମତ ବ୍ୟକ୍ତ କରି କହିଂଛି ଯେ ଲୋକକଥା ପରି ମଧ୍ୟ ମୁଖ୍ୟତଃ କାଳ୍ପନିକ ମନୋରଂଜନ ଉପାଖ୍ୟାନ, କିନ୍ତୁ ଉଭୟଂକୁ ପରସ୍ପରଠାରୁ ଏହି ଦୃଷ୍ଟିରୁ ପୃଥକ କରିହେବ ଯେ ମିଥ୍‌ରେ ବର୍ଣ୍ଣିତ କାହାଣୀ ଏକ ଆଧିଭୌତିକ ପୃଥିବୀର କାହାଣୀ ଏବଂ ସେହି ହେତୁ ନିର୍ଦ୍ଦିଷ୍ଟ ଧର୍ମ-ତତ୍ତ୍ୱ-ଦର୍ଶୀ (୮) ଏହି

---

(୭) Mythology represents man's tirst attempt at science, at tindingout. Mythology too is man's tirst attempt to answer the question, Who made the universe, and what is my relation to him ? This question only can be answered by religion, by faith, by belief. Mythology then, is one of the steps in the long attempts of man to relate himself to God.

—Compton's Pictured Encyclopedia, vol-I
Page-475

(୮) Myths like folk tales are primarily novelistic tales, the two are to be distinguished only by the fact that myths are tales of the supernatural world and share also there fom the characteristics of the religions complex.

—Encyclopedia of Social Science, vol-12
Page-178

mythologyରେ ପ୍ରାଚୀନ ଗ୍ରୀକ୍ ଦେବଦେବୀଙ୍କର ଆରାଧନା, ପୁରୋହିତ, ଐତିହାସିକ ବୀର ପୁରୁଷମାନଙ୍କର ଶୌର୍ଯ୍ୟ ବୀର୍ଯ୍ୟ ପରାକାଷ୍ଠାର କାହାଣୀ, ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କର ଭୌଗଳିକ ସ୍ଥିତି ଓ ମାହାତ୍ମ୍ୟ ସ୍ଥାନଗ୍ରହଣ କରିଛି । କିନ୍ତୁ ସ୍ଥଳବିଶେଷରେ ଏକ ଲୋକପ୍ରିୟ ସ୍ଥାନ, ମନ୍ଦିର ବା ପୂଜାପଦ୍ଧତି ପ୍ରଭୃତିର ବିବରଣୀ ଦେବାକୁ ଗଲବେଳେ ସ୍ଥାନୀୟ କାହାଣୀକୁ ତା ସହିତ ଯୋଡ଼ି ଦିଆଯାଇଛି । ତେଣୁ ଅନେକ ସମୟରେ ଆମେ ସେ ସବୁକୁ ଅନ୍ୟ ଏକ ପରିଚ୍ଛୋଣୀ ଅଞ୍ଚଳରେ ସେ ସ୍ଥାନର ଏକ କାହାଣୀ ସହ ଲିପିବଦ୍ଧ ହୋଇଥିବାର ଦେଖୁ (୯) । ପୁରାଣ ଓ mythology ଉଭୟ କ୍ଷେତ୍ରରେ ଏହା ପ୍ରାଚୀନ ଇତିହାସର ଏକ ମନୋରମ ବିବରଣୀ, ଯେଉଁଥିରେ ସମ୍ୟକ୍ ଭାବେ ଇଂଗିତ ଧର୍ମୀ ସତ୍ୟ ଓ ବିଶେଷଭାବେ କଳ୍ପନାପ୍ରବଣତା ବା ଆଞ୍ଚଳିକ ଦୋଷଦୁଷ୍ଟତା ବିଳସିତ । ଉଦ୍ଦେଶ୍ୟକୁ ସିଧାସଳଖ ବ୍ୟକ୍ତ ନକରି ଏକ କାହାଣୀ ଜରିଆରେ ପ୍ରକାଶ କରି ଜନସାଧାରଣଙ୍କ ମନରେ ଅଧିକ ପ୍ରତ୍ୟୟ ଜନ୍ମାଇବା ଏହାର ଉଦ୍ଦେଶ୍ୟ ।

ଡଃ ରାମମନୋହର ଲୋହିଆଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ସମ୍ପାଦିତ ଇଂରାଜୀ ମାସିକପତ୍ରିକା 'ମ୍ୟାନକାଇଣ୍ଡ'ର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାରେ ପ୍ରକାଶିତ ତାଙ୍କର 'ରାମ-କୃଷ୍ଣ-ଶିବ' ପ୍ରବନ୍ଧର ପ୍ରାରମ୍ଭରେ ସେ ଲେଖିଛନ୍ତି, 'ଭାରତର ପୁରାଣ ହେଉଛି ବିଶ୍ୱଶ୍ରେଷ୍ଠ । ଏପରି ପୁରାଣସମ୍ପଦ ପୃଥିବୀର କୌଣସି ଦେଶରେ ଦେଖାଯାଏ ନାହିଁ । ପୁରାଣର ଗାଥା, ଯୁଗଯୁଗଧରି ଭାରତର ଜନ-ମାନସକୁ ଗଭୀରଭାବେ ପ୍ରଭାବିତ କରିଛି । ଇତିହାସରେ ବୁଦ୍ଧ ଓ ଅଶୋକଙ୍କ ଭଳି ବରିଷ୍ଠବ୍ୟକ୍ତିମାନଙ୍କର ଆବିର୍ଭାବ ଘଟିଛି ସତ, କିନ୍ତୁ ସେମାନଙ୍କୁ ଶତକଡ଼ା ପଚିଶ ଲୋକ ଜାଣିଥିବେ କି ନାହିଁ ସନ୍ଦେହ । ସେମାନଙ୍କ କାର୍ଯ୍ୟକଳାପ

---

(୯) × × Some local story connected with a particular temple or rite which was always told in the same way in that neighbour hood.

—Chamber's Encyclopedia, vol-III, Page-620

ଜାଣିଥିବା ଲୋକଙ୍କ ସଂଖ୍ୟା ହୁଏତ ଦଶଜଣରେ ଜଣେ । ଆଉ ସେମାନଙ୍କର ଠିକ୍‌ଠାକ୍ ବିବରଣୀ ଖୁବ୍ ବେଶୀ ହେଲେ ଶହେ କି ହଜାର ଜଣରେ ହୁଏତ ଜଣେ ଜାଣିଥିବେ । କିନ୍ତୁ ପୁରାଣରେ ରାମ, କୃଷ୍ଣ ଓ ଶିବଙ୍କୁ ଦେଶର ସମସ୍ତେ ଜାଣନ୍ତି । ଏମାନେ ଆମ ପୁରାଣର ସବୁଠାରୁ ମହନୀୟ ଚରିତ୍ର । X X ଭାରତୀୟ ସଂସ୍କୃତିର ଇତିହାସ, ଭାରତୀୟ ଆତ୍ମାର ବିକାଶ ଓ ଭାରତୀୟ ଇତିହାସର ଅନ୍ତର୍ନିହିତ ସତ୍ୟ ଏହି ପୌରାଣିକ ଚରିତ୍ରମାନଙ୍କସହ ନିବିଡ଼ ଭାବେ ସଂପୃକ୍ତ (୧୦) ।—ଏହି ମନ୍ତବ୍ୟଟି ଏକ ଧ୍ରୁବ ସତ୍ୟ । ତେବେ ବର୍ତ୍ତମାନ ପ୍ରଶ୍ନଉଠୁଛି ଭାରତରେ ପୁରାଣ ରଚନାର ଅଭିପ୍ରାୟ କେବେ ଏବଂ କି ଉଦ୍ଦେଶ୍ୟରେ ଏହା କରାଗଲା ? ତେଣୁ ଏ ପରିପ୍ରେକ୍ଷୀରେ ତତ୍କାଳୀନ ଭାରତର ସାଂସ୍କୃତିକ ଅଧ୍ୟୟନ ଆବଶ୍ୟକ ।

ଭାରତୀୟ ସଭ୍ୟତା ଓ ସଂସ୍କୃତିର ଆଦି ବିକାଶ କାଳରେ ବେଦ ରଚନା କରାଯାଇଥିଲା । ଅନେକଙ୍କ ମତରେ ବେଦ ମନୁଷ୍ୟକୃତ ନହୋଇ ଦୈବୀକୃତ । ସେ ଯାହା ହେଉନା କାହିଁକି ବେଦରେ ବିଭିନ୍ନ ରୂପରେ ପ୍ରକୃତିକୁ ହିଁ ଆରାଧନା କରାଯାଇଛି । ଏହାହିଁ ଭାରତୀୟ ସଂସ୍କୃତିର ମୂଳାଧାର । ଅନେକ ଭାରତୀୟଙ୍କର ବିଶ୍ୱାସ ଯେ ବେଦ ସହିତ ପୁରାଣଗୁଡ଼ିକ ବ୍ରହ୍ମାଙ୍କଠାରୁ ପ୍ରକାଶିତ । କିନ୍ତୁ ଗବେଷକ ପଣ୍ଡିତମାନଙ୍କ ମତାନୁଯାୟୀ ପୂର୍ବେ ଭାରତର ପ୍ରତ୍ୟେକ ରାଜସଭାରେ 'ଜଣେ ମାଗଧ' ନିଯୁକ୍ତ ହେଉଥିଲେ, ଯେଉଁମାନଙ୍କୁ ପରବର୍ତ୍ତୀ କାଳର ଭାଟ ବା ଚାରଣମାନଙ୍କ ସହିତ ତୁଳନା କରାଯାଇପାରେ । ମାଗଧମାନେ ସେହି ରାଜାମାନଙ୍କର ବଂଶାବଳୀ, କୀର୍ତ୍ତିକଳାପ, ଯୁଦ୍ଧଯାତ୍ରା-ପ୍ରଭୃତି ବିବରଣୀ ଲିପିବଦ୍ଧ କରୁଥିଲେ । ସତ୍ୟବ୍ରତ ପରାୟଣ ସୂତମାନେ ମାଗଧ ମାନଙ୍କଠାରୁ ସେହିସବୁ ଇତିବୃତ୍ତ ସଂଗ୍ରହକରି ତାହାର ସତ୍ୟାସତ୍ୟ ପରୀକ୍ଷା

---

* ଜୁଲାଇ, ୧୯୫୭

୧୦- 'ରାମ-କୃଷ୍ଣ-ଶିବ' ମୂଳଲେଖାର ଓଡ଼ିଆ ଅନୁବାଦ ଶ୍ରୀଯୁକ୍ତ ରବିରାୟଙ୍କ ସଂପାଦିତ 'ସମତା'ର ପ୍ରଥମବର୍ଷ ଚତୁର୍ଥ ସଂଖ୍ୟା (ଅକ୍ଟୋବର ୧୯୭୨)ରୁ ସଂଗୃହୀତ । ପୃଷ୍ଠା-୧୭୯

ମୂଳକ ଯଜ୍ଞସ୍ଥଳରେ ପାଠ କରୁଥିଲେ । ସ୍ୱତଃ ପଠିତ ଇତିବୃତ୍ତ ମୁନିଋଷିମାନଙ୍କ ଦ୍ୱାରା ଲିପିବଦ୍ଧ ହୋଇ ପୁରାଣ ସୃଷ୍ଟି ହେଲା । ସେହିଭଳି ଜଣେ ବଶିଷ୍ଟ ପୁରାଣକର୍ତ୍ତା ହେଉଛନ୍ତି କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ ବା ସଂକ୍ଷେପରେ ବ୍ୟାସଦେବ (୧୧) ସେହି ବ୍ୟାସଦେବଙ୍କୁ ପରବର୍ତ୍ତୀକାଳରେ ସବୁପୁରାଣର ସୃଷ୍ଟିକର୍ତ୍ତାବୋଲି କୁହାଯାଇଛି ।

ଭାରତର ବୈଦିକସାହିତ୍ୟ ସାଧାରଣ ଜନତା ପାଇଁ ଉଦ୍ଦିଷ୍ଟ ନଥିଲା, ତାହା ସମାଜର ମୁଷ୍ଟିମେୟ ଲୋକଙ୍କ ଭିତରେ ସୀମାବଦ୍ଧ ହୋଇ ରହିଥିଲା । ବେଦ ଅଧ୍ୟୟନ ନିମନ୍ତେ ସେତେବେଳେ ଅଧିକାରଭେଦ ନିରୂପିତ ହୋଇ ଥିଲା । ଯେଉଁମାନଙ୍କ ପକ୍ଷେ ବେଦ ପଢ଼ିବା ସମ୍ଭବ ହେଉ ନଥିଲା । (ଯଥା- ଶଙ୍କରାଚାର୍ଯ୍ୟ ବେଦପାଠକରୁଥିବା ଶୂଦ୍ରମାନଙ୍କ ମୁହଁରେ ଉତପ୍ତ ତରଳ ଲୌହ ଢାଳିଦେବା ନିମନ୍ତେ ନିର୍ଦ୍ଦେଶ ଦେଇଥିଲେ) ସେହିମାନଙ୍କ ପାଇଁ ରଚିତ ହେଲା ପଞ୍ଚମବେଦ—ପୁରାଣ (୧୨) । ତେଣୁ ବୈଦିକ ସାହିତ୍ୟପରେ ପୁରାଣ ସାହିତ୍ୟର ସୃଷ୍ଟି ।

ପୁନଶ୍ଚ ଶତପଥ ବ୍ରାହ୍ମଣ (୧୪ । ୬ । ୧୦ । ୬) ଏବଂ ବୃହଦାରଣ୍ୟକ ଉପନିଷଦ (୨ । ୪ । ୧୦)ରେ ଉଲ୍ଲେଖ ଅଛି ଯେ ମହାଭୂତଙ୍କର ନିଶ୍ୱାସରୁ ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବବେଦ, ଇତିହାସ, ପୁରାଣ, ଉପନିଷଦ, ସୂତ୍ର, ବ୍ୟାଖ୍ୟାନ ଏବଂ ଅନୁବ୍ୟାଖ୍ୟାନ ଆଦି ଉତ୍ପନ୍ନ ହୋଇଛି । କିନ୍ତୁ ପ୍ରୋକ୍ତ ବ୍ରାହ୍ମଣ ଓ ଉପନିଷଦରେ ବ୍ୟବହୃତ ପୁରାଣ ଶବ୍ଦ ବର୍ତ୍ତମାନର ଅଷ୍ଟାଦଶ ପୁରାଣ ପ୍ରତି ପ୍ରଯୋଜ୍ୟ ନୁହେଁ । ଶଙ୍କରାଚାର୍ଯ୍ୟକୃତ ବୃହଦାଆର- ଣ୍ୟକପନିଷଦର ଭାଷ୍ୟରେ 'ଉର୍ବଶୀ ପୁରୁରବା ସଂବାଦାଦି' ଇତିହାସ ଏବଂ

---

୧୧- ମନ୍ତ୍ର ସଂପାଦିତ 'ଚେତନା'ର ୧୯୬୫ ଅକ୍ଟୋବର-ନଭେମ୍ବର ସଂଖ୍ୟାର ଡ଼ଃ କୃଷ୍ଣଚରଣ ବେହେରାଙ୍କ ଲିଖିତ 'ପୁରାଣପ୍ରଭା ପଦ୍ମପୁରାଣ' ଦ୍ରଷ୍ଟବ୍ୟ । ପୃଷ୍ଠା-୨୧

୧୨-ଛାନ୍ଦୋଗ୍ୟୋପନିଷଦ-(୭ । ୧ । ୨)

ସୃଷ୍ଟି ପ୍ରକରଣାଦିକୁ ପୁରାଣ ଅନ୍ତର୍ଭୁକ୍ତ କରାଯାଇଛି । (୧୩) ମନୁସଂହିତା ଓ ଆଶ୍ୱଳାୟନ ସୂତ୍ରରେ ମଧ୍ୟ ପୁରାଣ ଶବ୍ଦର ଉଲ୍ଲେଖ ଅଛି, କିନ୍ତୁ ଏହା କେବଳ ଇତିହାସ ଅର୍ଥରେ ଗୃହୀତ । ମତ୍ସ୍ୟ ପୁରାଣରେ ମଧ୍ୟ ଉଲ୍ଲେଖ ଅଛିଯେ ବ୍ରହ୍ମା ସର୍ବପ୍ରଥମେ ପୁରାଣାଦି ଶାସ୍ତ୍ରର ରଚନା କଲେ, ତତ୍ପରେ ବେଦ ରଚନା କଲେ (୧୪) । ତେବେ କଣ ବେଦକୁ ଆମେ ଅର୍ବାଚୀନ ରଚନା ବୋଲି ଗ୍ରହଣ କରିନେବା ? ବେଦୋକ୍ତ ଧର୍ମର ଆଦ୍ୟତା ଓ ସ୍ୱତଃ ପ୍ରମାଣ ସମ୍ବନ୍ଧରେ ଧର୍ମଶାସ୍ତ୍ରକାର ମହର୍ଷି ମନୁ କହିଛନ୍ତି-ବେଦୋଽଖିଳ ଧର୍ମମୂଳଂ (ମନୁସ୍ମୃତି-୨, ୬୩) ଅର୍ଥାତ୍ ବେଦହିଁ ଧର୍ମର ମୂଳ । ଅନ୍ୟ ଏକ ସ୍ଥଳରେ ମଧ୍ୟ ସେ କହିଛନ୍ତି-ଧର୍ମଜିଜ୍ଞାସଂ ମାନାନାଂ ପ୍ରମାଣଂ ପରମଂ ଶ୍ରୁତିଃ (ମନୁ ୨, ୧୩) ଅର୍ଥାତ୍ ଧର୍ମଜିଜ୍ଞାସୁଙ୍କ ପାଇଁ ବେଦ ପରମ ପ୍ରମାଣ । (୧୫) ତେଣୁ ବେଦ ତୁଳନାରେ ମତ୍ସ୍ୟ ପୁରାଣର ଏ ମନ୍ତବ୍ୟ ଏକାନ୍ତ ଅର୍ବାଚୀନ । ବେଦରେ ମାତ୍ର ତେତିଶିଗୋଟି ମୁଖ୍ୟ ଦେବତାଙ୍କର ଉଲ୍ଲେଖ ଥିଲାବେଳେ ମତ୍ସ୍ୟ ପୁରାଣରେ ତେତିଶିକୋଟି ଦେବତାଙ୍କର ଉଲ୍ଲେଖ ରହିଛି ଏବଂ ଦେବତାଙ୍କ ବିଗ୍ରହ ସମ୍ପର୍କରେ ମଧ୍ୟ ବିଶଦ ବିବରଣୀ ଅଛି । ଏହା ନିଃସନ୍ଦେହରେ ପରବର୍ତ୍ତୀ-କାଳୀନ ପ୍ରକ୍ଷେପୋକ୍ତି । ବେଦର ପରବର୍ତ୍ତୀ ଯୁଗରେ ଅବତାରବାଦର ବିକାଶ ଘଟିଛି । ଯାହାକି ପୁରାଣ ସାହିତ୍ୟର ମୁଖ୍ୟ ଉପଜୀବ୍ୟରୂପେ ସ୍ୱୀକୃତ । ପୁନଶ୍ଚ ବ୍ରହ୍ମପୁରାଣରେ କୋଣାର୍କ, ଲିଙ୍ଗପୁରାଣରେ ଏକାମ୍ରକ୍ଷେତ୍ର, ଶିବ ପୁରାଣରେ ଏକାମ୍ରକ୍ଷେତ୍ର ଓ ବିନ୍ଦୁସରୋବର ପ୍ରଭୃତି ମଧ୍ୟଯୁଗରେ ପ୍ରତିଷ୍ଠା ଲାଭ କରିଥିବା କୀର୍ତ୍ତିମାନଙ୍କର ବର୍ଣ୍ଣନା କରାଯାଇଛି । ତେଣୁ ପୁରାଣକୁ ବେଦ ସହିତ ତୁଳନା କରାଯାଇ ନପାରେ । ଅପୌରୁଷେୟ ବେଦରେ ଚେତନ ଶକ୍ତିମୟ ପ୍ରକୃତିକୁ ପୂଜା କରାଯାଇଥିଲାବେଳେ ପୁରାଣମାନଙ୍କରେ ସଂପ୍ରଦାୟିକତାର ପ୍ରଚ୍ଚ୍ର

---

୧୩ । ବୃହଦାରଣ୍ୟକ, ଶଙ୍କର ଭାଷ୍ୟ—( ୨।୪।୧୦ )

୧୪ । ପୁରାଣଂ ସର୍ବ ଶାସ୍ତ୍ରାଣଂ ପ୍ରଥମଂ ବ୍ରହ୍ମଣାସ୍ମୃତମ୍
ଅନନ୍ତରଂ ବକ୍ତ୍ରେଭ୍ୟୋ ବେଦାସ୍ୟ ବିନର୍ଗତଃ ॥
—ମତ୍ସ୍ୟ ପୁରାଣ ।

୧୫ । ବେଦ ମନୁଷ୍ୟ କୃତ କି ?—ରଚନା—ପ୍ରିୟବ୍ରତ ଦାସ, ପୃଷ୍ଠା-୧୧୦

କରାଯାଇଛି ତେଣୁ ଗବେଷକମାନେ ପୁରାଣର ରଚନାକାଳକୁ ଖ୍ରୀଷ୍ଟିୟ ପଞ୍ଚମ ଶତାବ୍ଦୀ, କେହି କେହି ଅଷ୍ଟମ ଶତାବ୍ଦୀର ପରବର୍ତ୍ତୀ ବୋଲି ଗ୍ରହଣ କରିଛନ୍ତି । (୧୬)

ଯେ କୌଣସି ସଭ୍ୟତା ଏକ ନିର୍ଦ୍ଦିଷ୍ଟ ଧର୍ମ ଧାରଣାରେ ପ୍ରତିଷ୍ଠିତ ଏବଂ ଏହି ଧର୍ମ କେତେକ ସ୍ୱାତନ୍ତ୍ରଶୀଳ ମାନବିକ ମୂଲ୍ୟବୋଧ ଆଧାରିତ । (୧୭) କିନ୍ତୁ କାଳକ୍ରମେ ଏହି ଧର୍ମ କେତେକ ସମ୍ପ୍ରଦାୟରେ ବିଭକ୍ତ ହୁଏ ଏବଂ ପରବର୍ତ୍ତୀ ଧର୍ମ ଭିତରକୁ ଅନ୍ୟାୟ ଅନୀତି ଓ ଯଥେଚ୍ଛାଚାର ପ୍ରବେଶ କରେ । ଫଳରେ ସଂପ୍ରଦାୟ ବିଶେଷ ନିଜର ମର୍ଯ୍ୟାଦା ଓ ପ୍ରତିଷ୍ଠାକୁ ଅକ୍ଷୁର୍ଣ୍ଣ ରଖିବା ନିମନ୍ତେ ଅନ୍ୟମାନଙ୍କ ସହିତ ତୁଳନା କରି ନିଜର ଉତ୍କର୍ଷତା ପ୍ରମାଣ କରିବା ନିମନ୍ତେ ଚେଷ୍ଟା କରିଛନ୍ତି । ଏହି ପ୍ରଚେଷ୍ଟାହିଁ ବର୍ତ୍ତମାନର ପୁରାଣରୂପେ ଗୃହୀତ ହୋଇଅଛି । ପୁରାଣକୁ ଧର୍ମମୂଳକ କରାଯାଇଥିବାରୁ ତହିଁରେ ସ୍ୱାଭାବିକ ଭାବରେ

---

୧୬ । Though it is different to determine the date of the Puranas, it is beleaved that none of them are older than the 8 th century, A. D.

—W.J. Wilkings, Hindu Mythology, Page-77

୧୭ । ଏ ସଂମ୍ପର୍କରେ ଡଃ ରାଧାକୃଷ୍ଣଙ୍କର ଏହି ଉକ୍ତି ବିଚାର୍ଯ୍ୟ :—

Every civilisation in the expression of a religion for religion signifies faith in absolute values and a way of life to realise them.

—Dr. Radhakrishan, Religion and Society. Page-5

* ଋଗ୍‌ବେଦର ଏକ ମନ୍ତ୍ରରୁ ଜଣାଯାଏ ଯେ ପୃଥ୍ୱୀ ସ୍ଥାନୀୟ—୧୧, ଅନ୍ତରୀକ୍ଷ ସ୍ଥାନୀୟ-୧୧ ଏବଂ ଦ୍ୟୁ (ଆକାଶ) ସ୍ଥାନୀୟ-୧୧, ଏହିପରି ସର୍ବ ମୋଟ ୩୩ ଜଣ ଦେବତା ଅଛନ୍ତି ।

ଅନ୍ତରଞ୍ଜନ, ଅଲୌକିକତା ଓ ଗାଳଗଳ୍ପମାନ ପ୍ରବେଶ କରିଛି । ହିନ୍ଦୁମାନେ ପୁରାଣ ରଚନା କଲାବେଳେ ତତ୍କାଳୀନ ଅନ୍ୟାନ୍ୟ ଭାରତୀୟ ସଂପ୍ରଦାୟ ମଧ୍ୟ ସେଥିରୁ କ୍ଷାନ୍ତ ହୋଇ ନାହାନ୍ତି । ସେମାନଙ୍କ ଅନୁକରଣରେ ଜୈନମାନେ ୨୪ ପୁରାଣର ରଚନା କରିଛନ୍ତି । ନେପାଳ ଓ ତିବ୍ବତରେ ବୌଦ୍ଧମାନେ ପ୍ରଜ୍ଞା ପାରମିତା, ଲଳିତ ବିସ୍ତର, ଗଣ୍ଡବ୍ୟୂହ ସମାଧି ରାଜ, ଲଙ୍କାବତାର, ତଥାଗତ ଗୁହ୍ୟକ, ସଦ୍ଧର୍ମ ପୁଣ୍ଡରୀକ, ସବର୍ଣ୍ଣ ପ୍ରଭା ଓ ଦଶ ଭୂମୀଶ୍ୱର—ଏହି ୯ଟିକୁ ପୁରାଣ ରୂପେ ସ୍ୱୀକାର କରିଛନ୍ତି । ତେଣୁ ଏଥିରୁ ଅନୁମିତ ହୁଏ ଯେ ପୁରାଣ ରଚନା ଏକ ସମୟରେ ସର୍ବଭାରତୀୟ ଧର୍ମଧାରଣାରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା ।

ହିନ୍ଦୁ ପୁରାଣମାନଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଆମେ ଦେଖୁ ଯେ ଏଥିରେ ବ୍ରହ୍ମା, ବିଷ୍ଣୁ, ଶିବ, ସୂର୍ଯ୍ୟ, ଗଣେଶ ଏବଂ ଶକ୍ତିର ଉପାସନା କରାଯାଇଛି । କିନ୍ତୁ ବ୍ରହ୍ମାଙ୍କୁ ଛାଡ଼ି ଶେଷୋକ୍ତ ପଞ୍ଚ ଦେବତାଙ୍କର ମାହାତ୍ମ୍ୟ ବର୍ଣ୍ଣିତ । ଏହି ପାଞ୍ଚ ରୂପ ପରମାତ୍ମାଙ୍କର ଭିନ୍ନ ଭିନ୍ନ ରୂପ ରୂପେ ସ୍ୱୀକୃତି ଲାଭ କରିଛି । ସୃଷ୍ଟି ପ୍ରକରଣରେ ମଧ୍ୟ ଏମାନଙ୍କ କାର୍ଯ୍ୟ ଭିନ୍ନ ଭିନ୍ନ । ତେଣୁ ଏହିମାନଙ୍କ ମଧ୍ୟରୁ ଜଣଙ୍କୁ ମୁଖ୍ୟ ଉପଜୀବ୍ୟ କରି ପୁରାଣ ରଚନା କରାଯାଇଛି । ହିନ୍ଦୁ ପୁରାଣ ସଂଖ୍ୟା ୧୮ର । ଅବଶ୍ୟ ଏହି ୧୮ର ଗୋଟି ମୁଖ୍ୟ ପୁରାଣ ରୂପେ ସ୍ୱୀକୃତି ଲାଭ କରିଛନ୍ତି ।

ସଂସ୍କୃତ ସାହିତ୍ୟରେ ପୁରାଣର କଳନା କିପରି ହୋଇଥିଲା ତାହା ମତ୍ସ୍ୟ, ବିଷ୍ଣୁ ତଥା ବ୍ରହ୍ମାଣ୍ଡ ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଅଛି । ଯଥା :—

ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋ ମନ୍ୱନ୍ତରାଣି ଚ
ବଂଶାନୁଚରିତଂ ଚୈବ ପୁରାଣଂ ପଞ୍ଚଲକ୍ଷଣମ୍ ॥

ଉପରୋକ୍ତ ଶ୍ଳୋକର ଅର୍ଥାନୁସାରେ ପୁରାଣର ପଞ୍ଚଲକ୍ଷଣ ହେଲା—(୧) ସର୍ଗ ଅଥବା ସୃଷ୍ଟି ପ୍ରକରଣ, (୨) ପ୍ରତିସର୍ଗ ଅର୍ଥାତ୍ ସୃଷ୍ଟିର ପରିବର୍ତ୍ତନ, ସ୍ଥିତି ଓ ଲୟ, (୩) ସୃଷ୍ଟିର ପ୍ରାରମ୍ଭରୁ ବଂଶାବଳୀର ବର୍ଣ୍ଣନା, (୪) ମନୁଙ୍କଠାରୁ ବିଭିନ୍ନ ବଂଶର ପ୍ରଭାବ ଏବଂ ସେହି ସେହି ବଂଶର ଘଟଣା ବର୍ଣ୍ଣନ, (୫) ବଂଶାନୁଚରିତ ଅର୍ଥାତ୍ ସୂର୍ଯ୍ୟ ଓ ଚନ୍ଦ୍ର ବଂଶର ରାଜାଙ୍କ ବର୍ଣ୍ଣନ ।—ଏହି ପାଞ୍ଚ

ଲକ୍ଷଣ ଥାଇ ସମସ୍ତ ପୁରାଣ ସାହିତ୍ୟ ଆମ ସଂସ୍କୃତରେ ପ୍ରଚଳିତ । ସମୁଦାୟ ପୁରାଣମାନଙ୍କୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଏ । ଯଥା ମହାପୁରାଣ ଏବଂ ଉପପୁରାଣ । ମୂଳପୁରାଣ ଗୁଡ଼ିକୁ ମହାପୁରାଣ ଓ ପରବର୍ତ୍ତୀ ଶାଖା ବା ପ୍ରକ୍ଷେପ ପୁରାଣ ଗୁଡ଼ିକୁ ଉପପୁରାଣ କହନ୍ତି । ପୁନଶ୍ଚ ଗୁଣ ଭେଦରେ ବ୍ରହ୍ମାଙ୍କ ପ୍ରାଧାନ୍ୟ ସ୍ୱୀକୃତ ଲାଭ କରିଥିବା ପୁରାଣକୁ ରାଜସ, ବିଷ୍ଣୁଙ୍କ ମହତ୍ତ୍ୱ ପ୍ରକାଶ କରୁଥିବା ପୁରାଣକୁ ସାତ୍ତ୍ୱିକ ଓ ଶିବଙ୍କ ପ୍ରତିଷ୍ଠା ଉଦ୍ଦେଶ୍ୟରେ ରଚିତ ପୁରାଣମାନଙ୍କୁ ତାମସ ପୁରାଣ କହନ୍ତି । ଅଷ୍ଟାଦଶ ପୁରାଣ ଗୁଡ଼ିକ ହେଲା :—

| ପୁରାଣର ନାମ | ଶ୍ଳୋକ ସଂଖ୍ୟା | ପ୍ରବକ୍ତା ବା ପ୍ରଚାରକଙ୍କ ନାମ | ପ୍ରଧାନ ଦେବତା ବର୍ଣ୍ଣନା |
|---|---|---|---|
| ୧—ବ୍ରହ୍ମ | ୧୦୦୦୦ | ବ୍ୟାସଶିଷ୍ୟ ଲୋମ ହର୍ଷଣ | ସୂର୍ଯ୍ୟଦେବ |
| ୨—ପଦ୍ମ | ୫୫୦୦୦ | ଲୋମହର୍ଷଣ ପୁତ୍ରଉଗ୍ରଶ୍ରବା | ସୃଷ୍ଟି ବର୍ଣ୍ଣନା |
| ୩- ବିଷ୍ଣୁ | ୨୩୦୦୦ | ପରାଶର | ସୃଷ୍ଟି ବୃତାନ୍ତ ଓ ଇତିହାସ |
| ୪- ଶିବ | ୨୪୦୦୦ | ସୂତ | ଶିବ |
| ୫- ଭାଗବତ | ୧୮୦୦୦ | ଶୁକ | ବିଷ୍ଣୁ |
| ୬- ନାରଦୀୟ | ୨୫୦୦୦ | ନାରଦ | ବିଷ୍ଣୁ |
| ୭- ମାର୍କଣ୍ଡେୟ | ୯୦୦୦ | ମାର୍କଣ୍ଡେୟ | ଦୁର୍ଗା |
| ୮- ଅଗ୍ନି | ୧୫୪୦୦ | ବ୍ୟାସଶିଷ୍ୟସୂତ | ଅବତାର ଓ ରାଜବଂଶାବଳୀ |
| ୯- ଭବିଷ୍ୟ | ୧୪୫୦୦ | ବ୍ୟାସ | ଭବିଷ୍ୟତ ଘଟଣାବଳୀ |
| ୧୦- ବ୍ରହ୍ମବୈବର୍ତ୍ତ | ୧୮୦୦୦ | ସୂତ | ଶ୍ରୀକୃଷ୍ଣ |
| ୧୧- ଲିଙ୍ଗ | ୧୧୦୦୦ | ସୂତ | ଶିବ |
| ୧୨- ବରାହ | ୨୪୦୦୦ | ବ୍ୟାସ | ବରାହ ଅବତାର |
| ୧୩- ସ୍କନ୍ଦ | ୮୧୧୦୦ | ବ୍ୟାସ | ଶିବ |
| ୧୩- ବାମନ | ୧୦୦୦ | ବ୍ୟାସଶିଷ୍ୟ ଲୋମହର୍ଷଣ | ବାମନ ଅବତାର |
| ୧୫- କୂର୍ମ | ୧୭୦୦୦ | ବ୍ୟାସ | ଚତୁର୍ବର୍ଗ |
| ୧୬- ମତ୍ସ୍ୟ | ୧୪୦୦୦ | ବ୍ୟାସ | ସୃଷ୍ଟି ବର୍ଣ୍ଣନା |
| ୧୭- ଗରୁଡ଼ | ୧୯୦୦୦ | ବ୍ୟାସ | ଗରୁଡ଼ |
| ୧୮- ବ୍ରହ୍ମାଣ୍ଡ | ୧୧୦୦୦ | ବ୍ୟାସ | ସୃଷ୍ଟିଠାରୁ ପ୍ରଳୟ ପର୍ଯ୍ୟନ୍ତ |

ଅଷ୍ଟାଦଶ ଉପପୁରାଣ ହେଲ — ୧-ବାୟୁ ପୁରାଣ । ୨-ଦେବୀ ଭାଗବତ, ୩-ସନତକୁମାର, ୪-ନରସିଂହ, ୫-ଶିବଧର୍ମ, ୬-ବୃହଦ୍‌ନାରଦୀୟ,୭-ଦୁର୍ବାସା ୮-କପିଳ, ୯-ମାନବ, ୧୦-ଔଶନଶ, ୧୧-ବାରୁଣ, ୧୨-କାଳିକା, ୧୩-ଶାମ୍ବ, ୧୩-ନନ୍ଦିକେଶ୍ୱର, ୧୫-ସୌର, ୧୬-ପରାଶର ୧୭-ଆଦିତ୍ୟ, ୧୮-ବ୍ରହ୍ମାଣ୍ଡ । ଏତଦ୍‌ଭିନ୍ନ ଅନ୍ୟ କେତେକ ପୁରାଣ ମଧ୍ୟ ଏହି ଅଷ୍ଟାଦଶ ପୁରାଣ ମଧ୍ୟରେ ଗଣ୍ୟହୁଏ । ଅତଶକ୍ତ ପୁ·ରାଣଗୁଡ଼ିକ ହେଲ ୧୯-ମାହେଶ୍ୱର, ୨୦-ଭାଗବତ, ୨୧-ବାଶିଷ୍ଠ, ୨୨-କୌର୍ମ, ୨୩-ଭାର୍ଗବ, ୨୪-ଆଦି, ୨୫-ମୁଦ୍‌ଗଲ ୨୬-କଲ୍‌କି, ୨୭-ମହାଭାଗବତ, ୨୭-ବୃହଦ୍ଧର୍ମ ୨୯-ପରାନନ୍ଦ ଇତ୍ୟାଦି (୧୮) କିନ୍ତୁ ବୃହଦ୍ଧର୍ମ ପୁରାଣରେ ପ୍ରଦତ୍ତ ଅଷ୍ଟାଦଶ ଉପପୁରାଣ ହେଲ— ଆଦ୍ୟପୁରାଣ, ଆଦିତ୍ୟ, ବୃହଦ୍‌ନାରଦୀୟ, ନାରଦୀୟ ନାନ୍ଦୀଶ୍ୱର, ବୃହନ୍ନାନ୍ଦୀଶ୍ୱର, ଶାମ୍ବ, କ୍ରିୟା ଯୋଗସାର, କାଳିକା, ଧର୍ମ ପୁରାଣ, ବିଷ୍ଣୁଧର୍ମୋତ୍ତର, ଶିବଧର୍ମ, ବିଷ୍ଣୁଧର୍ମ, ବାମନ, ବରୁଣ, ନରସିଂହ, ଭାର୍ଗବ, ଓ ବୃହଦ୍‌ଧର୍ମ । କିନ୍ତୁ ଏକାମ୍ର ପୁରାଣରେ ପ୍ରଦତ୍ତ ଅଷ୍ଟାଦଶ ଉପପୁରାଣ ହେଲେ—ବୃହତ୍ ନରସିଂହ, ବୃହଦ୍‌ବୈଷ୍ଣବ, ଗରୁଡ଼, ବୃହନ୍ନାରଦୀୟ, ନାରଦୀୟ, ପ୍ରଭାସକ, ଲୀଳାବତୀ ପୁରାଣ, ଦେବୀ, କଳିକା, ଆଖେଟକ, ବୃହନାନ୍ଦୀ, ନନ୍ଦିକେଶ୍ୱର, ଏକାମ୍ର, ଏକପାଦ, ଲଘୁଭାଗବତ, ମୃତ୍ୟୁଞ୍ଜୟ, ଅଗ୍ନିରସକ ଓ ଶାମ୍ବ (୧୯)

ମହାପୁରାଣ ଭାବେ ଦେବୀ ପୁରାଣ ଓ ବାୟୁ ପୁରାଣକୁ ନେଇ କେତେକ ମତଭେଦ ରହିଛି । କୌଣସି କୌଣସି ସମାଲୋଚକ ଦେବୀ ଭାଗବତ ଓ ବାୟୁ ପୁରାଣକୁ ମହାପୁରାଣ ପର୍ଯ୍ୟାୟଭୁକ୍ତ କଲବେଳେ କେହି କେହି ଶ୍ରୀମଦ୍ଭାଗବତ ଓ ଶିବ ପୁରାଣକୁ ଅଷ୍ଟାଦଶ ମହାପୁରାଣ ମଧ୍ୟରେ ଗଣନା କରନ୍ତି । କିନ୍ତୁ ପୁରାଣରେ ଶ୍ରୀମଦ୍ଭାଗବତ ବୈଷ୍ଣବଧର୍ମୀମାନଙ୍କ ହୃଦୟରେ ବିଶିଷ୍ଟସ୍ଥାନ ଗ୍ରହଣ କରିଛି । ସେହିପରି ଶାକ୍ତମାନଙ୍କ ପାଇଁ ଦେବୀ ଭାଗବତ ଶ୍ରେଷ୍ଠଗ୍ରନ୍ଥ । ନାରଦୀୟ ପ୍ରଭୃତି ପୁରାଣରେ ଶ୍ରୀମଦ୍ଭାଗବତରେ ଗଣନା

---

(୧୮) ବିଶ୍ୱଧର୍ମ ଦର୍ଶନ, ପୃଷ୍ଠା-୧୮୮

(୧୯) The Cultural Heritage of India-272

ମହାପୁରାଣଭାବେ କରାଯାଇଛି ଏବଂ ପଦ୍ମପୁରାଣରେ ଏହାକୁ ପୁରାଣ ଶ୍ରେଷ୍ଠ ବୋଲି କୁହାଯାଇଛି । ବିଷ୍ଣୁପୁରାଣରେ ବିଷ୍ଣୁଙ୍କୁ ସବୁଠାରୁ ମହାନ ଏବଂ ଶିବ ଓ ବ୍ରହ୍ମାଙ୍କର ସୃଷ୍ଟିକର୍ତ୍ତାରୂପେ କୁହାଯାଇଛି । ବ୍ରହ୍ମବୈବର୍ତ୍ତରେ କୃଷ୍ଣଙ୍କଠାରୁ ବ୍ରହ୍ମା, ଶିବ ଓ ନାରାୟଣଙ୍କର ଉତ୍ପତ୍ତି ହୋଇଛି ବୋଲି ଉଲ୍ଲେଖ ଅଛି । ଶିବ ପୁରାଣରେ ଶିବହିଁ ସୃଷ୍ଟି ପ୍ରକରଣର ମୂଳରୂପେ ପ୍ରସିଦ୍ଧି ଲଭ କରିଛନ୍ତି । ସୌର ସମ୍ପ୍ରଦାୟର ପୁରାଣରେ ସୂର୍ଯ୍ୟଙ୍କୁ ମୁଖ୍ୟବୋଲି କୁହାଯାଇଛି । ତେଣୁ ମୁଖ୍ୟ ଦେବତାଙ୍କମଧ୍ୟରେ ଶିବ ଅନ୍ୟତମ ହୋଇଥିବାରୁ ଶିବପୁରାଣକୁ ମହାପୁରାଣ ରୂପେ ଗ୍ରହଣକରିବା ଅସମୀଚୀନ ନୁହେଁ । ଭିନ୍ନଭିନ୍ନ ପୁରାଣ ଭିନ୍ନଭିନ୍ନ ଦେବତାଙ୍କଠାରେ ଯେଉଁ ଶ୍ରେଷ୍ଠତ୍ୱ ଆରୋପ କରିଛନ୍ତି ତାହା କେବଳ ସାମ୍ପ୍ରଦାୟିକ ମନୋଭାବଯୋଗୁ ସମ୍ଭବ ହୋଇଛି । ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀଙ୍କ ଅନୁସାରେ କେବଳ ବିଷ୍ଣୁ ଓ ବାମନ ପୁରାଣକୁ ଛାଡ଼ିଦେଲେ ଅନ୍ୟସବୁ ପୁରାଣରେ ବହୁବାର ନୂତନ ସଂସ୍କରଣ କରାଯାଇଛି, ଯାହାଫଳରେ ଏହି ପୁରାଣମାନଙ୍କର କଳେବର ଓ କେତେକ ସ୍ଥାନରେ ଦର୍ଶନର ମଧ୍ୟ ପରିବର୍ତ୍ତନ ଘଟିଛି । ଶିଷ୍ୟ ପରମ୍ପରାନୁକ୍ରମେ ପୁରାଣସଂଗ୍ରହ ଓ ବ୍ୟାଖ୍ୟା କରାଯାଉଥିବାରୁ ଉଦ୍ଦେଶ୍ୟମୂଳକଭାବେ ଏହା କରାଯାଇଛି । (୨୦)

ଉପରୋକ୍ତ ପୁରାଣମାନଙ୍କମଧ୍ୟରୁ ତାମସ ଶ୍ରେଣୀଭୁକ୍ତ-ଲିଙ୍ଗ, ସ୍କନ୍ଦ, ଶିବ ଅଗ୍ନି, ମତ୍ସ୍ୟ ଓ କୁର୍ମ ପୁରାଣରେ ଶିବଙ୍କର ପ୍ରତିଷ୍ଠା ଓ ପ୍ରାଧାନ୍ୟ ସ୍ୱୀକୃତ ଲଭକରିଛି । ଏହି ପୁରାଣଗୁଡ଼ିକ ମୁଖ୍ୟତଃ ଶୈବବାଦୀଙ୍କ ଦ୍ୱାରା ରଚିତ । ଏହି ପୁରାଣମାନଙ୍କ ମତରେ ସୃଷ୍ଟି ପ୍ରକରଣର ମୂଳାଧାର ହେଉଛନ୍ତି ଶିବ, ତେଣୁ ଶିବଙ୍କର ବିସ୍ତୃତ ମହିମା ପ୍ରଶସ୍ତି ଏ ପୁରାଣଗୁଡ଼ିକର କଳେବର ମଣ୍ଡନ କରିଛି । ଏହି ଶିବ କୈନ୍ଦ୍ରିକ ପୁରାଣଗୁଡ଼ିକ ମଧ୍ୟରୁ ଶିବ ପୁରାଣର ପର୍ଯ୍ୟାଲୋଚନା କରିବା ପୂର୍ବରୁ ଭାରତୀୟ ଧର୍ମ ଚେତନାରେ ଶିବଙ୍କର କେବେ ଆବିର୍ଭାବ ଘଟିଲା ତାହା ପ୍ରଥମେ ଅନୁଶୀଳନୀୟ ।

ଶିବ ଶବ୍ଦର ଅର୍ଥ ମଙ୍ଗଳମୟ । ଅର୍ଥାତ୍ ଯେଉଁ ଦେବତାଙ୍କର ମୁଖ୍ୟକର୍ମ ଜଗତର ମଙ୍ଗଳ କାରଣ ସେହି ହିଁ ଶିବ । କିନ୍ତୁ ଭାରତୀୟ ସଂସ୍କୃତର ଆଦି

(୨୦) ବିଶ୍ୱଧର୍ମ ଦର୍ଶନ—ପୃ ୮୯

କାଳରେ ଶିବ ହୁଙ୍କାର ପ୍ରଚଳନ ନଥିଲା । ପ୍ରକୃତରେ ବିଭିନ୍ନ ଚେତନ ଓ ଚୈତନ୍ୟମୟ ଶକ୍ତିକୁ କେବଳ ପ୍ରାରମ୍ଭିକକାଳରେ ଉପାସନା କରାଯାଇ ଥିବାରୁ ବୈଦିକ ଯୁଗରେ ଇନ୍ଦ୍ର, ଅଗ୍ନି, ବରୁଣ, ବାୟୁ, ସୂର୍ଯ୍ୟ-ପ୍ରଭୃତି ପ୍ରଧାନ ଦେବତାରୂପେ ପରିଗଣିତ ହେଉଥିଲେ । ଏହି ଦେବତାମାନଙ୍କ ମଧ୍ୟରୁ ରୁଦ୍ର ଅନ୍ୟତମ ଦେବତା ଥିଲେ । ହେଲେ ଇନ୍ଦ୍ର, ଅଗ୍ନି, ବରୁଣ ସବିତୃଉଷସ୍ ପ୍ରଭୃତି ଦେବତାଙ୍କ ସହିତ ରୁଦ୍ରଙ୍କୁ ସମାନ ଆସନ ଦିଆଯାଇନାହିଁ । ସେମାନଙ୍କୁ ପ୍ରଥମଶ୍ରେଣୀର ଦେବତାରୂପେ ଗ୍ରହଣ କଲେ ରୁଦ୍ରଙ୍କୁ ଦ୍ୱିତୀୟ ଶ୍ରେଣୀର ଦେବତାରୂପେ ଗ୍ରହଣ କରାଯିବ । ଇନ୍ଦ୍ରାଦିଙ୍କ ଉଦ୍ଦେଶ୍ୟରେ ଋଗ୍‌ବେଦରେ ଶତାଧିକ ସୂକ୍ତ ରଚନା କରାଯାଇଥିବାବେଳେ ପ୍ରଥମ, ଦ୍ୱିତୀୟ ଓ ସପ୍ତମ ମଣ୍ଡଳର ତିନୋଟି ସୂକ୍ତହିଁ କେବଳ ରୁଦ୍ରଙ୍କ ପାଇଁ ଉଦ୍ଦିଷ୍ଟ ।

ଋଗ୍‌ବେଦର ପ୍ରଥମ ମଣ୍ଡଳ ପ୍ରଥମ ମନ୍ତ୍ର :

"ଇମା ରୁଦ୍ରାୟ ତବସେ କପର୍ଦ୍ଦିନେ କ୍ଷୟଦ୍ୱୀରାୟ ପ୍ରଭରାମହେ ମତୀଃ । ଯଥା ଶମ୍ ଅସଦ୍ ଦ୍ୱିପଦେ ଚତୁଷ୍ପଦେ, ବିଶ୍ୱଂ ପୁଷ୍ଟଂ ଗ୍ରାମେ ଅସ୍ମିନ୍ନନାତୁରମ୍ ।।"
ଇତ୍ୟାଦି ।

ଏତଦ୍‌ଭିନ୍ନ ଋଗ୍‌ବେଦର ପ୍ରଥମ ମଣ୍ଡଳ ସତେଇଶି ସୂକ୍ତର ଦଶମ ମନ୍ତ୍ରରେ ଅଗ୍ନିକୁ ରୁଦ୍ର କୁହାଯାଇଛି । ଯଥା—

"ଜରାବୋଧ ତଦ୍ ବିବିଡ୍‌ଢି ବିଶେବିଶେ ଯଜ୍ଞୀୟାୟ
ସ୍ତୋମଂ ରୁଦ୍ରାୟ ଦୃଶିକମ୍"

ଦ୍ୱିତୀୟମଣ୍ଡଳ ପ୍ରଥମ ସୂକ୍ତର ଷଷ୍ଠମନ୍ତ୍ରରେ ଏବଂ ତୃତୀୟମଣ୍ଡଳ ଦ୍ୱିତୀୟ ସୂକ୍ତର ପଞ୍ଚମ, ଷଷ୍ଠ ଓ ସପ୍ତମ ମନ୍ତ୍ରରେ ଅଗ୍ନିକୁ ରୁଦ୍ରରୂପେ ଅଭିହିତ କରାଯାଇଛି । କିନ୍ତୁ ସପ୍ତମ ମଣ୍ଡଳ ଦଶମ ସୂକ୍ତର ଚତୁର୍ଥ ମନ୍ତ୍ରରେ ଅଗ୍ନିକୁ ରୁଦ୍ରରୂପେ ଅଭିହିତ କରାଯାଇଛି । କିନ୍ତୁ ସପ୍ତମ ମଣ୍ଡଳ ଦଶମ ସୂକ୍ତର ଚତୁର୍ଥ ମନ୍ତ୍ରରେ ଅଗ୍ନି ଓ ରୁଦ୍ରଙ୍କରଭେଦ ନିରୂପିତ ହୋଇଛି । ଯଥା—

ଇନ୍ଦ୍ରଂନୋ ଅଗ୍ନେ ବସୁଭିଃ ସଜୋଷା, ରୁଦ୍ରଂ ରୁଦ୍ରେଭିରାବହା ବୃହନ୍ତମ୍ ।। ଏବଂ ଦଶମ ମଣ୍ଡଳ ଶହେ ଛବଶ ସୂକ୍ତର ପଞ୍ଚମ ମନ୍ତ୍ରରେ—

ଉଗ୍ରଂ ମରୁଦ୍ଭୀ ରୁଦ୍ର ହୁବେମେନ୍ଦ୍ରଂ ଅଗ୍ନି ସ୍ୱସ୍ତୟେ ଅତ ଦ୍ୱିଷଃ ।।

ଏତଦ୍‌ଭିନ୍ନ ପ୍ରଥମ ମଣ୍ଡଳର ତେୟାଳିଶ ସୂକ୍ତର ୬ଷ୍ଠିମନ୍ତ୍ରରେ ଏବଂ ୭ମ ମଣ୍ଡଳର ଚଉସ୍ତରୀ ସୂକ୍ତର ପ୍ରତ୍ୟେକଟି ମନ୍ତ୍ରରେ ରୁଦ୍ରସୋମଙ୍କର ମିଳିତ ଭାବେ ସ୍ତୁତ କରାଯାଇଛି । ଅଥର୍ବ ବେଦରେ ରୁଦ୍ରଙ୍କୁ ପଶୁପତି ରୂପେ କଳ୍ପନା କରାଯାଇଛି ।

ଯଥା—

ଯ ଈଶେ ପଶୁପତିଃ ପଶୁନାଂ ଚତୁଷ୍ପ ଦା ମୂତ ଯୋ ଦ୍ୱିପଦାମ୍
ନିଷ୍କ୍ରିତଃ ସ ଯଜ୍ଞିୟଃ ଭାଗମେତୁ ରାୟସ୍ପୋଷା ଯଜମାନଂ ସଚନ୍ତାଂ
(୨ । ୩୪ । ୧)

ପୁନଶ୍ଚ ମରୁତ୍ପିତା ଓ ପଶୁପତି ରୁଦ୍ର ଭାବେ, ଯଥା—

ମରୁତାଂ ପିତା ପଶୂନାମଧିପତିଃ ସ ମାବତୁ ।

ଏହାଛଡ଼ା ଅଥର୍ବ ବେଦରେ ଷଷ୍ଠକାଣ୍ଡ ଷୋଡ଼ଦଶ ସୂକ୍ତର ତିନୋଟି ମନ୍ତ୍ରରେ ରୁଦ୍ରଙ୍କୁ ସ୍ତୁତ କରାଯାଇଛି । ଏକାଦଶକାଣ୍ଡରେ ପ୍ରଥମ ସୂକ୍ତରେ ରୁଦ୍ରଙ୍କୁ ବିବିଧ ନାମରେ ସ୍ତୁତ କରାଯାଇଛି ।

ଯଥା—

ଭବାଶର୍ବୌ ମୃଡ଼ତଂ ମାଭି ଯାତଂ ଭୂତପତି ପଶୁପତି ନମୋବାଂ
ପ୍ରତିହିତାମାୟତାଂ ମାବି ସ୍ରାଷ୍ଟଂ ମା ନୋ ହିଂସିଷ୍ଟଂ ଦ୍ୱିପ ଦୋମା ଚତୁଷ୍ପଦଃ
(୧୧ । ୨ । ୧)

ମକ୍ଷିକାସ୍ତେ ପଶୁପତେ ବୟାଂସୀ ତେ ବିଧସେ ମା ବିଦନ୍ତ
(୧୧ । ୨ । ୨)

କ୍ରନ୍ଦାୟ ତେ ପ୍ରାଣାୟ ଯାଶ୍ଚତେ ଭବ ରୋପୟଃ
ନମସ୍ତେ ରୁଦ୍ର କୃଣ୍ମଃ ସହସ୍ରକ୍ଷାୟାମର୍ତ୍ୟ ।।
(୧୧।୨।୩)

ଯଜୁର୍ବେଦର ବାଜସନେୟି ସଂହିତାରେ ଶତରୁଦ୍ରୀୟ ସୂକ୍ତ ରହିଛି । ସେଠାରେ ଜଣେ ରୁଦ୍ର ନୁହନ୍ତି ସେ ସଂଖ୍ୟାରେ ଶହେ । ତାଙ୍କ ସ୍ତୁତିରେ କୁହାଯାଇଛି—

ନମସ୍ତେ ରୁଦ୍ର ମାନ୍ୟବ ଓ ତୋ ତାଇଷବେ ନମଃ । ବାହୁଭ୍ୟାମୁତ ତେ ନମଃ
ଯା ତେ ରୁଦ୍ର ଶିବା ତନୁରଘୋ ଗ୍ପାପକାଶିନି ।
ତୟା ନସ୍ତନ୍ୱା ଶନ୍ତମୟା ଗିଶନ୍ତାଭି ଚ୍କଶୀହି
ଯାମିଷୁଂ ଗିଗ୍ନିଶନ୍ତ ହସ୍ତେ ବିଭର୍ଷ୍ୟସ୍ତବେ
ଶିବାଂ ଗିଗ୍ନିଶତାଂ କୁରୁ ମା ହିଂସିଃ ପୁରୁଷଂ ଜଗତ୍ ॥ ଇତ୍ୟାଦି ।

ଋଗ୍‌ବେଦରେ ଅନ୍ୟ କେତେକ ଦେବତାଙ୍କର ସ୍ତୁତି କରାଗଲା ବେଳେ ମଧ୍ୟ ସେଠାରେ ରୁଦ୍ରଙ୍କ ଉଲ୍ଲେଖ ରହିଛି । ଏସବୁ ସୂକ୍ତମାନଙ୍କରୁ ରୁଦ୍ରଙ୍କର ଯେଉଁ ସ୍ୱରୂପ ଉଦ୍‌ଘାଟିତ ହୁଏ ସେଥିରୁ ନିର୍ଦ୍ଦିଷ୍ଟଭାବେ ତାଙ୍କ କେଉଁ ପ୍ରକୃତିର ପ୍ରତୀକ କହିହୁଏ ନାହିଁ । ରୁଦ୍ର ଶବ୍ଦର ଆକ୍ଷରିକ ଅର୍ଥ, ମରୁଦ୍‌ଗଣଙ୍କ ସହ ଏହାଙ୍କର ସଂପର୍କ କ୍ରୂରସ୍ୱଭାବାଦିରୂପ ଶକ୍ତିଧର ଥିବାରୁ ଏହାଙ୍କୁ ବିଭିନ୍ନ ସମାଲୋଚକ ବିଭିନ୍ନ ପ୍ରକାରେ ବିଶ୍ଳେଷଣ କରନ୍ତି । ଜର୍ମାନ ପଣ୍ଡିତ ଓେ୍ୱବର କହନ୍ତି-ରୁଦ୍ର ଝଞ୍ଜା ସଂଳସମ୍ବନ୍ଧୀ ଭୟଙ୍କର ଶବ୍ଦର ପ୍ରତୀକ । ମ୍ୟାକ୍‌ଡୋନେଲ୍ କହନ୍ତି ଯେ ରୁଦ୍ର ଏବଂ ଅଗ୍ନିଙ୍କର ସାମ୍ୟ ଥିବାଯୋଗୁ ରୁଦ୍ର ବିଶୁଦ୍ଧ ଝଞ୍ଜାବାତ ନୁହଁନ୍ତି ବରଂ ବିନାଶକାରୀ ବିଦ୍ୟୁତ୍ ରୂପରେ ଝଞ୍ଜାବାତର ବିଧ୍ୱଂସକ ସ୍ୱରୂପର ପ୍ରତୀକ ଅଟନ୍ତି (୨୧) ଗବେଷକ ପଣ୍ଡିତ ଶ୍ରୀ ଭଣ୍ଡେକର ମଧ୍ୟ ରୁଦ୍ରଙ୍କ ପ୍ରକୃତିର ବିନାଶକାରୀ ଶକ୍ତିର ପ୍ରତୀକ ରୂପେ ଗ୍ରହଣ କରିଛନ୍ତି । (୨୨) ଉଇଲ୍‌ସନ୍ ରୁଦ୍ରଙ୍କୁ ଇନ୍ଦ୍ରଙ୍କର ଏକ ରୂପବୋଲି ଗ୍ରହଣ କରିଛନ୍ତି । ପ୍ରଫେସର କୀଥ୍ ରୁଦ୍ରଙ୍କୁ ବାୟୁର ମଙ୍ଗଳକାରୀ ରୂପ ରୂପେ ଗ୍ରହଣ ନକରି କେବଳ ବିନାଶକାରୀ ଶକ୍ତିରୂପେ ଗ୍ରହଣ କରିଛନ୍ତି । (୨୩) କୌଣସି କୌଣସି ଆଲୋଚକ ମଧ୍ୟ

୨୧ । Mac Donelle—Vedie Mythology, Page 78
୨୨ । Vandonekar —Vaishnabism and Saivaism·
୨୩ । ପ୍ରଫେସର କୀଥ୍ ; Religion and Mythology of Rg veda, Page—147

ରୁଦ୍ରଙ୍କୁ ମୃତ୍ୟୁର ପ୍ରତୀକ ରୂପେ ଗ୍ରହଣ କରିଛନ୍ତି । ମୃତ୍ୟୁର ପ୍ରତୀକ ହେଲେ ମଧ୍ୟ ତାଙ୍କୁ ଯମ ବୋଲି ଗ୍ରହଣ କରାଯାଇନାହିଁ । ରୁଦ୍ରଙ୍କର ବର୍ଣ୍ଣ ରକ୍ତବର୍ଣ୍ଣ ବୋଲି ସ୍ୱୀକୃତ । ତାଙ୍କୁ ପାର୍ବତ୍ୟ ଅଞ୍ଚଳରେ ବାସକରୁଥିବା ବଣ୍ୟଜାତିମାନଙ୍କର ପ୍ରଧାନ ଦେବତାରୂପେ ମଧ୍ୟ କେତେକ ସମାଲୋଚକ ଗ୍ରହଣ କରନ୍ତି । (୨୪) ଯେ ଯାହା ହେଉନା କାହିଁକି ରୁଦ୍ରଙ୍କୁ ଏକ ମଧ୍ୟମ ଶ୍ରେଣୀର ଦେବତା ରୂପେ ଗ୍ରହଣ କରାଯାଇଛି

ଋଗ୍‌ବେଦର ଉତ୍ତର ଯୁଗରେ ରୁଦ୍ରଙ୍କର ପ୍ରାଧାନ୍ୟ ବଢ଼ିଛି । ଋଗ୍‌ବେଦରେ ବିଷ୍ଣୁଙ୍କର ଅବସ୍ଥା ମଧ୍ୟ ତଦ୍ରୂପ । ବିଷ୍ଣୁଙ୍କୁ ମଧ୍ୟ ଜଣେ ମଧ୍ୟ ଶ୍ରେଣୀର ଦେବତା ରୂପେ ସ୍ତୁତ କରାଯାଇଛି । କିନ୍ତୁ ପରବର୍ତ୍ତୀ ଯୁଗରେ ବିଷ୍ଣୁ ଏବଂ ରୁଦ୍ରଙ୍କ ଚରିତ୍ରରେ ଅଧିକ ଦେବତ୍ୱ ଆରୋପ କରାଯାଇଛି ଏବଂ ସେମାନଙ୍କୁ ସଂଖ୍ୟାଧିକ ଶ୍ଳୋକରେ ସ୍ତବ କରାଯାଇଛି । ପ୍ରାୟ ୩ ହଜାର ବର୍ଷତଳେ ରୁଦ୍ର ଓ ବିଷ୍ଣୁ ପ୍ରାୟ ସମାନ ଆସନ ଲାଭ କରିଛନ୍ତି । ବୈଦିକ-ଯୁଗର ଶେଷଭାଗ ଆଡ଼କୁ କେତେକ ସାଧାରଣ ଧର୍ମୀକ ସାମ୍ୟତାକୁ ଛାଡ଼ି ଦେଲେ ବିଷ୍ଣୁ ମଙ୍ଗଳର ପ୍ରତୀକ ଏବଂ ରୁଦ୍ରଙ୍କୁ ମୁଖ୍ୟତଃ ସଂହାରର ପ୍ରତୀକଭାବେ ଗ୍ରହଣ କରି ନିଆଯାଇଛି (୨୫) ଯଜୁର୍ବେଦରେହିଁ ରୁଦ୍ରଙ୍କୁ ପ୍ରଥମେ ଶିବ ରୂପେ କଳ୍ପନା କରାଯାଇଛି । ଯଥା :—

---

24 Rudra : the god of death, according the early popular mythology was not Yama, but Rudra, the red one. He was also the god of child communities living among the mountains and forest, who weie generally given to uncivil activities.

—Prof. R. N. Dandekar, Indian Mythology, The Cultural Heritage of India, Page-229

25. It is some what remarkable that the two great deities of modern Hinduism, Vishnu and Siva, who are equal in importance, should have been in the same

ଅବତତଧନ୍ୱା ପୀନାକାବସଃ କୃତ୍ତିବାସା ଅହିଂସନ୍ନଃ ଶିବୋଽତୀହି (୨୬)

× × ×

ଶିବୋ ନାମାସି ସ୍ୱଧିତିସ୍ତେ ପିତା ନମସ୍ତେ ଅସ୍ତୁ ମା ମା ହିଂସୀଃ
ନିବର୍ତ୍ତୟାମ୍ୟାୟୁଷେ ଅନ୍ନାଦ୍ୟାୟ ପ୍ରଜନନାୟ ରାୟସ୍ପୋଷାୟ ସୁପ୍ରଜାସ୍ତ୍ୱାୟ
ସୁବୀର୍ଯ୍ୟାୟ (୨୭)

ତେଣୁ ଗବେଷକ ପଣ୍ଡିତ ମାକ୍‌ଡୋନେଲ କହନ୍ତି The Rudra of the Rg-veda has began to appear on the scene as Siva, being several times mentioned by that name as well as by other epithets later peculiar to Siva, such as Sankar and Mahadeva. (୨୮) ଏବଂ ସାର ଉଇଲସ୍‌ମସ୍ ମଧ୍ୟ ଅନୁରୂପ ମତ ଦେଇ କହନ୍ତି ଯେ— Indra, Vayu, Maruta and Rudras appear to have been all forms and modifications of each other, and these with different names as later mythology were gathered into one perfication

---

level through far bellow the leading deties, three thousand years ago, as Vishnu and Rudra (earlier form of Siva) in the Rg-veda. Even then they show some general characteristics as near, Vishnu being specially benevolent and Rudra terrible.

—Arthur A. Mac. Donell, A history of Sankrit literature Page—77

୨୬ । ଯଜୁର୍ବେଦ—ବାଜ ସନେୟି ସଂହିତା

୨୭ । ଯଜୁର୍ବେଦ—ବାଜସନେୟି ସଂହିତା ୩।୬୩

28. Arthur A. Mac Donell, A history of Sanskrit LiteraturePage,—182

siva. (୨୯)। ଶିବଙ୍କୁ ଧୀରେ ଧୀରେ ମଙ୍ଗଳମୟ ଓ ସଂହାରକର୍ତ୍ତା ରୂପେ ସ୍ତୁତ କରାଯାଇଛି ଏବଂ ହିନ୍ଦୁ ଦର୍ଶନରେ ଶିବ ଏକ ବଶିଷ୍ଟ ସ୍ଥାନ ଗ୍ରହଣ କରିଛନ୍ତି । ଶିବଙ୍କୁ କେନ୍ଦ୍ର କରି ଶୈବବାଦ ସୃଷ୍ଟି ହୋଇଛି । ସେହିଭଳି ବିଷ୍ଣୁଙ୍କୁ ନେଇ ବୈଷ୍ଣବ ସମ୍ପ୍ରଦାୟ । ତେଣୁ ପ୍ରାକ୍‌ବୈଦିକ କାଳରେ ଯେପରି ଅଗ୍ନି, ବାୟୁ ଓ ସୂର୍ଯ୍ୟ ମୁଖ୍ୟ ଦେବତା ଥିଲେ ସେହିଭଳି ପରବର୍ତ୍ତୀ କାଳରେ ଏହି ତ୍ରିମୂର୍ତ୍ତିଙ୍କର ଅନୁକରଣ ମୁଖ୍ୟ ଜନଦେବତାଙ୍କର ସୃଷ୍ଟି ହୋଇଛି । ବୈଷ୍ଣବ ଓ ଶୈବବାଦର ଉତ୍ଥାନ ସଙ୍ଗେ ସଙ୍ଗେ ବ୍ରାହ୍ମଣ୍ୟଧର୍ମର ପ୍ରତିଷ୍ଠା ନିମନ୍ତେ ଏବଂ ଏକ ଜାତୀୟ ସଂହତି ଆଣିବା ନିମନ୍ତେ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କୁ ପରବର୍ତ୍ତୀ ତ୍ରିମୂର୍ତ୍ତି ରୂପେ ଗ୍ରହଣ କରାଯାଇଛି । କିନ୍ତୁ ବୈଦିକ ଯୁଗର ଶେଷ-ବେଳକୁ ହିଁ ଏହି ତ୍ରିମୂର୍ତ୍ତି ଶ୍ରେଷ୍ଠ ଦେବତା ରୂପେ ପରିକଳ୍ପିତ ହୋଇଛନ୍ତି । କିନ୍ତୁ କାଳକ୍ରମେ ମଧ୍ୟ ବ୍ରହ୍ମାଙ୍କ ଗୁରୁତ୍ୱ କମିଯାଇଛି । ବିଷ୍ଣୁ ଓ ଶିବଙ୍କୁ ନେଇ ଦୁଇଟି ମୁଖ୍ୟ ସମ୍ପ୍ରଦାୟ ଗଢ଼ି ଉଠିଛି (୩୦) ।

ଶିବଙ୍କର ଐତିହାସିକତା ମଧ୍ୟ ସୁଦୂର ପ୍ରମାଣିତ । ସିନ୍ଧୁ ଉପତ୍ୟକାର ଭଗ୍ନାବଶେଷରୁ ମିଳିଥିବା ପଶୁପତି ମୂର୍ତ୍ତି ଶିବଙ୍କ ଛଡ଼ା ଅନ୍ୟ କେହି ନୁହନ୍ତି ! ସେଲିଉକସଙ୍କ ଦ୍ୱାରା ପ୍ରେରିତ ମେଘାସ୍ଥିନିସ୍ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ରାଜଧାନୀ ପାଟଳୀପୁତ୍ରରେ ଖ୍ରୀ. ପୂ. ୩୧୧ରୁ ୩୦୨ ପର୍ଯ୍ୟନ୍ତ ଅବସ୍ଥାନ କରି Ta Indika ନାମରେ ଯେଉଁ ବିବରଣୀ ଲେଖିଛନ୍ତି ସେଥିରେ ସେ ଶିବଙ୍କୁ ପର୍ବତ ଉପରେ ଅବସ୍ଥାନ କରୁଥିବା ଗ୍ରୀକ୍ ଦେବତା Dionysusଙ୍କ ସହ ତୁଳନା କରିଛନ୍ତି (ଏଠାରେ ଶିବଙ୍କର ହିମାଳୟରେ ଅବସ୍ଥାନ

---

29. Sir Monier william, Hinduism, Page—90

୩୦ । ଏ ସଂପର୍କରେ ମାର୍କସମୂଲରଙ୍କ ମତକୁ ଗ୍ରହଣ କରାଯାଇପାରେ—

In later times when the sects of Visnu and Siva had sprung up and the Indian world was divided between them, it seems as if different deities had seen ascribed to different casts—A History of Sanskrit literature.

ମୁରଣୀୟ) ସେତେବେଳକୁ ଶିବପୂଜା ଓ ଶୈବବାଦ, ଭାରତୀୟ ଧର୍ମ ଧାରଣାରେ ବିକାଶ ଲାଭ କରିବା କଥା ଉଲ୍ଲେଖ କରିଛନ୍ତି (୩୧)

ବେଦୋତ୍ତର ଯୁଗରେ ଅର୍ଥାତ୍ ରାମାୟଣ ମହାଭାରତ ଯୁଗରେ ରୁଦ୍ର ଓ ଶିବଙ୍କ ସ୍ୱରୂପ ବର୍ଣ୍ଣିତ । ରାମାୟଣ ଅପେକ୍ଷା ମହାଭାରତରେ ଶିବଙ୍କର ଅଧିକ ବର୍ଣ୍ଣନା ରହିଛି । ମହାଭାରତର ବହୁ ସଂସ୍କୃତ ସଂସ୍କରଣ ଥିବାରୁ ଏଥିରୁ ଅନୁମିତ ହୁଏଯେ ଶିବଙ୍କ ସମ୍ପର୍କରେ ପ୍ରଦତ୍ତ ବିବରଣୀ ଏକ ସମୟରେ ରଚିତ ହୋଇନାହିଁ । ମହାଭାରତରେ ବର୍ଣ୍ଣିତ ଶିବଙ୍କର ଦୁଇଟି ରୂପ ଆମ ସମ୍ମୁଖରେ ଉଦ୍‌ଘାଟିତ ହୁଏ । ଗୋଟିଏ ଦାର୍ଶନିକ ରୂପ ଓ ଅନ୍ୟଟି ଲୋକ ପ୍ରଚଳିତ । ଦାର୍ଶନିକ ରୂପରେ ଶିବଙ୍କୁ ପରଂବ୍ରହ୍ମ ରୂପେ ସମ୍ମାନ ଦିଆଯାଇଛି । ସେ ଅସୀମ ଅଚିନ୍ତ୍ୟ ଓ ବିଶ୍ୱସ୍ରଷ୍ଟା ଅଟନ୍ତି । ବିଶ୍ୱକୁ ମଧ୍ୟ ସଂହାର କରନ୍ତି । ସେ ପରମ ଅଟନ୍ତି ଏବଂ ପରମ ବ୍ୟତୀତ ଅନ୍ୟ କିଛି ନୁହନ୍ତି । ସେ ମହାତତ୍ତ୍ୱର ଏକମାତ୍ର ଉଦ୍‌ଗମ ଏବଂ ଏକମାତ୍ର ଆଧାର ଅଟନ୍ତି । ସେ ନିତ୍ୟ, ଅବ୍ୟକ୍ତ ଓ କାରଣ ସ୍ୱରୂପ । ସେ ଏକ ମଧ୍ୟ ହୋଇ ଅନେକ ରୂପରେ ପ୍ରକଟିତ ହୁଅନ୍ତି (୩୨) ସେ ସର୍ବତ୍ର ପରିବ୍ୟାପ୍ତ ଓ ସବୁର ମୂଳାଧାର । ସେ ବିଶ୍ୱର ଆଦି ଅଟନ୍ତି ଏବଂ ତାଙ୍କ ଇଚ୍ଛା ଅନୁସାରେ ବିଶ୍ୱର ବିଲୟ ସଂଘଟିତ ହୁଏ । ବିଶ୍ୱ ସ୍ରଷ୍ଟାଙ୍କର ଏହି ସଂହାର ରୂପକୁ କାଳରୁଦ୍ର କୁହାଯାଏ (୩୩) । ଶିବଙ୍କର ସାଂଖ୍ୟ ସହିତ ମଧ୍ୟ ସମ୍ପର୍କ ରହିଛି । ସାଂଖ୍ୟର ଶ୍ୱେତାଶ୍ୱେତର ଉପନିଷଦରେ ଯେଉଁ ପୁରୁଷଙ୍କ କଥା କୁହାଯାଇଛି, ସେ ବେଦୋତ୍ତର କାଳୀନ ସାଂଖ୍ୟାଦର୍ଶନର ପୁରୁଷଙ୍କ ଠାରୁ କିଛି ପରିମାଣରେ ଭିନ୍ନ ଅଟନ୍ତି କିନ୍ତୁ ବେଦାନ୍ତର ବ୍ରହ୍ମଙ୍କର ନିକଟବର୍ତ୍ତୀ ଅଟନ୍ତି । ଶିବଙ୍କର ସାଂଖ୍ୟ ସହିତ ସଂପର୍କ ଏହି ଉପନିଷଦୀୟ ପୁରୁଷ ରୂପରେ ପ୍ରକଟିତ । ମହାଭାରତରେ ଯେଉଁ ପରମ କାରୁଣିକ ପୁରୁଷଙ୍କର ବର୍ଣ୍ଣନା ଆମେ ଦେଖୁଁ ସେ ବେଦୋତ୍ତର କାଳୀନ ପୁରୁଷଙ୍କଠାରୁ ବେଦାନ୍ତର

---

୩୧ । ଦେଖନ୍ତୁ A History of sanskrit Literature by Arthur A. Mac Donell, Page—183.

୩୨ । ମହାଭାରତ, କର୍ଣ୍ଣପର୍ବ, ୨୪, ୬୨, ୬୪

୩୩ । ମହାଭାରତ, ଅନୁଶାସନ ପର୍ବ, ୨୨, ୧୬୬, ୨୨, ୧୮୮, ୯୦

ପୁରୁଷଙ୍କର ଅଧିନ ନିଳଟବର୍ତ୍ତୀ ଅଟନ୍ତି । ତେଣୁ ସଂଖ୍ୟାରେ ଶିବଙ୍କର ଯେଉଁ ସ୍ୱରୂପ ତାହା ଧୀରେ ଧୀରେ କ୍ଷୀଣ ହୋଇ ସଂପୂର୍ଣ୍ଣ ଭାବେ ଲୁପ୍ତ ହୋଇଯାଇଛି ଏବଂ ମହାଭାରତର ଶେଷ ଭାଗରେ ତାଙ୍କୁ ବେଦର ପରଂବ୍ରହ୍ମ ପୁରୁଷ ରୂପେ ସ୍ୱୀକାର କରି ନିଆଯାଇଛି (୩୦)

ଶିବଙ୍କର ଲୋକ ପ୍ରଚଳିତ ରୂପରେ ତାଙ୍କର ବିବାହ, ସୃଷ୍ଟି ପ୍ରକରଣ, ସୌମ୍ୟ ରୁଦ୍ର ଭୀମମୂର୍ତ୍ତି ଦର୍ଶନମୂଳକ ବିଭିନ୍ନ କାର୍ଯ୍ୟାବଳୀ ପ୍ରଭୃତ ଅନ୍ତର୍ଗତ । ଲୋକ ପ୍ରଚଳିତ ରୂପରେ ସେ ତାଙ୍କର ପ୍ରିୟ ଅସ୍ତ୍ର ପିନାକ ନାମକ ଧନୁ ଓ ଶୂଳ ନାମକ ବଜ୍ରଧାରୀ ଶିବ (୩୫) । ଏଥି ନିମନ୍ତେ ତାଙ୍କୁ 'ସର୍ବଶ୍ରୁଧଯୋଧି' ବୋଲି ମଧ୍ୟ କୁହାଯାଇଛି (୩୬) । ପୁନଶ୍ଚ ଲୋକ ପ୍ରଚଳିତ ରୂପରେ ସେ ଶ୍ମଶାନବାସୀ । ଚମପରିଧାନକାରୀ, ଭସ୍ମ ବିଲେପିତ ଶରୀର ଓ ଭୂଷିତ ଅଟନ୍ତି । ଏହି ଲୋକ ପ୍ରଚଳିତ ରୂପରେ ମଧ୍ୟ ସେ ବୈଦିକ ଯୁଗରୁ ସର୍ବଜ ପୂଜିତ ହୋଇ ଆସୁଅଛନ୍ତି ।

ଆଗରୁ ଆଲୋଚିତ ହୋଇଛି ଯେ ନିଜର ଇଷ୍ଟ ବା ସମ୍ପ୍ରଦାୟର ଦେବ ଦେବୀଙ୍କର ପ୍ରତିଷ୍ଠା ନିମନ୍ତେ ପୁରାଣରେ ତାଙ୍କୁ ସର୍ବଶ୍ରେଷ୍ଠ ରୂପେ ପରିକଳ୍ପନା କରାଯାଉଥିଲା । ତେଣୁ ଶିବ ଧୀରେ ଧୀରେ ଏକ ସମ୍ପ୍ରଦାୟର ମୁଖ୍ୟ ରୂପେ ସାହିତ୍ୟ ବା ପୁରାଣ ମଧ୍ୟକୁ ପ୍ରବେଶ କରି ବହୁ ଶ୍ଳୋକରେ ବନ୍ଦିତ ହୋଇ ସମଗ୍ର ଭାରତରେ ବିଶ୍ୱସୃଷ୍ଟି, ପାଳନ ଓ ସଂହାର କର୍ତ୍ତାରୂପେ କୀର୍ତ୍ତିତ ହୋଇ ଅଛନ୍ତି ।

ସାହିତ୍ୟ କୃତୀରେ ପ୍ରଥମେ ଅଶ୍ୱଘୋଷଙ୍କ ରଚିତ ବୁଦ୍ଧ ଚରିତରେ ଶିବଙ୍କର ଉଲ୍ଲେଖ କରାଯାଇଛି (୩୭) । ଶୂଦ୍ରକଙ୍କର ମୃଚ୍ଛକଟିକରେ ଶିବଙ୍କୁ

---

୩୪– ଡଃ ଯଦୁବଂଶି, ଶୈବମତ, ପୃଷ୍ଠା–୬୭–୬୮ ଦ୍ରଷ୍ଟବ୍ୟ

୩୫– ମହାଭାରତ, ବନପର୍ବ, ୩୩, ୮୬, ୩୫, ଉଦ୍ୟୋଗ ପର୍ବ–୧୧୬, ୬ ଦେଖନ୍ତୁ

୩୬– ମହାଭାରତ କର୍ଣ୍ଣପର୍ବ–୧୪

୩୭– ବୁଦ୍ଧ ଚରିତ—୧୦ । ୩

ଶିବ, ଈଶାନ, ଶଙ୍କର ଏବଂ ଶମ୍ଭୁନାମରେ ଉଲ୍ଲେଖ କରାଯାଇଛି । (୩୮) ମନୁସ୍ମୃତିରେ ମଧ୍ୟ ଶିବଙ୍କର ଉଲ୍ଲେଖ ରହିଛି (୩୯) ସେକାଳର ସବୁଠାରୁ ଶ୍ରେଷ୍ଠ ସାହିତ୍ୟକୃତି କାଳିଦାସଙ୍କର ରଚନାରେ ଶିବ ବିଶିଷ୍ଟସ୍ଥାନ ଅଧିକାର କରିଛନ୍ତି । ତାଙ୍କର କୁମାରସମ୍ଭବରେ ଶିବ ମୁଖ୍ୟ ଚରିତ୍ର ରୂପେ ବହୁ ବର୍ଣ୍ଣିତ । କାଳିଦାସଙ୍କର ମାଳବିକାଗ୍ନିମିତ୍ର ଏବଂ ଅଭିଜ୍ଞାନ ଶାକୁନ୍ତଳମ୍‌ରେ ମଧ୍ୟ ଶିବଙ୍କୁ ସ୍ତୁତ କରାଯାଇଛି । କିନ୍ତୁ ଶିବଙ୍କର ପୂର୍ଣ୍ଣ ବିକାଶ ଘଟିଛି ପୁରାଣରେ । ଶିବଙ୍କୁ ମୁଖ୍ୟ ଉପଜୀବ୍ୟକରି ଯେଉଁ ପୁରାଣଗୁଡ଼ିକ ରଚିତ ହୋଇଛି, ସେଗୁଡ଼ିକ ହେଲା; ଯଥା—ଅଗ୍ନି, ମତ୍ସ୍ୟ, କୂର୍ମ, ଲିଙ୍ଗ, ସ୍କନ୍ଦ ଓ ଶିବ ପୁରାଣ । ଏତଦ୍‌ଭିନ୍ନ ଅନ୍ୟାନ୍ୟ ପ୍ରାୟ ସବୁ ପୁରାଣରେ କିଛିନା କିଛି ଶିବଙ୍କ ବିଷୟରେ ଉଲ୍ଲେଖ ଅଛି । ବାୟୁ, ବ୍ରହ୍ମବୈବର୍ତ୍ତ ପ୍ରଭୃତି ପୁରାଣରେ ଶିବଙ୍କ ଉଦ୍ଦେଶ୍ୟରେ ବହୁ ଅଧ୍ୟାୟ ରଚନା କରାଯାଇଛି । କିନ୍ତୁ ଆମର ଆଲୋଚ୍ୟ ପ୍ରସଙ୍ଗ ଶିବ ପୁରାଣ ଥିବାରୁ ଏପ୍ରତି ବିଭିନ୍ନ ଦୃଷ୍ଟି କୋଣରୁ ଶିବ ପୁରାଣର ଆଲୋଚନା କରାଯାଉଛି ।

ପ୍ରଥମରୁ କୁହାଯାଇଛି ଯେ ଅଷ୍ଟାଦଶ ପୁରାଣ (ମହାପୁରାଣ) ମଧ୍ୟରେ କେହି କେହି ଶିବ ପୁରାଣକୁ ଅନ୍ତର୍ଭୁକ୍ତ କଲାବେଳେ କେହିକେହି ବାୟୁ ପୁରାଣକୁ ଗ୍ରହଣ କରିଥାନ୍ତି । ମାକ୍‌ସମୁଲର ପ୍ରମୁଖ ଶିବ ପୁରାଣକୁ ଅଷ୍ଟାଦଶ ପୁରାଣ ମଧ୍ୟରେ ଗ୍ରହଣ କରିନାହାନ୍ତି (୪୦) । ଶୈବବାଦୀମାନଙ୍କର ପୁରାଣ ମଧ୍ୟରେ ତାମସ ଶ୍ରେଣୀର ମହାପୁରାଣକୁ ଛାଡ଼ି ଅନେକ ପୁରାଣମଧ୍ୟ ଅନ୍ତର୍ଗତ; ଯଥାː—ସୌର ପୁରାଣ, ଶିବଧର୍ମ ପୁରାଣ, ଶିବ ଧର୍ମୋତ୍ତର ପୁରାଣ, ଶିବରହସ୍ୟ ପୁରାଣ, ଏକାମ୍ର ପୁରାଣ, ପରାଶର ଉପପୁରାଣ, ବଶିଷ୍ଠ ଲିଙ୍ଗ ପୁରାଣ, ଉପପୁରାଣ ଓ ଭିକ୍ଷାଦ ପୁରାଣ ପ୍ରଭୃତି । କିନ୍ତୁ ଏହି ପୁରାଣ ଗୁଡ଼ିକମଧ୍ୟରୁ ସୌରପୁରାଣ

---

୩୮- ମୃଚ୍ଛକଟିକ— ୧ । ୪୧

୩୯-ମନୁସ୍ମୃତି — ୩ । ୨୮୪

୪୦- ଦେଖନ୍ତୁ : F. Max Mullar ଙ୍କ ପ୍ରଣୀତ History of Sanskrit Literature.

ଓ ଏକାମ୍ର ପୁରାଣ ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇନାହିଁ (୪୧) ଅନ୍ୟଗୁଡ଼ିକ ପାଣ୍ଡୁଲିପି ଆକାରରେ ବିଭିନ୍ନ ସଂଗ୍ରହାଳୟରେ ସୁରକ୍ଷିତ ଅବସ୍ଥାରେ ଅଛି । ଏହିସବୁ ପୁରାଣମାନଙ୍କ ମଧ୍ୟରେ ଆମେ ଶିବ ପୁରାଣକୁ ମୁଖ୍ୟବୋଲି ଗ୍ରହଣ କରିପାରୁ । କାରଣ ଶୈବଧର୍ମର ସମସ୍ତ ଦର୍ଶନ ପୂଜାପଦ୍ଧତି, ଆଖ୍ୟାନ ଉପଖ୍ୟାନ ସବୁକିଛି ଶିବ ପୁରାଣରେ ସଂଗୃହୀତ । ତଥାପି ଶିବ ପୁରାଣକୁ କୌଣସି କୌଣସି ସମାଲୋଚକ ମହାପୁରାଣରୂପେ ଗଣନା କରନ୍ତିନାହିଁ । ତାର କାରଣ ମଧ୍ୟ ସୁସ୍ପଷ୍ଟ । ଏହି ପୁରାଣର ଅଧିକାଂଶ ଅଧ୍ୟାୟ ଅନ୍ୟ ନ୍ୟ ପୁରାଣରୁ ସଂଗ୍ରହ କରାଯାଇଛି । ଶିବ ପୁରାଣର ପ୍ରବକ୍ତାହେଲେ ସନତ୍କୁମାର ଏବଂ ଏହାର ୬ଟି ସଂହିତାରେ ବିଭକ୍ତହୋଇ ସନତ୍କୁମାର ସଂହିତା ନାମରେ ପରିଚିତ । ଏହି ଛଅଗୋଟି ସଂହିତା ସହିତ ମଧ୍ୟ ଇଶାନ ସଂହିତା, ଈଶ୍ୱର ସଂହିତା, ମୂର୍ତ୍ତି ସଂହିତା, ମାନବୀ ସଂହିତା ପ୍ରଭୃତିକୁ ଶିବ ପୁରାଣର ଅଂଶବୋଲି କେତେକ ଗ୍ରହଣକରନ୍ତି । ଏହି ସନତ୍କୁମାର ସଂହିତା ଖ୍ରୀଷ୍ଟିୟ ଅଷ୍ଟମ ଶତାବ୍ଦୀରେ ଜଣେ ବଙ୍ଗବାସୀ ପାଶୁପାତ ମତାବଲମ୍ବୀ (ଯେଉଁମାନେ ଶିବଙ୍କୁ ପଶୁପତି ରୂପେ ଉପାସନା କରନ୍ତି)ଙ୍କ ଦ୍ୱାରା ରଚିତ ହୋଇଥିଲା । (୪୨) କିନ୍ତୁ ପରବର୍ତ୍ତୀଯୁଗରେ ଆଗମୀୟ ଶୈବବାଦର ବିକାଶ ସଙ୍ଗେ ସଙ୍ଗେ ବିଭିନ୍ନ ସମୟରେ ଭିନ୍ନଭିନ୍ନ ଲୋକ ପ୍ରାୟ ଆଠ ନଅଗୋଟି ଶିବ ପୁରାଣ ରଚନା କରିଛନ୍ତି । ଯାହାଫଳରେ ଏଥିରେ ବହୁ ଆଞ୍ଚଳିକତା ପ୍ରବେଶ କରିଛି । ପରସ୍ପର ସହିତ ବହୁ ବିରୋଧୀମତ ମଧ୍ୟ ସ୍ଥାନ ପାଇଥିବାରୁ ଏବଂ ଏକ ନିର୍ଦ୍ଦିଷ୍ଟ ସତ୍ୟ ଉପରେ ପ୍ରତିଷ୍ଠିତ ହୋଇ ନଥିବାରୁ ବୋଧହୁଏ ଶିବ ପୁରାଣ ମହାପୁରାଣର ମର୍ଯ୍ୟାଦା ଲାଭକରି ନାହିଁ । ତେଣୁ ପରବର୍ତ୍ତୀ ଯୁଗରେ ଶିବ ପୁରାଣକୁ ମହାପୁରାଣ ରୂପେ ପ୍ରତିଷ୍ଠା କରିବା ନିମନ୍ତେ ସମୁଦାୟ ଶିବ ବିବରଣୀକୁ ସଂଗ୍ରହକରି

୪୧- ୧୯୬୨ ମସିହା, ପୁନାସ୍ଥିତ ଭଣ୍ଡାରେକର ଓରିଏଣ୍ଟାଲ୍ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍ ଅନୁଯାୟୀ ।

୪୨- ଦେଖନ୍ତୁ—Rajendra prasad Hazra ଙ୍କ ଦ୍ୱାରା ଲିଖିତ 'Uppuranas' ଅଧ୍ୟାୟ The Cultural Heritage of India. Page—282.

ବାରଗୋଟି ସଂହିତା ଓ ଏକଲକ୍ଷ ଶ୍ଳୋକରେ କଟଣ ଆଗମୀୟ ଶୈବବାଦୀ ନବମ ଶତାବ୍ଦୀରେ ଏକ ଶିବ ପୁରାଣ ରଚନା କରିଛନ୍ତି । କିନ୍ତୁ ଏହା ଲୋକ ସାଧାରଣରେ ଗୃହୀତ ହୋଇ ପାରିନାହିଁ । ବରଂ ୨୪୦୦୦ଶହ ଶ୍ଳୋକ ବିଶିଷ୍ଟ ଅଷ୍ଟମ ଶତାବ୍ଦୀରେ ରଚିତ ସନତ୍‌କୁମାର ସଂହିତା (ଶିବ ପୁରାଣ) ବହୁ ପରିମାଣରେ ମୌଳିକ ରଚନା ହୋଇଥିବାରୁ ଏହା ଶିବ ପୁରାଣର ମର୍ଯ୍ୟାଦା ଲଭିକରିଛି । ପରବର୍ତ୍ତୀ ସମୟରେ ବିଭିନ୍ନ ପ୍ରାକୃତ ଭାଷାର ଲୋକମାନେ ମଧ୍ୟ ଶିବ ପୁରାଣକୁ ନିଜ ନିଜ ଭାଷାରେ ରଚନା କରିଛନ୍ତି । ଆଧୁନିକ କାଳରେ ଓଡ଼ିଆଭାଷାରେ ଏହି 'ସନତ୍‌କୁମାର ସଂହିତା' ବା ଶିବ ପୁରାଣକୁ ହିଁ ଅବିକଳ ଅନୁବାଦ କରାଯାଇଛି ।

ଓଡ଼ିଆ ଭାଷାରେ ଆମେ ବର୍ତ୍ତମାନ ଦୁଇଟି ଶିବ ପୁରାଣର ଅନୁବାଦ ପାଉ । ଗୋଟିଏ ୧୯୩୬ରେ ପ୍ରଥମେ ଅରୁଣୋଦୟ ପ୍ରେସ୍, କଟକରୁ ପ୍ରକାଶିତ ଗୋପୀନାଥ ଶର୍ମାଙ୍କ ଦ୍ୱାରା ଏବଂ ଅନ୍ୟଟି ୧୯୬୭ରେ ରାଧାରମଣ ପ୍ରେସ୍, କଟକରୁ ପ୍ରକାଶିତ ପଣ୍ଡିତ ରତ୍ନାକର ଗର୍ଗବଟୁଙ୍କଦ୍ୱାରା ଅନୁବାଦ କରାଯାଇଛି । ଉଭୟତଃ ସେମାନେ ନିଜ ନିଜର ନାମରେ ଭଣିତା କରିଛନ୍ତି । ଆରମ୍ଭରେ କୃଷ୍ଣ ଦ୍ୱୈପାୟନ ବା ବ୍ୟାସଦେବକୃତ ବୋଲି ଉଭୟ ଉଲ୍ଲେଖ କରିଥିଲେହେଁ ପ୍ରକୃତରେ ଏହା ବ୍ୟାସଦେବଙ୍କ ସମୟର ରଚନା ନହୋଇ ଅଷ୍ଟମ ଶତାବ୍ଦୀର ରଚନା । ଉଭୟର ଏହା ଗୋଟିଏ ମୂଳପୁରାଣରୁ ଅନୁବାଦିତ ହୋଇ ୪ଖଣ୍ଡ ଏବଂ ୧୦୮ ଅଧ୍ୟାୟରେ ବିଭକ୍ତ ହୋଇଛି । ବିଷୟ ସୂଚୀ ସମାନ । କେବଳ କେତେକ ସ୍ଥାନରେ ପ୍ରକାଶଭଙ୍ଗିରେ ସାମାନ୍ୟ ଅସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଯଥା—ରତ୍ନାକର ଗର୍ଗବଟୁଙ୍କର ଗୋଟିଏ ଅଧ୍ୟାୟରନାମ 'କାମ ପ୍ରଭବ' ହୋଇଥିଲାବେଳେ ଗୋପୀନାଥ କର ଶର୍ମାଙ୍କର ଗ୍ରନ୍ଥରେ 'କାମଦେବ ରହସ୍ୟ' ବୋଲି କୁହାଯାଇଛି । ସାର୍ଥକ ଅନୁବାଦ ଦୃଷ୍ଟିରୁ ରତ୍ନାକର ଗର୍ଗବଟୁ କର ଶର୍ମା ଅଧିକ ସଫଳ ହୋଇଛନ୍ତି ।

**ବିଷୟବସ୍ତୁ**—ନୈମିଷ୍ୟାରଣ୍ୟରେ ଶୌନକ, ସନକ ଓ ସୂତଆଦି ଋଷିଙ୍କର ପ୍ରଶ୍ନକ୍ରମେ ସନତ୍‌କୁମାର ଶିବପୁରାଣ ବର୍ଣ୍ଣନା କରିଛନ୍ତି । ବ୍ରହ୍ମାସୁତ ସନତ କୁମାର ପୂର୍ବେ ପରାଶର ମୁନିଙ୍କ ପୁତ୍ର କୃଷ୍ଣଦ୍ୱୈପାୟନ ବ୍ୟାସଙ୍କଠାରୁ ଏହା

ଶୁଣିଥିଲେ ବୋଲି ଉଲ୍ଲେଖ କରିଛନ୍ତି । ଶିବ ପୁରାଣରେ କୌଣସି କୌଣସି ସ୍ଥାନରେ ଧର୍ମରାଜ ସନତ୍ କୁମାରଙ୍କୁ, ଶିବ ପାର୍ବତୀଙ୍କୁ କହିଥିଲେ ହେଁ, ଅର୍ଥାତ୍ ଧର୍ମରାଜ ଓ ଶିବଙ୍କ ମୁଖରେ ପୁରାଣର ବର୍ଣ୍ଣନା କରାଯାଇଥିଲେ ହେଁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସନତ୍‌କୁମାର ହିଁ ମୁଖ୍ୟ ପ୍ରବକ୍ତା ଅଟନ୍ତି । ମଙ୍ଗଳାଚରଣ ପରେ ଏହି ଗ୍ରନ୍ଥରେ ସନତ୍‌କୁମାରଙ୍କ ମୁହଁରେ ବିଷୟ ବସ୍ତୁର ସୂଚନା ଦିଆଯାଇଛି । ତେଣୁ ମୁଖ୍ୟତଃ ଶିବପୁରାଣରେ ଶିବଙ୍କର ମହିମା, ବିବାହ, ଗଣେଶ କାର୍ତ୍ତିକେୟଙ୍କର ଜନ୍ମ, ଲିଙ୍ଗପୂଜା ବିବରଣ, ଅଷ୍ଟାଙ୍ଗଯୋଗ, ତୀର୍ଥମାନଙ୍କର ବିବରଣୀ ସ୍ଥାନପାଇଛି । ପ୍ରଥମ ଖଣ୍ଡରେ ରାମାୟଣ, ଦ୍ୱିତୀୟ ଖଣ୍ଡରେ ଅନ୍ଧକାସୁର ଉପାଖ୍ୟାନ, କାମଦେବ ଚରିତ, ଅଷ୍ଟାଙ୍ଗଯୋଗ, ତୃତୀୟ ଖଣ୍ଡରେ ଶିବପାର୍ବତୀ ପ୍ରଣୟ, ଲିଙ୍ଗପୂଜା, ଶିବପୂଜା, ଏବଂ ଚତୁର୍ଥ ଖଣ୍ଡରେ ଶିବଙ୍କର ବିବାହ, ବଂଶାବଳୀ, ଉଷା ଅନିରୁଦ୍ଧ ପ୍ରସଙ୍ଗ ଏବଂ ତୀର୍ଥ ମାହାତ୍ମ୍ୟ ବର୍ଣ୍ଣିତ ।

ଶିବପୁରାଣରେ ସମସ୍ତ ବିଷୟବସ୍ତୁକୁ ଆମେ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରିପାରିବା, ଯଥା—ଦାର୍ଶନିକ ତତ୍ତ୍ୱ ଏବଂ ଲୋକ ପ୍ରଚଳିତ କାହାଣୀ । ପ୍ରଥମେ ଦାର୍ଶନିକ ତତ୍ତ୍ୱର ବିଚାର କରାଯାଇଛି । ସୃଷ୍ଟି ପ୍ରକରଣରେ ଶିବହିଁ ବିଶ୍ୱ ବ୍ରହ୍ମାଣ୍ଡର ମୂଳାଧାର, ସେ ଅଦେହୀ, ପଞ୍ଚମହାଭୂତର ସୃଷ୍ଟିକର୍ତ୍ତା । ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧାଦିର ମୂଳ । ସୃଷ୍ଟି ସ୍ଥିତି ଓ ପ୍ରଳୟର କାରଣ ସ୍ୱରୂପ । ସେ ଅକ୍ଷୟ, ଅବ୍ୟୟ ଓ ସନାତନ । ଯଥା—

"ପ୍ରତି କଳ୍ପେ ବ୍ରହ୍ମାବିଷ୍ଣୁ ହୁଅନ୍ତି ଉତ୍ପନ୍ନ ।
ଜଗତରେ ଏକମାତ୍ର ଶିବ ସନାତନ ।।
ସୃଷ୍ଟି ସ୍ଥିତି ପ୍ରଳୟର କାରଣ ଶଙ୍କର ।
ଯୋଗେଶ୍ୱର ମୂର୍ତ୍ତି ଯୋଗେ ମଗ୍ନ ନିରନ୍ତର ।।" (୪୩)

ଶିବଙ୍କର ତୃତୀୟ ନୟନର ଉନ୍ମେଷରେ ପ୍ରେମାଧିପତି କାମଦେବ ଭସ୍ମୀଭୂତ ହୋଇଛନ୍ତି । ପ୍ରେମର ଅଧିନେତ୍ରୀ ଦେବୀ କାମପତ୍ନୀ ରତି, ଅଶ୍ରୁ ଆକୁଳ ନେତ୍ରରେ ସ୍ୱାମୀଙ୍କୁ ଫେରିପାଇବାକୁ ମିନତି ଜଣାଇଲେ । କାମ-

(୪୩) ଶିବ ପୁରାଣ—ପୃଷ୍ଠା–୫

ଦେବଙ୍କ ଅପରାଧ ଗୁରୁତର ଥିଲା । ସେ କାଳଜୟୀ ମହାଯୋଗୀ ଶିବଙ୍କର ହୃଦୟରେ କାମନାର ସଞ୍ଚାର କରିଥିଲେ । ପ୍ରେମାଧିପତିଙ୍କ ପକ୍ଷରେ ଏହା ଅଧିକାର ବହିର୍ଭୂତ କାର୍ଯ୍ୟ । ସେଥିପାଇଁ ତାଙ୍କର ବିନାଶ ଘଟିଲା । ହାସ୍ୟ-ଚପଳା ରତି ପ୍ରଥମ ଥର ପାଇଁ ଶୋକାଚ୍ଛନ୍ନ ହେଲେ । ବିଶ୍ୱ ଗୁରୁତର ସଙ୍କଟର ସମ୍ମୁଖୀନ ହେଲା । କାରଣ ଏତଦ୍ଦ୍ୱାରା ପ୍ରେମ ହେଲା ଶୃଙ୍ଗାର ବର୍ଜିତ । ଶିବ ଏହାର ପ୍ରତିକାର କରି ପାରିନଥିଲେ । କାମଦେବଙ୍କ ଦଣ୍ଡ ବି ଅନୁଚିତ ନ ଥିଲା । ରତି କିନ୍ତୁ ସାନ୍ତ୍ୱନାହୀନା । ବିଶ୍ୱ ସଙ୍କଟ ହେତୁ ଅଥବା ରତିଙ୍କର ଦୁଃଖ ହେତୁ ହେଉ ଶିବଙ୍କ ହୃଦୟରେ ଅନୁକମ୍ପାର ସଞ୍ଚାର ହେଲା । ସେ କାମକୁ ଜୀବନ୍ୟାସ ଦେଲେ କିନ୍ତୁ ତାଙ୍କୁ କଲେ ଅଶରୀରୀ । ସେହି ଦିନଠାରୁ କାମ ହେଲେ ଆକୃତି ବିହୀନ । ଯେ ହେତୁ ତାଙ୍କର ଶରୀର ନାହିଁ, ସେଥି ପାଇଁ ତାଙ୍କର ଉପସ୍ଥିତି କେଉଁଠାରେ ଅନଧିକାର ପ୍ରବେଶ ନୁହେଁ, ସେ ସମସ୍ତଙ୍କୁ ଘେରି ରହିପାରନ୍ତି ।—ଏହି ଦାର୍ଶନିକତତ୍ତ୍ୱକୁ ସୁନ୍ଦର ରୂପେ ବର୍ଣ୍ଣନା କରା ଯାଇଛି ।

ଯଥା :—

ସ୍ୱଭାବରେ କାମ ଦେବ ଅନଙ୍ଗ ଅଟଇ,
ଦେହ ସେ ଧାରଣ କରେ ମାନବଙ୍କ ପାଇଁ ।
ଦେହବନ୍ତ ହୋଇ କରେ ଧରି ପୁଷ୍ପଶର ।
ମନୁଷ୍ୟଙ୍କ ହୃଦେ ଜାତ କରାଏ ବିକାର ।।
ମନକୁ ମନ୍ଥିବା ହେତୁ ମନ୍ମଥ ତା ନାମ ।
ମହାଯୋଗୀମାନଙ୍କୁ ସେ କରିପାରେ ଭ୍ରମ ।। (୪୪)

ଗଣଙ୍କର ଅଧିପତି ହେବା ନିମନ୍ତେ ଥରେ କାର୍ତ୍ତିକେୟ ଓ ଗଣେଶଙ୍କ ମଧ୍ୟରେ ବିବାଦ ସୃଷ୍ଟି ହେଲା । କାର୍ତ୍ତିକେୟ ବୟସାନୁପାତରେ ଜ୍ୟେଷ୍ଠ । ସେ ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟର ପ୍ରତୀକ । ହସ୍ତୀ ମସ୍ତକଧାରୀ ଗଣେଶ ଜ୍ଞାନ ଓ ପ୍ରଜ୍ଞାର ମୂର୍ତ୍ତିମନ୍ତ ଅଧିପତି । ଶିବଙ୍କର ପ୍ରସ୍ତାବ ରହିଲା ଯିଏ ସକଳ ତୀର୍ଥ ଭ୍ରମଣ ଓ ବିଶ୍ୱ ପରିକ୍ରମା କରି ଆଗେ ଫେରି ଆସିବ ସେ କୈଳାସରେ

---

୪୪—ଶିବ ପୁରାଣ, ପୃଷ୍ଠା—୪୬୧ ।

ଗଣାଧିପତି ହେବ । କାର୍ତ୍ତିକେୟ ମୟୂର ପୃଷ୍ଠରେ ବସି ଯାତ୍ରା ଆରମ୍ଭ କଲେ ଏବଂ ଗଣେଶ ନିଜର ମୂଷିକ ଆରୋହଣ କଲେ । ପ୍ରକୃତରେ ମୂଷା ସାହାଯ୍ୟରେ ପୃଥିବୀ ପରିକ୍ରମଣ ଏକ ହାସ୍ୟାସ୍ପଦ କଥା । ତେଣୁ ଗଣେଶ ଶିବଙ୍କୁ ସାତଥର ପରିକ୍ରମଣ କଲେ । ଶିବ ହେଉଛନ୍ତି ପରମାପ ବିହୀନ ବ୍ୟକ୍ତିତ୍ୱର ପ୍ରତୀକ । ସେ ବ୍ୟାପକ । ତେଣୁ ତାଙ୍କୁ ପରିକ୍ରମଣ କରିବା ଅର୍ଥହିଁ ସମଗ୍ର ବିଶ୍ୱକୁ ଭ୍ରମଣ କରିବା । ମଣୁର ବୁଦ୍ଧି, ଧୀର ଗତିରେ କାର୍ଯ୍ୟର ଉତ୍କର୍ଷ ପ୍ରତିପାଦନ ଓ ଚିନ୍ତାଶୂନ୍ୟ ତତ୍ପରତାର ଅପାରଗତା ପ୍ରତିପାଦନ କରିବା ଏହି ରୂପକର ଲକ୍ଷ୍ୟ । କିନ୍ତୁ ପ୍ରକୃତ ଉଦ୍ଦେଶ୍ୟ ହେଲା ଶିବଙ୍କର ମହିମାଗାନ । ଯେଉଁ ଶିବଙ୍କଠାରୁ ଏହି ବିଶ୍ୱ ଉତ୍ପନ୍ନ, ପୁଣି ତାଙ୍କୁ ମାତ୍ର ସାତୋଟି ପଦକ୍ଷେପରେ ପ୍ରଦକ୍ଷିଣ କରାଯାଇ ପାରେ । ଏହାଙ୍କ ମଧ୍ୟରେ ଶିବଙ୍କ ଚରିତ୍ରର ପରିମାପ ବିହୀନ ଓ ଅସୀମତ୍ୱ ହିଁ ଫୁଟି ଉଠିଛି । ଶୈବ ଦର୍ଶନରେ ଏହି ତତ୍ତ୍ୱ ବିଶେଷ ପ୍ରାଧାନ୍ୟ ଲାଭ କରିଛି । ଶିବ ପୁରାଣରେ ଏହି କଥାକୁ ସୁନ୍ଦର ରୂପେ ବର୍ଣ୍ଣନା କରାଯାଇଛି, ଯଥା :—

କାର୍ତ୍ତିକେୟ ହେଉ ଅବା ଗଜାନନ ହେଉ ।
ବହୁ ପୁଣ୍ୟ ଯାର ଗଣନାଥ ସେ ବୋଲାଉ ॥
ସବୁ ପୁଣ୍ୟଠାରୁ ତୀର୍ଥଯାତ୍ରା ଅଟେ ଶ୍ରେଷ୍ଠ ।
ଯେ କରିବ ତାକୁ ପ୍ରାପ୍ତ ହେଉ ଯୁବରାଜ୍ଞ ॥

ଗଣେଶଙ୍କର ଗଜ ମସ୍ତକ ଧାରଣ ଏକ ସୁନ୍ଦର ଉପାଖ୍ୟାନ । ତାଙ୍କ ମସ୍ତକ ଛେଦନ ପରେ ଶିବ ପୁଣି ଗଜ ମସ୍ତକ ଲଗାଇ ଜୀବନ୍ୟାସ ଦେଲେ । ପୁନଶ୍ଚ ଛେଦିତ ମସ୍ତକ ଗଜକୁ ମଧ୍ୟ ଆଶୀର୍ବାଦ କରି ଶିର ପ୍ରଦାନ କଲେ । ଉଭୟ କ୍ଷେତ୍ରରେ ଗଣେଶ ଓ ଗଜ, କାହାର କ୍ଷତି ହେଲା ନାହିଁ । ସେହି ଦିନଠାରୁ ଏହି ହସ୍ତୀ ଦେବତା ହେଲେ, ଗଣ୍ଡାର ଜ୍ଞାନ, ମନୁଷ୍ୟର ବୁଦ୍ଧି ଓ ହସ୍ତୀର ଅନୁରକ୍ତିର ସମ୍ମିଶ୍ରଣ ଘଟିଲା । ହିନ୍ଦୁ ଗୃହରେ ପ୍ରତ୍ୟେକ ଶୁଭକାର୍ଯ୍ୟରେ ତାଙ୍କୁ ସ୍ମରଣ କରାଯାଏ । ତାଙ୍କୁ ଭକ୍ତି କରିବା ଅର୍ଥ ନିର୍ଣ୍ଣିତ ସାଫଲ୍ୟ ଲାଭ କରିବା । ହୁଏତ ଶିବ ଏଠାରେ ନିଜ ଚରିତ୍ର ଉପଯୋଗୀ କାର୍ଯ୍ୟ କରି ନାହାନ୍ତି । ଯାହା କରାଗଲା ତାହା ଉଚିତ ହେଲା କି ? ଗଣେଶଙ୍କୁ ଜୀବନ

ଦାନ କରି ସେ ପାର୍ବତୀଙ୍କ ଶୋକ ନିବାରଣ କରିଥିଲେ । କିନ୍ତୁ ଯେଉଁ ହାତୀ ଛୁଆଟି ମଲା-ତା'ର ମା'ଆର ଦୁଃଖ ବିଷୟରେ ସେ କିଛି ଭାବିଥିଲେ କି ? କିନ୍ତୁ ହୁଏତ ଏହି ପ୍ରଶ୍ନ ଭିତରେ ହିଁ ତା'ର ଉତ୍ତର ରହିଛି । ଗଣେଶଙ୍କ ନବ କଳେବରରେ ହସ୍ତୀ ଓ ପୁରାତନ ଗଣେଶ ଉଭୟ ବଞ୍ଚି ରହିଲେ । ହସ୍ତୀ ଓ ମନୁଷ୍ୟର ସମ୍ମିଶ୍ରଣରେ ହେଲା ଆନନ୍ଦର ଉତ୍ସ । ଡଃ ରାମମନୋହର ଲୋହିଆ ଏହି ଉପାଖ୍ୟାନକୁ ପୃଥିବୀର ଶକ୍ତି ଓ ବୁଦ୍ଧିର ମିଶ୍ରଣ ଜନିତ ପ୍ରକାର ଅବତାରଣା ଘଟିଲା ବୋଲି ଅଭିହିତ କରିଛନ୍ତି (୪୫) ।

ଶିବଙ୍କର ଏପରି କୌଣସି କାର୍ଯ୍ୟ ନାହିଁ ଯାହା ନିର୍ଦ୍ଦିଷ୍ଟ ଭାବରେ ସ୍ୱୟଂ ସଙ୍ଗତ ନୁହେଁ । ସାରା ସୃଷ୍ଟିରେ ଶିବହିଁ ଏକମାତ୍ର ବ୍ୟକ୍ତି, ଯାହାଙ୍କର ପ୍ରତ୍ୟେକ କାର୍ଯ୍ୟ ସ୍ୱୟଂ ସଙ୍ଗତ । ତାଙ୍କ ବ୍ୟବସ୍ଥାରେ ପୂର୍ବବର୍ତ୍ତୀ ଘଟଣା କାରଣ ନୁହେଁ ବା ପରବର୍ତ୍ତୀ ଘଟଣା ପରିଣାମ ନୁହେଁ । ଏଠି କୌଣସି ଘଟଣାର ଯଥାର୍ଥତା ନିରୂପଣ କରିବାକୁ ଅନ୍ୟତ୍ର ଦୃଷ୍ଟି ନିକ୍ଷେପ କରାଯାଏ ନାହିଁ । ଶିବଙ୍କର ସମସ୍ତ କାର୍ଯ୍ୟ ହେଉଛି କାର୍ଯ୍ୟ-କାରଣ-ଶୃଙ୍ଖଳାର ଏକ ବ୍ୟବହାରିକ ସଂଯୋଗ ।

ଶିବ ପୁରାଣର ଅନ୍ୟ ଦୁଇଟି ବିଶିଷ୍ଟ ରୂପକଳ୍ପ ହେଲା ଶିବଙ୍କର ବିଷପାନ କରି ନୀଳକଣ୍ଠ ହେବା ଓ ଅର୍ଦ୍ଧନାରୀଶ୍ୱର ରୂପ ପରିଗ୍ରହଣ । ସମଗ୍ର ସୃଷ୍ଟି ତଥା ବିଶ୍ୱ ନିମନ୍ତେ ସେ ବିଷପାନ କଲେ । ବୈଦିକ ଯୁଗରେ ବା ଭାରତୀୟ ସଂସ୍କୃତିରେ କୌଣସି ଦେବତାଙ୍କ ଜୀବନରେ ଏଭଳି ଦୁର୍ଘଟଣା ଘଟିନାହିଁ । ସୃଷ୍ଟି ସର୍ଜନାର କାରଣ ସୃଷ୍ଟି ରକ୍ଷା ପାଇଁ ଉତ୍ସର୍ଗୀକୃତ—ଏହି ତାତ୍ତ୍ୱିକ ଦର୍ଶନ ଏଥିରେ ନିହିତ । ଅର୍ଦ୍ଧନାରୀଶ୍ୱରଭାବେ ସେ ପୁରୁଷ ଓ ପ୍ରକୃତିର ମିଶ୍ରିତ ଅବତାର । ଏହାର ପ୍ରୟୋଗାତ୍ମକ ରୂପ ହେଉଛି ଲିଙ୍ଗପୂଜା । ଲିଙ୍ଗ ଆଉ କିଛି ନୁହେଁ ପୁରୁଷ ଓ ନାରୀଙ୍କର ଜନନେନ୍ଦ୍ରିୟର ମିଶ୍ରିତ ସ୍ଥୂଳ ରୂପ ମାତ୍ର । ଏହି ମିଳନ ଅର୍ଥାତ୍ ପୁରୁଷ ଓ ପ୍ରକୃତିର ମିଳନ ସୃଷ୍ଟିର କାରଣ ଏବଂ ଉଗ୍ର ଓ କଲ୍ୟାଣମୟୀ ଭାବର ପ୍ରତୀକ ; ଏହା ସହଜରେ

---

୪୫ । ଡଃ ରାମମନୋହର ଲୋହିଆଙ୍କର Mankind ରେ ପ୍ରକାଶିତ ରାମକୃଷ୍ଣ ଶିବ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

ଅନୁମେୟ । ପୃଥିବୀ ସୃଷ୍ଟି ମୂଳରେ ଶିବଙ୍କୁ ରଖି ତାଙ୍କର ଓ ଅର୍ଦ୍ଧନାରୀଶ୍ୱର ମୂର୍ତ୍ତିର ପରିକଳ୍ପନା ବା ଲିଙ୍ଗ ପ୍ରକାର ବିଧିବିଧାନ ସମ୍ବଳିତ ବର୍ଣ୍ଣନା ଶିବ ପୁରାଣରେ ଦେଇ ନ ଥିଲେ, ଶିବ ଚରିତ୍ର ପୂର୍ଣ୍ଣାଙ୍ଗ ହୋଇ ନ ଥାନ୍ତେ । ପୃଥିବୀରେ ଏଭଳି କଳ୍ପନାର ପଟାନ୍ତର ନାହିଁ ।

ବର୍ତ୍ତମାନ ଶିବ ପୁରାଣର୍ଣ୍ଣିତ ଲୋକପ୍ରଚଳିତ ଆଖ୍ୟାନକୁ ଅନୁଶୀଳନ କରାଯାଉ । ଏହି ପରିପ୍ରେକ୍ଷୀରେ ଅନ୍ୟାନ୍ୟ ପୁରାଣସହ ତୁଳନାକରି ଆଞ୍ଚଳିକତା ବା ମୌଳିକତା ଦର୍ଶାଇବାର ଅବକାଶ ମଧ୍ୟ ରହିଛି । କିନ୍ତୁ ସବୁ ଆଖ୍ୟାୟିକାକୁ ବିସ୍ତୃତକୁ ନେଇ ଆଲୋଚନା କରିବାର ସୁବିଧା ଏହି କ୍ଷୁଦ୍ର ପ୍ରବନ୍ଧରେ ନ ଥିବାରୁ, ଅଳ୍ପ କେତୋଟି ବିଷୟରେ ଏଠାରେ ଆଲୋଚନା କରାଯିବ !

**କାର୍ତ୍ତିକେୟ ଜନ୍ମ**—କାର୍ତ୍ତିକେୟଙ୍କର ଜନ୍ମ ପୁରାଣରେ ନିମ୍ନମତେ ଉଲ୍ଲେଖ ରହିଛି । ଯଥା !

ଏ ପୁତ୍ରର ନାମ ଏବେ କହୁଅଛି ଶୁଣ
ପ୍ରଥମେ ପଡ଼ିଲେ ଯେଣୁ ଆସି ଶରବଣ ।
ତେଣୁ ଶାରଜନ୍ମା ବୋଲି ହେବ ଏକ ନାମ,
ବଳବନ୍ତ ପଣେ କେହି ନହୋଇବ ସମ ।
କୃତ୍ତିକାଦି ଷଟ୍‌କନ୍ୟା ଗର୍ଭୁ ହେଲେ ଜାତ
ସେ ସକାଶୁ କାର୍ତ୍ତିକେୟ ନାମେ ହେଉ ଖ୍ୟାତ ।
ଷଟ କନ୍ୟା ଗର୍ଭୁ ଏହୁ ଜନମିଲେ ଯେଣୁ
ଷାଣ୍ମାତୁର ବୋଲି ଏକ ନାମ ହେବ ତେଣୁ ।
ଗର୍ଭେ ଧରି ମାତାମାନେ ଥିଲେ ଯେଣୁ କାନ୍ଧ
ତେଣୁ ସ୍କନ୍ଦ ନାମେ ପୂଜା ହେବେ ସର୍ବ ବିଧି ।।
ଗଙ୍ଗାରେ ମିଳିଲେ ଯେଣୁ ମଞ୍ଜୁଷାରେ ଭରି
ତେଣୁ ଗଙ୍ଗଗର୍ଭ ନାମ ହେବହେ ବୃତ୍ତାରି ।। (୪୬)

---

୪୬ । ଶିବ ପୁରାଣ—ପୃଷ୍ଠା-୧୦୭

କିନ୍ତୁ ପ୍ରକୃତରେ କିଣ କାର୍ତ୍ତିକେୟ ଷଡ଼କନ୍ୟାଙ୍କ ଗର୍ଭରୁ ସମ୍ଭୂତ ? ବ୍ରହ୍ମ-ବୈବର୍ତ୍ତ ପୁରାଣ ଅନୁସାରେ ବାୟୁ ଶିବଙ୍କର ମହାରେତକୁ ବହନ କରି ନପାରି ଅଗ୍ନିକୁ ନିକ୍ଷେପ କଲା । ହେଲେ ଅଗ୍ନି ଦହନ କରି ନପାରି ବା ବହନ କରି ନପାରି ଜଳକୁ ନିକ୍ଷେପ କଲା । ଜଳ ପୃଥିବୀ ଉପରକୁ ନିକ୍ଷେପ କଲେ । ଶରବଣରେ ପଡ଼ି ସେହି ମହାରେତ କାର୍ତ୍ତିକରେ ପରିଣତ ହେଲେ । କୃତ୍ତିକା ବେଶ୍ୟାଗଣ ରାତ୍ରିରେ ସେମାନଙ୍କର ଗୋପନ ଅଭିସାର ସାରି ଫେରିବା ସମୟରେ ତାଙ୍କୁ ପାଇ ପାଳନ କଲେ ।

## ଗଣେଶଙ୍କ ଗଜ ମସ୍ତକ ଧାରଣ—

ଶିବ ପୁରାଣ ଅନୁସାରେ ପାର୍ବତୀ ଏକଦା କୈଳାସରେ ସ୍ନାନ ପୂର୍ବରୁ, ନିଜ ଦେହରେ ମର୍ଦ୍ଦନ କରିସାରିବାପରେ ସେହି ଉଚ୍ଛିଷ୍ଟ ମଳ୍ଲୀଖରେ ଏକ ମୂର୍ତ୍ତି ଗଢ଼ି ତାକୁ ଜୀବନ୍ୟାସ ଦେଲେ । ସେହି ନବଜାତ ଶିଶୁକୁ ପ୍ରଧାନ ଦ୍ୱାର ଜଗିବାକୁ ଏବଂ ତାଙ୍କ ଆଦେଶ ନପାଇଲେ କାହାକୁ ଭିତରକୁ ନଛାଡ଼ିବାକୁ କହି, ସ୍ନାନ କରିବାକୁ ଗଲେ । କିନ୍ତୁ ସେହି ଅବସରରେ ଶିବ ଆସି ଗୃହରେ ପ୍ରବେଶ କରିବାକୁ ଚାହିଁଲେ । ସେହି ଶିଶୁ ଦ୍ୱାର ନଛାଡ଼ିବାରୁ ନିଜ ଶୂଳ ସାହାଯ୍ୟରେ ତାର ମସ୍ତକ ଛେଦନ କଲେ ।

କିନ୍ତୁ ବ୍ରହ୍ମବୈବର୍ତ୍ତ ପୁରାଣରେ ଉଲ୍ଲେଖ ଅଛି ଯେ, ଶନିଙ୍କ ଦୃଷ୍ଟି ପାତରେ ଗଣେଶଙ୍କ ମସ୍ତକ ଭସ୍ମୀଭୂତ ହେଲା ।

ବାମନ ପୁରାଣରେ ମଧ୍ୟ ଏହି କଥାକୁ ସମର୍ଥନ କରାଯାଇଛି । ଶିବ ପ୍ରବେଶ କଲାବେଳେ ପାର୍ବତୀଙ୍କ ପୁତ୍ର ଅର୍ଥାତ୍ ଗଣେଶଙ୍କୁ ନିଜପୁତ୍ର ବୋଲି ଚିହ୍ନି ପାରିଛନ୍ତି । ବାମନ ପୁରାଣରେ କୁହାଯାଇଛି; ଯଥା—

ଗୃହ ମଧ୍ୟେ ପ୍ରବେଶନ୍ତେ ମିଳିଲେ ଶଙ୍କର
ସେହି ଭଦ୍ରାସନେ ବସି ସ୍ନାନ କଲେ ହର ।।
ପାର୍ବତୀର ମଳୁଁ ଜାତ ପୁତ୍ର ଅଛି ତହିଁ
ମହାଦେବ ସ୍ୱେଦ ଜାଣି ଧୀରେ ଗଲା ବହି ।।

ସେ ଜଳ ଲାଗନ୍ତେ ପୁତ୍ର କଲା ଫୁତ୍କାର
ଆପଣାର ପୁତ୍ର ଜାଣି ଦେବ ମହେଶ୍ୱର ॥
ପ୍ରୀତ ହୋଇ ସେ ପୁତ୍ରକୁ ହସ୍ତରେ ଧରିଲେ
ଏ ମୋହର ପୁତ୍ର ବୋଲି ନନ୍ଦୀକୁ କହିଲେ ॥ (୪୭)

## ଶିବ ପୁରାଣର ଐତିହାସିକତା—

ଶିବପୁରାଣରେ ବିନ୍ଦୁସରୋବରର ଉତ୍ପତ୍ତି ଓ ଏକାମ୍ର କ୍ଷେତ୍ରରେ ଶିବ ଲିଙ୍ଗର ପ୍ରତିଷ୍ଠା, ଭୁବନେଶ୍ୱରଙ୍କ ଅଷ୍ଟୋତ୍ତର ଶତନାମ ପ୍ରଭୃତିର ଉଲ୍ଲେଖ ଅଛି । ଅଲୌକିକତାର ଆଢ଼ୁଆଳରେ ପ୍ରକୃତ ସତ୍ୟ ଲୁଚାଇବାକୁ ଚେଷ୍ଟା କରାଯାଇଥିଲେ ହେଁ ଇତିହାସର ପ୍ରାମାଣିକତା ପ୍ରକୃତ ସତ୍ୟକୁ ଉଦ୍‌ଘାଟିତ କରିଛି । ଶିବଙ୍କର ମହିମା ଓ ବିନ୍ଦୁସରୋବରର ମହିମା ପ୍ରଦାନ କରିବାକୁ ଯାଇ, ଶିବ ଶୂଳାଘାତରେ ବିନ୍ଦୁସରୋବରର ଉତ୍ପତ୍ତି ହୋଇଛି ବୋଲି କୁହାଯାଇଛି । କିନ୍ତୁ ପ୍ରକୃତରେ ତାହା କେଶରୀବଂଶ ରାଜାମାନଙ୍କର କୀର୍ତ୍ତି । ଏକାମ୍ର କ୍ଷେତ୍ରର ଲିଙ୍ଗମାନଙ୍କର ନାମକରଣ ଓ ଅବସ୍ଥିତି ମଧ୍ୟ କେତେକ ପରିମାଣରେ ଏପର୍ଯ୍ୟନ୍ତ ଦୁର୍ବୋଧ୍ୟ ରହିଛି । ଇତିହାସକୁ ଗ୍ରହଣକରି ଶିବ ପୁରାଣ ପରିପୁଷ୍ଟ ହୋଇଛି ବୋଲି ଯଦି ଧରାଯିବ ତେବେ ଏ ସବୁକୁ ପରବର୍ତ୍ତୀକାଳୀନ ପ୍ରକ୍ଷେପୋକ୍ତି ବୋଲି କୁହାଯିବ । କାରଣ ସନତ୍କୁମାର ସଂହିତାର ରଚନାକାଳ ଅଷ୍ଟମ ଶତାବ୍ଦୀ ହେଲେ ସେତେବେଳକୁ ବିନ୍ଦୁସରୋବର ବା ବର୍ତ୍ତମାନର ବିନ୍ଦୁସାଗର ସୃଷ୍ଟି ହୋଇ ନଥିଲା । (୪୮)

## ସାମାଜିକ ଅବସ୍ଥା—

ଶିବ ପୁରାଣରେ ତତ୍କାଳୀନ ସାମାଜିକ ବ୍ୟବସ୍ଥାର ବହୁ ଉଲ୍ଲେଖ ମିଳେ । ଜାତିପ୍ରଥା ବିଷୟରେ ସେତେ ଉଲ୍ଲେଖ ନଥିଲେ ମଧ୍ୟ ଶୁଦ୍ରମାନେ ଯେ ନିମ୍ନ

---

(୪୭) ବାମନ ପୁରାଣର ଗଣେଶଙ୍କ ଜନ୍ମ ଅଧ୍ୟାୟ ଦେଖନ୍ତୁ ।

(୪୮) ଡଃ ମହତାବଙ୍କ 'ଓଡ଼ିଶାର ଇତିହାସ' ଦ୍ରଷ୍ଟବ୍ୟ ।

ପ୍ରକର ଲୋକଥିଲେ, ନାରୀ ଓ ଶୂଦ୍ରମାନଙ୍କ ବେଦ ଅଧ୍ୟୟନରୁ ବଂଚିତ କରାଯାଉଥିଲା ତାହାର ଉଲ୍ଲେଖ ରହିଛି । ପାର୍ବତୀଙ୍କର ସ୍ୱୟଂମ୍ବର, ଶିବଙ୍କର ବିବାହ, କାଶୀକ୍ଷେତ୍ରରେ ପିତୃପୁରୁଷଙ୍କର ପିଣ୍ଡଦାନ, ସମାଜରେ ନାରୀର ଆଚରଣ, ଯୋଗସାଧନ-ଏ ସବୁକୁ ମୁଖ୍ୟ ବୋଲି ଧରାଯାଇପାରେ ।

ପାର୍ବତୀଙ୍କର ସ୍ୱୟଂମ୍ବର ନିମନ୍ତେ ତ୍ରିଭୁବନବାସୀ ନିମନ୍ତ୍ରିତ ହୋଇଛନ୍ତି । ଏହି ଉପଲକ୍ଷେ ଦୂତମାନେ ଯେଉଁ ଯେଉଁ ଦେଶକୁ ଯାଇଛନ୍ତି ସେହିସବୁ ଦେଶର ତତ୍କାଳୀନ ନାମ ଓ ଭୌଗୋଳିକ ସ୍ଥିତି ମଧ୍ୟ କେତେକ ସ୍ଥଳରେ ବର୍ଣ୍ଣିତ ହୋଇଛି । ଯଥା—

ଖର୍ଗିବ ଦେଶର ନରପତି ଅରବିନ୍ଦ
ପ୍ରାଗ୍ ଜ୍ୟୋତିଷପୁରୁ ବାହାରିଲେ ଉପନନ୍ଦ ॥
ସୋମକ ଦେଶରୁ ଗଲେ ପଦ୍ମନ ନୃବର
ମାଦ୍ରବ ଦେଶରୁ ଗଲେ ନୃପ ଶଙ୍କେଶର ॥
ବିଦେହ ଦେଶର ନରଇନ୍ଦ୍ର ଧନପତି
ତାମ୍ରଲିପ୍ତ ଦେଶରୁ ଯେ ଗଲେ ଅଶ୍ୱପତି ॥ (୪୯)

ଶିବ ପାର୍ବତୀଙ୍କଠାରେ ଦେବତ୍ୱ ଆରୋପିତ ହୋଇଥିଲେ ମଧ୍ୟ ସେମାନଙ୍କର ବିବାହ ସାମାଜିକ ବିଧି ଅନୁସାରେ କରିବାକୁ ହିମବନ୍ତ ଆଦେଶ ଦେଇଛନ୍ତି; ଯଥା—

ବୋଇଲେ ବିଷ୍ଣୁର ସମ୍ଭାରକୁ ବେଗେ ଆଣ
ସ୍ୱୟମ୍ବମଣ୍ଡପକୁ ବିଜେ ହେବେ ତ୍ରିଲୋଚନ ॥
ଶୁଣିଣ ଆନନ୍ଦ ଜଲେ ବୁଡ଼ି ହିମବନ୍ତ
ଡକାଇ ଆଣିଲେ ମନ୍ତ୍ରୀମାନଙ୍କୁ ତ୍ୱରିତ ॥
ତାହାଙ୍କୁ ବୋଇଲେ ବିଷ୍ଣୁ ବିଧି ଯତ୍ନ କର,

---

୪୯- ଶିବ ପୁରାଣ, ପୃଷ୍ଠା—୧୫୭

ଆପନ୍ତୁ ଖଟଣୀ ଲୋକେ ହୋଇଣ ତତ୍ପର ॥
ଗିରିରାଜ ମୁଖୁଁ ପାଇ ଏମନ୍ତ ଆଦେଶ
ମନ୍ତ୍ରୀଗଣ ଯାଇ ଦେବେ କଲେ ଫରମାସ ॥
ଘୋଷଣା ଦିଆଇ ସବୁ ନିଭା କରାଇଲେ
ଆଦ୍ୟରୁ ସମ୍ପାଦ ସବୁ ଯତ୍ନେ ଥୋଇ ଥିଲେ ॥ (୫୦)

ବିବାହବେଳେ ସାମାଜିକ ପ୍ରଥା ଅନୁସାରେ ମଧୁ ରତ୍ନ, ଲବଣଚଉଁରୀ ପ୍ରଦାନ କରାଯାଇଛି । ଯଥା—

"ତଦନ୍ତେ ବ୍ରହ୍ମଙ୍କ ବୋଲ ଶୁଣି ଶାକମ୍ବରୀ
ଈଶ୍ୱରଙ୍କୁ ପକାଇଲେ ଲବଣଚଉଁରୀ ॥ (୫୧)

ପୁନଶ୍ଚ ସାମାଜିକ ପିଣ୍ଡଦାନ ବ୍ୟବସ୍ଥାରେ କୁହାଯାଇଛି —

"ଦେବ ଋଷି ପିତୃଗଣେ ଆବାହନ କରି
ଅର୍ପିବ ଆସନ ପାଦାସନ ଶୁଦ୍ଧ ବାରି ॥ (୫୨)

ସମାଜରେ ନାରୀର ସ୍ଥାନ ଉତ୍ତମରୂପେ ନିରୂପିତ ହୋଇ ତାର କର୍ତ୍ତବ୍ୟ ଆଚରଣ ବିଧି ବିଶଦ ଭାବେ ବର୍ଣ୍ଣନା କରାଯାଇଛି ।

ନାରୀର ମନସ୍ତତ୍ତ୍ୱ ବିଷୟରେ କୁହାଯାଇଛି—
ସ୍ତ୍ରୀମାନଙ୍କର ମନ ଅଟଇ ଚଞ୍ଚଳ
ସ୍ତ୍ରୀଏ ଅଟନ୍ତି ସବୁ ଆନନ୍ଦର ମୂଳ ॥
ଏଣୁ ସ୍ତ୍ରୀଙ୍କର ସେବା ଦୁଃଖମୟ ଅଟେ
ନାନା ଦୁଃଖ ଭୋଗ କରେ ଯେ ତାହାଙ୍କୁ ଖଟେ ॥

---

୫୦- ଶିବ ପୁରାଣ, ପୃଷ୍ଠା—୧୬୫
୫୧- ଶିବ ପୁରାଣ, ପୃଷ୍ଠା—୧୬୭
୫୨- ଶିବ ପୁରାଣ, ପୃଷ୍ଠା-୨୪୪

ଯେତେ ଖାଉ ଅଗ୍ନି ଯେସନ୍ତେ ନୁହଁଇ ତୃପତ
ସ୍ତ୍ରୀଙ୍କର ଆଶା ନପୂରଇ ସେହିମତ ।।
ଯେତେ ପୁରୁଷଙ୍କୁ ଭୋଗ କଲେହେଁ ରମଣୀ
ଆନ ଧ୍ୟାନ ପୁରୁଷଙ୍କୁ ଇଚ୍ଛୁଥାଏ ପୁଣି ।। (୫୩)

ନାରୀର ସ୍ୱାଧୀନତା ସଂପର୍କରେ କୁହାଯାଇଛି ଯେ—

ଅଷ୍ଟାବକ୍ର ବୋଇଲେ ମୁଁ ଧରମ ଶାସ୍ତ୍ରରେ
ଦେଖିଅଛି ସ୍ୱାଧୀନତା ନାହିଁ ସ୍ତ୍ରୀଙ୍କଠାରେ ।।
ବାଲ୍ୟରେ ପାଳଇ ପିତା ଯୁବାକାଳେ ପତି
ବୃଦ୍ଧା ବୟସରେ ପୁତ୍ରେ ପାଳନ କରନ୍ତି ।।
ଏ କାରଣୁ ନାରୀଙ୍କର ନାହିଁ ସ୍ୱାଧୀନତା
ତୁ କନ୍ୟା ଭୁଲଇ ମତେ କହୁ ଏତେ କଥା ।। (୫୪)

ସବୁ ନାରୀ କନ୍ତୁ ସମାନ ଚରିତର ନୁହନ୍ତି ।

ପତି ସେବାକୁ ଉତ୍ତମ ନାରୀମାନଙ୍କର ଶ୍ରେଷ୍ଠ କର୍ତ୍ତବ୍ୟ ବୋଲି କୁହାଯାଇଛି । ଯଥା —

ତେଣୁ ସେ ଆପଣା ସ୍ୱାମୀ ପାଦ ସେବା କରି
ଦୁଃଖମୟ ସଂସାରରୁ ସୁଖେ ଯାନ୍ତି ତରି ।। (୫୫)

ବେଦନିଧି ବ୍ରାହ୍ମଣ କଥା, ବୀରବର ଉପାଖ୍ୟାନ, ଅଷ୍ଟାବକ୍ର ମୁନି ସମ୍ବାଦ-ପ୍ରଭୃତିରେ ନୀତିଶିକ୍ଷା ମୂଳକ ଉପଦେଶ ପ୍ରଦାନ କରାଯାଇଛି ।

ଯୋଗସାଧନ ଭାରତୀୟ ସଂସ୍କୃତିର ଏକ ପ୍ରଧାନ ଅଙ୍ଗ ଥିଲା । ମୁନି ଋଷିମାନେ ଏହି ଯୋଗ ବଳରେ ଅସାଧ୍ୟ ସାଧନ କରୁଥିଲେ । ଶିବ ପୁରାଣ ରଚନାବେଳେ ମଧ୍ୟ ପୁରାଣକାର ଯୋଗ ବିଷୟ ଉଲ୍ଲେଖ କରିବାକୁ ଭୁଲି ନାହାନ୍ତି । ଯଥା—

---

୫୩– ଶିବ ପୁରାଣ ପୃଷ୍ଠା–୪୩୯
୫୪ । ଶିବ ପୁରାଣ, ପୃଷ୍ଠା—୪୪୫
୫୫ । ଶିବ ପୁରାଣ, ପୃଷ୍ଠା—୪୪୭

"ଓଁକାର ସ୍ୱରୂପ ଅଟେ ସେହୁ ଦିବ୍ୟ ଜ୍ୟୋତି
ସେହୁ ଜଳ ସେ ଅନଳ ସେ ଅଟଇ କ୍ଷିତି ॥
ମହାଶୂନ୍ୟ ଜ୍ୟୋତି ସେ ଜାଣ ଗୋ ଭବାନୀ
ତହିଁରେ ଲକ୍ଷ୍ୟ ରଖିବ ଯୋଗୀ ତତ୍ତ୍ୱ ଜାଣି ॥
ତହୁଁ ଯାଇ ମାୟା ଘୋର ଅନ୍ଧାର ସ୍ଥାନରେ
ଏକାନ୍ତେ ବସିବ ଯୋଗୀ ପଦ୍ମ ଆସନରେ ॥ (୫୬)

ଶିବ ପୁରାଣରେ ଶିବଙ୍କ ମାହାତ୍ମ୍ୟ ବର୍ଣ୍ଣନାରେ ବହୁ ଅଲୌକିକତାର ବର୍ଣ୍ଣନା କରାଯାଇଛି । ଏ ସମ୍ପର୍କରେ ଭୂକବଳ ଶୈବର, ଶାର୍ଦ୍ଦୂଳ ନିଷାଦ ଓ କୃଷ୍ଣ ଶର୍ମା କଥା କୁହାଯାଇଛି । ଚୌର୍ଯ୍ୟବୃତ୍ତି କରି ମଧ୍ୟ ଭୂକବଳ, ଜୀବହତ୍ୟା କରି ଶାର୍ଦ୍ଦୂଳ ଶିବଲିଙ୍ଗ ପୂଜା ମୁକ୍ତି ପାଇଛନ୍ତି ଏବଂ ଗଙ୍ଗାସ୍ନାନ କରି ବିରାଧ ଦସ୍ୟୁ ମଧ୍ୟ ସ୍ୱର୍ଗ ପାରି ହୋଇଛି—କିନ୍ତୁ ଏହା ଏକାନ୍ତ ଭାବେ ହାସ୍ୟାସ୍ପଦ କଥା । ଏ କଥାକୁ ଖ୍ରୀଷ୍ଟିୟାନ ଧର୍ମର ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ଚଳି ଆସୁଥିବା ମୁକ୍ତିପତ୍ର ବ୍ୟବସ୍ଥା ସହ ତୁଳନା କରାଯାଇ ପାରେ । ଅନ୍ୟାୟ ଅନୀତି ଯେତେ କଲେ ସୁଦ୍ଧା ଚର୍ଚ୍ଚକୁ କିଛି ଅର୍ଥ ଦାନ କରି ମୁକ୍ତିପତ୍ର ଲାଭ କରିହେବ, ଯାହା ଫଳରେ ସମାଜରେ ପୁନଃପ୍ରତିଷ୍ଠା ଏବଂ ଈଶ୍ୱରଙ୍କ ଦରବାରରେ ମୁକ୍ତି ମିଳିବ । ସେହି ଭଳି ପାପ କାର୍ଯ୍ୟ କଲେ ମଧ୍ୟ କେବଳ ଶିବ ଲିଙ୍ଗରେ ବିଲ୍ୱ ପତ୍ର ପ୍ରଦାନ କରି ମୁକ୍ତି ପାଇବା ବ୍ୟବସ୍ଥା ସମାଜକୁ ନର୍କ ଆଡ଼କୁ ଟାଣିନେବାକୁ ପଥ ସୁଗମ କରିଦେବ ମାତ୍ର । ଏ ଅନ୍ଧ ବିଶ୍ୱାସ ପାପକାର୍ଯ୍ୟ କରିବାକୁ ଏକ ପ୍ରତ୍ୟକ୍ଷ ଆହ୍ୱାନ । ପୁରାଣକାରମାନଙ୍କର ଏହି ବର୍ଣ୍ଣନା ସର୍ବଥା ନିନ୍ଦନୀୟ । ପୁନଶ୍ଚ ଶିବ ସ୍ୱପହରଣ ଯୋଗୁଁ କୃଷ୍ଣ ଶର୍ମା ପିଶୁଣ ହୋଇଛନ୍ତି । ଅଜ୍ଞତା ବଶରେ ସେ ନଦୀକୂଳରେ ଏକ ପଥର ଉପରେ ପାଦ ରଖିଥିଲେ । ତାଙ୍କର ଦୁର୍ଭାଗ୍ୟ ଯେ ପଥରଟି ଏକ ଜୀର୍ଣ୍ଣ ଶିବ ମନ୍ଦିରର ଭଗ୍ନାବଶେଷ ଥିଲା । ତେଣୁ ଶିବଙ୍କ କୋପରେ ସେ ପିଶୁଣ ହେଲେ । ଲୋକଙ୍କ ମନରେ ଭୟ ସୃଷ୍ଟି କରି ଧର୍ମ ପ୍ରତି ଆକୃଷ୍ଟ କରିବା ଏହାର ଲକ୍ଷ୍ୟ । କିନ୍ତୁ ମଣିଷର ମନକୁ ଏହାଦ୍ୱାରା ଜୟ କରାଯାଇ ପାରିବ ନାହିଁ । ତେଣୁ କୌଣସି

୫୬ । ଶିବ ପୁରାଣ, ପୃଷ୍ଠା—୪୫୫—୪୫୬

ଯୁଗରେ କୌଣସି ଧର୍ମ ଲୋକଙ୍କ ମନରେ ଭୟ ସୃଷ୍ଟି କରି ନିଜ ପ୍ରତି ଆକୃଷ୍ଟ କରିପାରି ନାହିଁ । ତେଣୁ ପୁରାଣକାର ମାନଙ୍କର ଏ ଧାରଣା, ସଂକୀର୍ଣ୍ଣ ମନୋବୃତ୍ତି ତଥା ହୀନ ସାଂପ୍ରଦାୟିକତାର ପରିଚୟ ଦିଏ ।

ସର୍ବୋପରି ଶିବ ପୁରାଣ, ପୁରାଣ ରଚନା ଉଦ୍ଦେଶ୍ୟର ସବୁ ଆବଶ୍ୟକତା ପୂରଣ କରିପାରିଛି । ଶିବଙ୍କର ମହିମା, ଶିବଙ୍କ ପ୍ରତି ଆକର୍ଷିତ କରିଭଳି ବହୁ ଆଖ୍ୟାନ ଉପଖ୍ୟାନର ଅବତାରଣା ଓ ପୁରାଣପାଠର ଉପକାରିତା ଦର୍ଶାଇ ପୁରାଣପ୍ରତି ଜନ ମାନସରେ ପ୍ରତ୍ୟୟ ସୃଷ୍ଟି କରିବା ପ୍ରତ୍ୟେକ ଉଦ୍ଦେଶ୍ୟ ସଫଳ ହୋଇଛି । ସାମ୍ପ୍ରଦାୟିକ ମୋହାଚ୍ଛନ୍ନ ହୋଇ ମଧ୍ୟ ବହୁ ସାର୍ବଜନୀନ ସତ୍ୟର ଉଦ୍‌ବାହକ ହୋଇଛି । ଠିକ୍ ରାମାୟଣ, ମହାଭାରତ ଭଳି ନହେଲେ ମଧ୍ୟ ଭାରତୀୟ ସଂସ୍କୃତିର ଏକ ବିଶିଷ୍ଟ ସ୍ଥାନ ଗ୍ରହଣ ନିମନ୍ତେ ଶିବପୁରାଣ ସମର୍ଥ ହୋଇଛନ୍ତି । ତେଣୁ ଶିବପୁରାଣକୁ ମହାପୁରାଣ ରୂପେ ଗଣନା କରିବା ଆଦୌ ଅସମୀଚୀନ ହେବ ନାହିଁ ।

# ବ୍ରହ୍ମବୈବର୍ତ୍ତ ପୁରାଣ — ଏକ ସିଂହାବଲୋକନ

ଶ୍ରୀ ବସନ୍ତକୁମାର ସାହୁ, ଏମ୍. ଏ.
ଗବେଷକ ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ

ଓଡ଼ିଆ ପୁରାଣ ସାହିତ୍ୟର କର୍ତ୍ତା ଓ କାଳ ସମ୍ପର୍କରେ ଆଲୋଚନା କଲାବେଳେ ଷୋଡ଼ଶ ବା ତତ୍ପରବର୍ତ୍ତୀ କାଳର ଲେଖକ ଓ କବିମାନେ ଆଖି ଆଗକୁ ଆସନ୍ତି । ବିଶେଷ କରି ଷୋଡ଼ଶ ଶତାବ୍ଦୀରେ ଅନେକ ଗୁଡ଼ିଏ ପୁରାଣର ଅନୁବାଦ କରାଯାଇଥିଲା । ଭାଗବତ, ରାମାୟଣ, ହରିବଂଶ, ଆଦି ଏହି ଯୁଗର ଅନବଦ୍ୟ ସୃଷ୍ଟି । ବ୍ରହ୍ମାଣ୍ଡ ପୁରାଣ ଅନୁସାରେ ବ୍ରହ୍ମା ଆଗେ ପୁରାଣ ସୃଷ୍ଟି କରି ପରେ ବେଦ ସୃଷ୍ଟି କଲେ । ଏହା ପୁରାଣର ପ୍ରାଚୀନତା ସମ୍ପର୍କରେ ସୂଚନା ଦିଏ । ସଂସ୍କୃତ ପୁରାଣ ଗୁଡ଼ିକର ସ୍ରଷ୍ଟା କୃଷ୍ଣଦ୍ୱୈପାୟନ ବ୍ୟାସ ବୋଲି କୁହାଯାଇଛି । କିନ୍ତୁ ଅନେକ ସମାଲୋଚକ ଏହାକୁ ଅସ୍ୱୀକାର କରନ୍ତି ଓ ସେମାନେ ବ୍ୟାସଙ୍କୁ ଗୋଟିଏ ପୁରାଣର ସ୍ରଷ୍ଟା ବୋଲି କହନ୍ତି । ପରବର୍ତ୍ତୀ କାଳରେ କବିମାନେ ଅନ୍ୟ ପୁରାଣ ଗୁଡ଼ିକ ରଚନା କରି ବ୍ୟାସଦେବଙ୍କ ନାମରେ ଭଣିତା କରିଥିଲେ ବୋଲି ମତ ପ୍ରକାଶ ପାଇଥାଏ । ବ୍ରହ୍ମବୈବର୍ତ୍ତ ପୁରାଣ ବର୍ଣ୍ଣିତ ଅଠର ପୁରାଣ ମଧ୍ୟରୁ ଅନ୍ୟତମ ପୁରାଣ । ଏହି ପୁରାଣର ରଚନାକାଳ ସମ୍ପର୍କରେ ଅନେକ ଗୁଡ଼ିଏ ମତ ମିଳେ । ସେ ସବୁ ମଧ୍ୟରୁ ଯୋଗେଶଚନ୍ଦ୍ରଙ୍କର ମତ ଅନେକ ସମାଲୋଚକ ଗ୍ରହଣ କରିଅଛନ୍ତି । R. C. Hazra ତାଙ୍କର Studies in the puranic records on hindu rites and customs" ଗ୍ରନ୍ଥରେ

କହିଛନ୍ତି—"Jogeshchanda Roy has carefully examined this purana and come to the conclusion that it was first composed most probably in the 8th century A. D." (page...166) ଅନ୍ୟମାନେ ଏହି ମତକୁ ଗ୍ରହଣ କରୁଥିବା ଦେଖାଯାଏ ।

ବ୍ରହ୍ମବୈବର୍ତ୍ତ ପୁରାଣ ଚାରିଖଣ୍ଡରେ ବିଭକ୍ତ । ବ୍ରହ୍ମ, ପ୍ରକୃତି, ଗଣେଶ ଓ ଶ୍ରୀକୃଷ୍ଣ ଜନ୍ମ ଖଣ୍ଡ । ବ୍ରହ୍ମ ଖଣ୍ଡରେ ଦେବତା ଓ ଜୀବଜଗତ ଆଦିଙ୍କର ସୃଷ୍ଟି ସମ୍ପର୍କରେ ବର୍ଣ୍ଣନା ହୋଇଛି । ଦ୍ୱିତୀୟ ବା ପ୍ରକୃତି ଖଣ୍ଡରେ ଦେବୀ ମାନଙ୍କର ବର୍ଣ୍ଣନା ପ୍ରଦତ୍ତ ହୋଇଛି । ଏହି ଦେବୀମାନେ ହେଲେ ଗଙ୍ଗା, ତୁଳସୀ, ବେଦମତୀ, ମହାକାଳୀ, ସୀତା, ସାବିତ୍ରୀ ଓ ଲକ୍ଷ୍ମୀ ଇତ୍ୟାଦି । ଏହା ବ୍ୟତୀତ ଶାଳଗ୍ରାମ ଶିଳା, ସ୍ତୋତ୍ର, ମନ୍ତ୍ର, କବଚଆଦି ସହିତ ପାପୀମାନଙ୍କର ଫଳାଫଳ ଓ ରୋଗର ଲକ୍ଷଣ ଏହି ଖଣ୍ଡର ବିଷୟ ବସ୍ତୁ । ତୃତୀୟ ଖଣ୍ଡ ଗଣେଶ ଖଣ୍ଡ । ଏଥିରେ ଗଣେଶଙ୍କର ଜନ୍ମ, ତାଙ୍କ ଚରିତ୍ରର ମହିମାସ୍ତ୍ରୋତ, ମନ୍ତ୍ର, ସ୍ତୋତ୍ର ଓ ଭୃଗୁଙ୍କ ସହିତ ଗଣେଶଙ୍କର କଥୋପକଥନ ଆଦି ବିସ୍ତୃତ ଭାବରେ ବର୍ଣ୍ଣିତ । ଏହାର ଚତୁର୍ଥ ଓ ଶେଷଖଣ୍ଡ ହେଉଛି ଶ୍ରୀକୃଷ୍ଣ ଜନ୍ମ ଖଣ୍ଡ । ଏଥିରେ ଶ୍ରୀକୃଷ୍ଣଙ୍କର ଜନ୍ମ, କାର୍ଯ୍ୟ, ରାସ ଆଦି ସହିତ ନାନା ଅଲୌକିକ ପ୍ରସଙ୍ଗର ଅବତାରଣା କରାଯାଇଛି । ଏହାଛଡ଼ା ଏହି ଖଣ୍ଡରେ ଶିବଙ୍କର କନ୍ଦର୍ପ ଦହନ, ପାର୍ବତୀଙ୍କର ଶିବ ପ୍ରାପ୍ତି, ସତୀଙ୍କର ଶରୀର ତ୍ୟାଗ ଓ ଶ୍ରୀ କୃଷ୍ଣଙ୍କର ଦ୍ୱାରକା ଲୀଳା ଆଦି ଅନ୍ତର୍ଗତ ।

ତିନିଜଣ କବି ବ୍ରହ୍ମବୈବର୍ତ୍ତ ପୁରାଣର ସ୍ୱତନ୍ତ୍ର ଓଡ଼ିଆ ଅନୁବାଦ କରିଥିବା ଜଣାଯାଏ । ସେମାନେ ହେଲେ ରତ୍ନାକର ଗର୍ଗବଟୁ, କବି କ୍ଷେତ୍ରମୋହନ, ଓ ପଣ୍ଡିତ ଭଗିରଥି ଷାଠୀଙ୍କ । ଏମାନେ ପ୍ରତ୍ୟେକ ବିଂଶ-ଶତାବ୍ଦୀର କବି । ଷାଠୀଙ୍କ ମହାଶୟଙ୍କର ଅନୁବାଦ ଏକାନ୍ତ ଭାବେ ସଂସ୍କୃତାଶ୍ରୟୀ । କବି କେଉଁଠାରେ କଥାବସ୍ତୁ ବଦଳାଇ ନାହାନ୍ତି ବା ଅଧିକ ବର୍ଣ୍ଣନା ଦେଇ ନାହାନ୍ତି । କିନ୍ତୁ କବି କ୍ଷେତ୍ରମୋହନ ଓ କବି ରତ୍ନାକର ଦୁହେଁ ସଂସ୍କୃତାନୁଯାୟୀ ବିଷୟ ବିଭାଜନ କରିଥିଲେ ମଧ୍ୟ

ବହୁସ୍ଥଳରେ ବର୍ଣ୍ଣନାତ୍ମକ ଖଣ୍ଡରେ ଅନେକ ସ୍ୱକୀୟ କଥାବସ୍ତୁ ଓ ଭାବସମ୍ଭାର ପରିବେଷଣ କରିଯାଇଛନ୍ତି । ଅନେକ ସ୍ଥାନରେ କବି କ୍ଷେତ୍ରମୋହନ ମୂଳଗ୍ରନ୍ଥକୁ ତ୍ୟାଗ କରି ନିଜ ମତ ଯୋଗ କରିବାକୁ କୁଣ୍ଠିତ ହୋଇ ନାହାନ୍ତି ।

କବି କ୍ଷେତ୍ରମୋହନ ନିଜ ଅନୁବାଦରେ ପ୍ରଥମେ ନୀଳାଦ୍ରିନାଥ ଜଗନ୍ନାଥଙ୍କର . ବନ୍ଦନା କରୁଥିବା ସ୍ଥଳେ ମୂଳ ଗ୍ରନ୍ଥରେ ବ୍ୟାସଦେବ ଗଣପତିଙ୍କର ବନ୍ଦନା କରୁଥିବାର ଦେଖାଯାଏ । ପୁଣି କବି ଏହି ଖଣ୍ଡରେ ବ୍ରହ୍ମର ଯେଉଁ ବର୍ଣ୍ଣନା ଦେଇଛନ୍ତି ତାହା ମୂଳଗ୍ରନ୍ଥରେ ଦେଖିବାକୁ ମିଳେ ନାହିଁ । କବି ବ୍ରହ୍ମର ବର୍ଣ୍ଣନା କରି କହିଛନ୍ତି—

"ବ୍ରହ୍ମ ବୋଲି କରି ଯେଉଁ ଦୁଇଟି ଅକ୍ଷର,<br>
ଏହି ବିଶ୍ୱ ବ୍ରହ୍ମାଣ୍ଡର ଅଟେ ମୂଳା ଧାର ।<br>
ବ୍ରହ୍ମ ନାମାନୁସାରେ ବ୍ରହ୍ମାଣ୍ଡ ହୋଇଛି,<br>
ପ୍ରତ୍ୟେକ ଘଟରେ ବ୍ରହ୍ମ ପୂରି ରହିଅଛି ।<br>
× × ×<br>
ସଭିଙ୍କ ଅଙ୍ଗରେ ବ୍ରହ୍ମସତ୍ତା ରହିଅଛି,<br>
ତାହା ବିସ୍ତାରିତ ଭାବେ ବର୍ଣ୍ଣନା କରୁଛି ।<br>
ବ୍ରହ୍ମବୈବର୍ତ୍ତ ନାମରେ ଅଟେ ଯେ ପୁରାଣ,<br>
ବିଭିନ୍ନ ଖଣ୍ଡରେ ତାହା ବ୍ୟକତଟି ଜାଣ ।

(୨ୟ ଅଧ୍ୟାୟ)

ପୁଣି କେତେକ ସ୍ଥାନରେ କବି ପୁରାଣର ମହାତ୍ମ୍ୟ ସମ୍ପର୍କରେ କହିଛନ୍ତି—

ବର ପାଇବା ଇଚ୍ଛାରେ ଯେଉଁ ଭକ୍ତଜନ,<br>
ପଢ଼ିଇ ତାହାଙ୍କୁ ବର ଦିଅନ୍ତି ଭଗବାନ ।<br>
× × ×<br>
ହରି ଭକ୍ତି ଏ ଜଗତେ ଅଟେ ମୂଳମାତ୍ର,<br>
ଭଜିଲେ ସକଳ ପାପ ହୋଇବ ଦୂରିତ ।<br>
× × ×

ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟଇ ମହାନ,
ପଢ଼ିଲ ମାନେ ପବିତ୍ର ହୁଏ ଚିତ୍ତ ମନ ।
ଏ ଘୋର କଳିକାଳକୁ ଏ ଅଟଇ ନିଶୁଣି,
ତାହାର ସାହାଯ୍ୟେ ସ୍ୱର୍ଗେ ଗମ୍ଭ ଜ୍ଞାନୀ ଗୁଣୀ ।

(୫ମ ଅଧ୍ୟାୟ)

କବି କ୍ଷେତ୍ରମୋହନ ଏହିପରି ଅନେକ ସ୍ଥାନରେ ମୂଳ ସଂସ୍କୃତାନୁଯାୟୀ ନ ହୋଇ ପାଠକଙ୍କ ମନରେ ଧର୍ମଭାବ ସୃଷ୍ଟି କରିବା ପାଇଁ ଅନେକ ବର୍ଣ୍ଣନା ପ୍ରଦାନ କରିଛନ୍ତି । କିନ୍ତୁ କବି ରତ୍ନାକର ମୂଳ ସଂସ୍କୃତକୁ ଅନୁବାଦ କଲାବେଳେ ଏକମାତ୍ର ପାଠ୍ୟେ ଭାବରେ ଗ୍ରହଣ କରିଛନ୍ତି । ତେଣୁ ତାଙ୍କ ଅନୁବାଦରେ କୌଣସିଠାରେ ମୂଳ ଗ୍ରନ୍ଥରୁ ବିଚ୍ୟୁତ ହେବାର ଦେଖିବାକୁ ମିଳେ ନାହିଁ । ତେବେ କବିଙ୍କ ରଚନାରେ କେତେକ ସ୍ଥାନରେ କାହାଣୀ ସଂଯୋଜନାରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଯେପରି ଗଣେଶ ଖଣ୍ଡରେ ଗଣେଶଙ୍କ ଜନ୍ମ ବିବରଣ କଲାବେଳେ ଓ ଗଣେଶଙ୍କ ମସ୍ତକ ଉପରେ ହସ୍ତୀ ମସ୍ତକ ହେଲା କହିଲାବେଳେ କବି ରତ୍ନାକର ସାମାନ୍ୟ କେତେକ ପରିବର୍ତ୍ତନ କରି ଏକ ସୁନ୍ଦର କାହାଣୀ ସୃଷ୍ଟି କରିଛନ୍ତି । କାହାଣୀଟି ହେଲା—ଥରେ ଦୁର୍ବାସା ମହର୍ଷି ବୈକୁଣ୍ଠପୁରରୁ କୈଳାଶପୁରକୁ ଯାଉଥିଲା ବେଳେ ଇନ୍ଦ୍ରଙ୍କୁ ରମ୍ଭା ଓ ମେନକାଙ୍କ ସହିତ କ୍ରୀଡ଼ା କରୁଥିବାର ଦେଖିଲେ । ଇନ୍ଦ୍ର ଦୁର୍ବାସାଙ୍କୁ ଦେଖି ତାଙ୍କର ଚରଣ ବନ୍ଦନା କଲେ । ଦୁର୍ବାସା ଏହି ପୂଜାରେ ସନ୍ତୁଷ୍ଟ ହୋଇ ଏକ ପାରିଜାତ ପୁଷ୍ପ ପ୍ରଦାନ କରି କହିଗଲେ ଏ ପୁଷ୍ପ ଯାହା ମସ୍ତକରେ ସ୍ଥାନ ପାଇବ ସେ ଦେବତାଙ୍କ ସର୍ବାଗ୍ରେ ପୂଜା ପାଇବ । ଦୁର୍ବାସା ଗଲାପରେ ଇନ୍ଦ୍ର ଖେଳ ଭ୍ରମରେ ସେହି ପାରିଜାତ ପୁଷ୍ପକୁ ହସ୍ତୀର ମସ୍ତକରେ ଦେଲେ । ପରେ ଏହି ହସ୍ତୀର ମସ୍ତକ ଗଣେଶଙ୍କ ମସ୍ତକରେ ଲାଗିଥିବାରୁ ଗଣେଶ ଦେବତାଙ୍କ ଆଗରୁ ପୂଜା ପାଆନ୍ତି । ଏହି କାହାଣୀ ମୂଳଗ୍ରନ୍ଥରେ ଥିଲେ ମଧ୍ୟ ଇନ୍ଦ୍ରଙ୍କ ସମ୍ପର୍କରେ ଏତେ ବେଶି କୁହାଯାଇ ନାହିଁ । ତେଣୁ ଗର୍ଗବଂଶଙ୍କର ଅନୁବାଦରେ ମଧ୍ୟ ଅନେକ ସ୍ଥାନରେ ସାମାନ୍ୟ ସାମାନ୍ୟ ଲୌକିକ ତ୍ରୁଟି ଦର୍ଶାଯାଇ ପାରେ । କିନ୍ତୁ ପଣ୍ଡିତ ଭଗୀରଥୀ ସାଠୀୟାଙ୍କର

ଅନୁବାଦ ଏକ ଚମତ୍କାର ଓଡ଼ିଆ ଅନୁବାଦ । ପଣ୍ଡିତ ଷଡ଼ଙ୍ଗୀ ମହାଶୟଙ୍କର ଗୃହଖଣ୍ଡ ଅନୁବାଦ ମଧ୍ୟରେ ଏପରି କାହାଣୀ ଗଳ୍ପ ସ୍ତୁତି ବା ବର୍ଣ୍ଣନାତ୍ମକ ସ୍ତୁତି ଦେଖିବାକୁ ମିଳେ ନାହିଁ । ଯଥାର୍ଥରେ ଏହା ଏକ ସାର୍ଥକ ଅନୁବାଦ ବୋଲି କୁହାଯାଇ ପାରେ । ମୂଳ ଗ୍ରନ୍ଥର ମୌଳିକତା ରକ୍ଷା କରିସିବା ସଙ୍ଗେ ସଙ୍ଗେ ଭାଷାର ଅପରୂପ ଛଟା ସମୁଦାୟ ଗ୍ରନ୍ଥଟିକୁ ହୃଦୟଗ୍ରାହୀ କରି ପାରିଛି । ଯଥାର୍ଥରେ ଏହା ଏକ ଉପାଦେୟ ଅନୁବାଦ ।

ଏହି ପୁରାଣରେ ଯେଉଁ ସମାଜର ଚିତ୍ର ଦିଆ ଯାଇଛି ସେ ସମାଜରେ କରୁଥିବା ଲୋକମାନଙ୍କର ଚଳିଚଳନ ଅନୁସନ୍ଧେୟ । ସେ ସମୟର ସମାଜ ଏକ ନୀତିଗତ ସାମାଜିକ ବନ୍ଧନରେ ଆବଦ୍ଧ ଥିବା ଜଣାଯାଏ । ଲୋକମାନେ ଧର୍ମ ବିଶ୍ୱାସୀ, ନ୍ୟାୟ ପରାୟଣ ଥିବା ଏ ଗ୍ରନ୍ଥରୁ ସୂଚିତ ହୁଏ । ଯେପରି ସେ ସମୟର ଲୋକମାନେ ବ୍ରାହ୍ମଣଙ୍କୁ ଦାନ ଦେବାକୁ ମହାପୁଣ୍ୟ ବୋଲି ଚିନ୍ତା କରୁଥିଲେ । ଏହି ଦାନ ଦେବାର ଫଳାଫଳ ଓ ବିଭିନ୍ନ ପ୍ରକାର ଦାନର ବର୍ଣ୍ଣନା ଏହି ପୁରାଣରୁ ମିଳିଥାଏ । ଯେପରି-ପାଦୁକା, ଦୀପ, ଅନ୍ନ, ବସ୍ତ୍ର, ଛତ୍ର, ଚାମର, ଧନ, ଗଜ ଓ ଅଶ୍ୱ ଇତ୍ୟାଦି । ଏହାଛଡ଼ା ସମାଜରେ କାହାର ସନ୍ତାନସନ୍ତତି ନ ହେଲେ ସେ ନାରୀ ସ୍ୱାମୀର ଅନୁମତିରେ ମୁନି, ଋଷି-ମାନଙ୍କର ଆଶ୍ରୟ ନେଉଥିବା କଥା ବର୍ଣ୍ଣିତ ହୋଇଥିବା ଦେଖିବାକୁ ମିଳେ । ଯେପରି—

"ମୁହିଁ ଗୋପନାରୀ କନ୍ୟା ଦ୍ରୁମିଳ ରାଜାର,
ଆପଣଙ୍କ ସନ୍ନିଧିକୁ ସ୍ୱାମୀଙ୍କ ଆଦେଶେ,
ଆସିଅଛି ପୁତ୍ରଲାଭ କରିବା ମାନସେ ।

(୨୪ ଅଧ୍ୟାୟ) ପ୍ରକୃତି ଖଣ୍ଡ (କ୍ଷେତ୍ରମୋହନ)

ଏହା ମୂଳ ସଂସ୍କୃତରେ ମଧ୍ୟ ଦେଖିବାକୁ ମିଳେ ।

ଯେପରି— "ଗୋପୀକାଽହାଂ ଦ୍ୱିଜଶ୍ରେଷ୍ଠ ଦ୍ରୁମିଲସ୍ୟଚ କାମିନୀ
ପୁତ୍ରାର୍ଥିନୀ ତ୍ୱମ୍ ମୂଳଂ ଭର୍ତ୍ତୁରାଜ୍ଞୟା ତ୍ୟାଗତାଽହଂ ।"

(ଶ୍ଳୋକ—୨୩, ଅଧ୍ୟାୟ—୨୦, ବ୍ରହ୍ମଖଣ୍ଡ)

ଏହି ବର୍ଣ୍ଣନା ଥିବା ସ୍ଥଳେ ନାରୀର ସତୀତ୍ୱ ଉପରେ ଅନେକ ଗୁରୁତ୍ୱ ଦିଆ-ଯାଇଥିବା ଏହି ପୁରାଣରୁ ମିଳେ । ଏହାଛଡ଼ା ନରନାରୀଙ୍କର ଆଚରଣ ଉପରେ ଅନେକ ନୀତିଶିକ୍ଷା ଏହି ଗ୍ରନ୍ଥରେ ପ୍ରଦତ୍ତ ହୋଇଅଛି । ଯେପରି ମଳ ମୂତ୍ର ତ୍ୟାଗ, ଦନ୍ତ ଘର୍ଷଣ ସ୍ନାନ ତର୍ପଣ ଆଦି ବିଭିନ୍ନଦିଗ ଭାବରେ ବର୍ଣ୍ଣିତ ହୋଇଅଛି । ଏହା ମୂଳ ଗ୍ରନ୍ଥରେ ମଧ୍ୟ ଠିକ୍ ଏହିପରି ଦେଖିବାକୁ ମିଳେ । ସଂସ୍କୃତରେ ଅଛି— ,

ନର୍ମଳଂ ସ୍ଥଳ ମାସାଦ୍ୟ ବିଟ୍ ମୂତ୍ରଂ ତ୍ୟକ୍ତ୍ୱ ସୁଜେନ୍ ମୁଦା
ଜଳଂ ଜଳ ସମୀପଂ ଚ ଘରନ୍ଧ୍ରଂ ପ୍ରାଣୀ ସନ୍ନିଧିଂ
ଦେବାଳୟ ସମୀପଂଚ ବୃକ୍ଷମୂଳଂଚ ବର୍ତ୍ମ ଚ ।

(ଶ୍ଳୋକ—୧୯, ଅଧ୍ୟାୟ—୨୬, ବ୍ରହ୍ମଖଣ୍ଡ)

ଏହାକୁ ଅନୁବାଦ କରି କବି କ୍ଷେତ୍ରମୋହନ ଲେଖିଛନ୍ତି—

"ଜଳରେ ବା ଜଳ ପାଶେ ରନ୍ଧ୍ର ଥିବା ଠାରେ
ଲୋକ ସମୀପରେ ଅବା ବୃକ୍ଷର ମୂଳରେ ।
ଦେବାଳୟ ପାଖରେ ବା ପ୍ରଶସ୍ତ ମାର୍ଗରେ,
ମଳମୂତ୍ର ତ୍ୟାଗ ନ କରିବ କେବେ ଥରେ ।"

(ଅଧ୍ୟାୟ—୩୦, ବ୍ରହ୍ମଖଣ୍ଡ)

ପୁଣି କୁହାଯାଇଛି—"ଶୌଚହୀନ ହେଲେ ଦ୍ୱିଜ ଚଣ୍ଡାଳ ସଦୃଶ" (୩୦ ଅଧ୍ୟାୟ, ବ୍ରହ୍ମଖଣ୍ଡ) (ଶୌଚ ହୀନୋଽଶୁଚି ନିତ୍ୟ ମନର୍ହଃ ସର୍ବ କର୍ମସୁ । ) ଏହାଛଡ଼ା ସ୍ନାନ ତର୍ପଣ ଆଦିର ବର୍ଣ୍ଣନା ଅନେକ ସ୍ଥାନରେ ଦେଖିବାକୁ ମିଳେ । ତେବେ ଆଚରଣଗତ ଅନେକ ବର୍ଣ୍ଣନା ଏହି ଗ୍ରନ୍ଥର ପ୍ରଧାନ ଉପଜୀବ୍ୟ ବସ୍ତୁ ।

ବ୍ରହ୍ମବୈବର୍ତ୍ତ ପୁରାଣ ପାଠ କଲେ ଯାହା ମନକୁ ବିଶେଷ ସ୍ପର୍ଶ କରେ ତାହା ହେଉଛି ଏହି ପୁରାଣାନ୍ତର୍ଗତ ଶ୍ରୀକୃଷ୍ଣ ଜନ୍ମଖଣ୍ଡରେ ବର୍ଣ୍ଣିତ ଶୃଙ୍ଗାର ରସ । ଶ୍ରୀକୃଷ୍ଣ ଜନ୍ମଖଣ୍ଡରେ ଶୃଙ୍ଗାରର ବିଭିନ୍ନ ଲକ୍ଷଣ ସହିତ ରାଧାକୃଷ୍ଣଙ୍କର ଶୃଙ୍ଗାର ବର୍ଣ୍ଣନା ବହୁଳ ଭାବରେ କରାଯାଇଛି । ଯେପରି କବି କହିଛନ୍ତି—

"ବିପରୀତ ଆଦି ଅଷ୍ଟ ପ୍ରକାରେ ଶୃଙ୍ଗାର
କଲେ ସେ କାଳରେ ପ୍ରଭୁ ରସିକ ଈଶ୍ୱର ।
ଦୁହେଁତ କାମଶାସ୍ତ୍ରରେ କୁଶଳ ଅଟନ୍ତି
ପରସ୍ପରେ କ୍ରୀଡ଼ା କଲେ ତେଜି ଭୟଭ୍ରାନ୍ତି ।"

(ଶ୍ରୀକୃଷ୍ଣ ଜନ୍ମଖଣ୍ଡ—୨୮ ଅଧ୍ୟାୟ, କ୍ଷେତ୍ରମୋହନ)

ଏହା ସଂସ୍କୃତରେ ଏହିପରି ଅଛି—

ଶୃଙ୍ଗାରାଷ୍ଟ ପ୍ରକାରଂଚ ବିପରୀତାଂ ହ୍ୟନେକଂ ବିଭୁଃ
ନଖ ଦନ୍ତ କରଣାଂଚ ପ୍ରହାରଂଚ ଯଥୋଚିତମ୍ ।
କାମଶାସ୍ତ୍ରେଷୁ ଯଦ୍‌ଗୋପ୍ୟମ୍ ଚୁମ୍ବନାଷ୍ଟ ବିଧଂପରଂ
କାମିନୀନାଂ ମନୋହାରି ଚକାର ରସିକେଶ୍ୱରଃ ॥

(ଶ୍ଳୋକ—୭୨,୭୩, ଅଧ୍ୟାୟ—୨୮ ଶ୍ରୀକୃଷ୍ଣ ଜନ୍ମଖଣ୍ଡ)

ଶୃଙ୍ଗାରର ବିଭିନ୍ନ ବର୍ଣ୍ଣନା ପ୍ରସଙ୍ଗ ମଧ୍ୟରୁ ଚୁମ୍ବନ ଆଦିର ବିଭିନ୍ନ ବର୍ଣ୍ଣନା ଏହି ପୁରାଣରେ ଦେଖିବାକୁ ମିଳେ । କବି କ୍ଷେତ୍ରମୋହନଙ୍କ ଶ୍ରୀକୃଷ୍ଣ ଜନ୍ମ ଖଣ୍ଡରେ ୨୮ ଅଧ୍ୟାୟରେ ବର୍ଣ୍ଣିତ ଅଛି—

"ହସ୍ତରୁ ମୁରଲୀ କ୍ରୀଡ଼ା ପଦ୍ମ ଖସିଲେ ।
ଦ୍ୱିତୀୟ ପୀତ ବସନ ଶିଖୀପୁଚ୍ଛ ଚୂଳ
ଏହିପରି ଖସି ତଳେ ପଡ଼ିଲେ ସକଳ ।
କ୍ଷଣେକ ପରେ ଚେତନା ପାଇଣ ଶ୍ରୀହରି
ରାଧିକା ଦେବୀଙ୍କୁ ବେନି ହସ୍ତେ ଭିଡ଼ିଧରି ।"

ଏହା ସଂସ୍କୃତରେ ମଧ୍ୟ ଠିକ୍ ଏହିପରି ଦେଖିବାକୁ ମିଳେ ।

ଯେପରି— "ପପାତ ମୁରଲୀ ତସ୍ୟ କ୍ରୀଡ଼ା କମଲମୁଜ୍ଜ୍ୱଳଂ
ଦ୍ୱିତୀୟଂ ପୀତବସ୍ତ୍ରଂଚ ଶିଖି ପିଚ୍ଛଂ ଶରେ ରତଃ ॥
କ୍ଷଣେନ ଚେତନାଂ ପ୍ରାପ୍ୟ ଯଯୋ ରାଧାନ୍ତିକଂ ମୁଦା
କୃତ୍ୱା ବକ୍ଷ ସିତାଂ ପ୍ରିତ୍ୟା ସମାଶ୍ଳିଷ୍ୟ ଚୁ ଚୁ ମ୍ବସଃ ॥"

(ଶ୍ଳୋକ-୭୨, ୭୩, ଅଧ୍ୟାୟ-୨୮, ଶ୍ରୀକୃଷ୍ଣ ଜନ୍ମଖଣ୍ଡ)

ଏହି ପୁରାଣରେ ଶୃଙ୍ଗାରର ଚୁମ୍ବନ, ଲେପନ, ଉଲଗ୍ନ ଆଦି ନାନା ବିଷୟର ବହୁଳ ବର୍ଣ୍ଣନା ଦେଖିବାକୁ ମିଳେ । ଶ୍ରୀକୃଷ୍ଣ ଜନ୍ମଖଣ୍ଡ ବ୍ୟତୀତ ପ୍ରକୃତି ଖଣ୍ଡରେ ଶଙ୍ଖଚୂଡ଼ ସହିତ ତୁଳସୀଙ୍କର ଓ ଶିବ ପାର୍ବତୀଙ୍କର ଶୃଙ୍ଗାର ବର୍ଣ୍ଣନା ଆଦି ପ୍ରସଙ୍ଗ ସ୍ଥାନ ପାଇଛି । କବି କ୍ଷେତ୍ରମୋହନ ତୁଳସୀ ଶଙ୍ଖଚୂଡ଼ଙ୍କର ଶୃଙ୍ଗାର ଦୃଶ୍ୟ ବର୍ଣ୍ଣନା କରି କହିଛନ୍ତି, ଶୃଙ୍ଗାର କାଳରେ ଦୁହେଁ ଅର୍ଦ୍ଧ-ନାରୀଶ୍ୱର ଦେଖାଯାଉଥିଲେ । ବ୍ରହ୍ମବୈବର୍ତ୍ତ ପୁରାଣରେ ଏହି ଶୃଙ୍ଗାର ବର୍ଣ୍ଣନା ଏତେ ବେଶୀ ହୋଇଛି ଯେ ଏହା ପାଠକଙ୍କୁ ଅନେକ ସମୟରେ ଭାରାକ୍ରାନ୍ତ କରିଥାଏ । ଏହି ଗ୍ରନ୍ଥର ହିନ୍ଦୀ ଅନୁବାଦ କର୍ତ୍ତା ପଣ୍ଡିତ ରାମଶର୍ମା ଆଚାର୍ଯ୍ୟ ମତ ଦେଇ କହିଛନ୍ତି—"ଜଣେ ନିରପେକ୍ଷ ପାଠକଙ୍କୁ ବ୍ରହ୍ମବୈବର୍ତ୍ତ ପୁରାଣ ପଢ଼ିବା ସମୟରେ ଯେଉଁ ପ୍ରସଙ୍ଗ ସବୁଠାରୁ ଅଧିକ ସ୍ପର୍ଶ କରେ, ତାହା ହେଉଛି ରାଧା ଓ କୃଷ୍ଣଙ୍କର ଶୃଙ୍ଗାର ବର୍ଣ୍ଣନା ପ୍ରସଙ୍ଗ । ଏହା ଏତେ ବେଶି ବଢ଼େଇ ଦିଆଯାଇଛି ଯେ ଏହି ସମ୍ଭାବନାର ବହୁ ଊର୍ଦ୍ଧ୍ୱରେ ।"

(ପ୍ରାକ୍ କଥନ—ପ୍ରଥମ ଖଣ୍ଡ, ପୃଷ୍ଠା-୧୪)

ଏହି ଗ୍ରନ୍ଥରେ ଯୁଦ୍ଧ ଆଦି ରୋମାଞ୍ଚକର ଘଟଣାର ବର୍ଣ୍ଣନା ମଧ୍ୟ ଦେଖିବାକୁ ମିଳେ । ପ୍ରକୃତି ଖଣ୍ଡରେ ଶିବ ଶଙ୍ଖଚୂଡ଼ ସମର ବର୍ଣ୍ଣନା ଅତି ଚମତ୍କାର ବର୍ଣ୍ଣନା । ପୁଣି ଗଣେଶ ଖଣ୍ଡରେ ସହସ୍ରାର୍ଜ୍ଜୁନ ସହିତ ପର୍ଶୁରାମଙ୍କର ଦ୍ୱନ୍ଦ୍ୱ ଯୁଦ୍ଧ ମଧ୍ୟ ଏକ ରୋମାଞ୍ଚକର ବର୍ଣ୍ଣନା । ଏହି ଯୁଦ୍ଧକୁ ଯାଉଥିବା ଲୋକମାନେ ଯେଉଁ ବେଶଭୂଷା ଆଦି ବ୍ୟବହାର କରୁଥିଲେ, ତାର ମଧ୍ୟ ବର୍ଣ୍ଣନା ଏହି ଗ୍ରନ୍ଥରୁ ଦେଖିବାକୁ ମିଳେ । ଯେପରି ଯେଉଁମାନେ ଯୁଦ୍ଧକୁ ଯାଉଥିଲେ ସେମାନେ ରକ୍ତବସ୍ତ୍ର, ରକ୍ତଚନ୍ଦନ, ଲାଲ ମନ୍ଦାରମାଳ ଆଦି ପିନ୍ଧୁଥିଲେ । ପୁରାଣର ଯେକୌଣସି ବର୍ଣ୍ଣନା ଦେଖିଲେ ମନେ ହୁଏ ତାହା ଏକ ଚିକିନିଖି ବର୍ଣ୍ଣନା ।

ବ୍ରହ୍ମବୈବର୍ତ୍ତ ପୁରାଣରେ ବ୍ରହ୍ମଙ୍କ ସମ୍ପର୍କରେ ଯେଉଁ ବର୍ଣ୍ଣନା ଦେଖିବାକୁ ମିଳେ ତାହା ଅନୁଧ୍ୟାନ କଲେ ଜଣାଯାଏ କବି ସନାତନ ପରମବ୍ରହ୍ମଙ୍କର ସର୍ବବ୍ୟାପକତା ସମ୍ପର୍କରେ ଗୁରୁତ୍ୱ ଆରୋପ କରିଅଛନ୍ତି । ଏହି ବର୍ଣ୍ଣନା ବହୁ ପୂର୍ବରୁ ବେଦ, ବେଦାନ୍ତ ଆଦିରେ ସ୍ୱୀକୃତ ହୋଇଥିବା ଦେଖାଯାଏ ।

ବ୍ରହ୍ମଙ୍କର ସ୍ୱରୂପ ସମ୍ପର୍କରେ ଏହି ପୁରାଣରେ ନାରଦଙ୍କ ମୁହଁରେ କହି କହିଛନ୍ତି ପରମାତ୍ମାଙ୍କର ସ୍ୱରୂପ ହେଉଛି ସନାତନ ପରମବ୍ରହ୍ମ, ଯାହା ପ୍ରତ୍ୟେକ ଜୀବ ମଧ୍ୟରେ ବିଦ୍ୟମାନ । ସବୁର ମୂଳ ହେଉଛି ପ୍ରକୃତି । ମଣିଷର ପଞ୍ଚପ୍ରାଣ ହେଉଛି ବିଷ୍ଣୁଙ୍କର ସ୍ୱରୂପ । ମନ ହେଉଛି ପ୍ରଜାପତି । ଜ୍ଞାନର ମୂଳାଧାର ହେଉଛି ବ୍ରହ୍ମ । ଆମେ ସବୁ ସେହି ପରମାତ୍ମାଙ୍କର ଅଧୀନ । ଆତ୍ମା ଓ ପରମାତ୍ମା ସମ୍ପୂର୍ଣ୍ଣ ଭାବେ ଅଭିନ୍ନ । ଯେପରି ରାଜା ସହିତ ପ୍ରଜାମାନେ ସହାନୁଗାମୀ, ଠିକ୍ ସେହିପରି ପରମାତ୍ମା ସହିତ ଆତ୍ମା ଅନୁଗାମୀ । ପ୍ରଳୟ କାଳରେ ସବୁ ଆତ୍ମା ପରମାତ୍ମା ସହିତ ମିଳିତ ହୋଇ ଏକ ହୁଅନ୍ତି । ଏହି ବ୍ରହ୍ମ ଆଉ କିଛି ନୁହେଁ, କେବଳ ଜ୍ୟୋତି ମାତ୍ର । ବ୍ରହ୍ମବୈବର୍ତ୍ତ ପୁରାଣର ନାମକରଣରୁ ଏହା ସୂଚିତ ହୁଏ ଯେ ବ୍ରହ୍ମବିବର୍ତ୍ତନ ବାଦରେ ବହୁରୂପ ବା ବହୁ ଶକ୍ତିରେ ରୂପାନ୍ତରିତ ହୋଇଛି । ପ୍ରଥମେ ବ୍ରହ୍ମ ଥିଲି ଏକ ଓ ଅଭିନ୍ନ, ପରେ ଏହା ଅନେକ ବା ବହୁରେ ପରିଣତ ହୋଇଛି । ଯେପରି କିବି ଅନେକ ଶକ୍ତିରେ କିପରି ରୂପାନ୍ତରିତ ସେ ପ୍ରସଙ୍ଗ ଆଲୋଚନାକରି ଗଙ୍ଗା, କାଳୀ, ତୁଳସୀ, ବେଦମତୀ, ସୀତା, ସାବିତ୍ରୀ, ଲକ୍ଷ୍ମୀ ଆଦିଙ୍କର ବର୍ଣ୍ଣନା ପ୍ରଦାନ କରିଅଛନ୍ତି । ନାରଦଙ୍କର ଭକ୍ତି ଏଠାରେ ଆଲୋଚନା କଲେ କଥାଟିର ସତ୍ୟତା ବେଶ୍ ଉପଲବ୍ଧି କରିହୁଏ । ଏହି ବ୍ରହ୍ମ ପ୍ରତ୍ୟେକ ଜୀବ-ଜଗତ ମଧ୍ୟରେ ବିଦ୍ୟମାନ ଓ ଅବିନଶ୍ୱର ।

ଆଲୋଚ୍ୟ ପୁରାଣ ସବୁ ଶ୍ରେଣୀର ପାଠକଙ୍କୁ ଆକୃଷ୍ଟ କରିବାର ପ୍ରଧାନ ଉପଜୀବ୍ୟ ବସ୍ତୁ ହେଲା କାହାଣୀ ସଂଯୋଜନା, ସାମାଜିକ ଜୀବନଧାରାର ଚିତ୍ତୋଳ ବର୍ଣ୍ଣନା, ଶୃଙ୍ଗାରାଦି ରସାଭାସର ଅପୂର୍ବ ବର୍ଣ୍ଣନା ଚାତୁରୀ, ପ୍ରକୃତି ଦେହରେ ଲାବଣ୍ୟସମ୍ଭାର ଓ ସର୍ବୋପରି ଧର୍ମୀୟ ଚେତନାରେ ଉଦ୍‌ବୋଧିତ କରିବାର ନୂତନ ପ୍ରୟାସ । ସଂକ୍ଷିପ୍ତ ବିଷୟବସ୍ତୁ ମଧ୍ୟରେ ନୂତନ ଭାବସମ୍ଭାର ଏହାର କଳେବର ମଣ୍ଡନ କରିଛି । ତେଣୁ ଏହା ସାଧାରଣ ଓ ଅସାଧାରଣ ଉଭୟ ଶ୍ରେଣୀର ପାଠକ ସମାଜକୁ ସନ୍ତୋଷବିଧାନ କରିଥାଏ ।

# ସୃଷ୍ଟି ଓ ସମୀକ୍ଷାକୁ ଯେଉଁମାନେ ସମୃଦ୍ଧ କରିଛନ୍ତି

## ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ଦାସ, ଏମ୍, ଏ.

ଅଧ୍ୟାପକ ଖ୍ରୀଷ୍ଟ ମହାବିଦ୍ୟାଳୟ । ଜନ୍ମ ଗଞ୍ଜାମ ଜିଲ୍ଲାର ଅସିକାରେ ୧୯୪୭ ମସିହା ସେପ୍ଟେମ୍ବର ୧୯ ତାରିଖ ଦିନ । ୧୯୬୫ ଖ୍ରୀଷ୍ଟାବ୍ଦରେ ଆସିକା ହାଇସ୍କୁଲରୁ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ । ୧୯୬୯ ରେ ଖ୍ରୀଷ୍ଟ ମହାବିଦ୍ୟାଳୟରୁ ଓଡ଼ିଆରେ ଅନର୍ସ ଏବଂ ୧୯୭୧ ରେ ରେଭେନ୍ସା କଲେଜରୁ ଓଡ଼ିଆ ଏମ୍.ଏ ପରୀକ୍ଷାରେ ସଫଳତା ଲାଭ । ଛାତ୍ରାବସ୍ଥାରେ ସଂସ୍କୃତ ଏବଂ ହିନ୍ଦୀ ଭାଷାରେ ଦକ୍ଷତା ଅର୍ଜନ । କିଛିକାଳ ବ୍ରହ୍ମପୁର ସନ୍ଧ୍ୟା ମହାବିଦ୍ୟାଳୟରେ କର୍ମମୟ ଜୀବନ ଅତିବାହିତ କରି ୧୯୭୭ ଡିସେମ୍ବରମାସଠାରୁ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଓଡ଼ିଆ ବିଭାଗରେ ଯୋଗଦାନ ।

ସେ ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ବିଷୟରେ ବିଭିନ୍ନ ସାମୟିକ ପତ୍ରିକାରେ ଆଲୋଚନା ପ୍ରବନ୍ଧ ପ୍ରକାଶ କରନ୍ତି ।

## ଶ୍ରୀ ଶରତଚନ୍ଦ୍ର କର, ଏମ୍. ଏ.

କଟକ ଜିଲ୍ଲାର ମାହାଙ୍ଗା ଥାନା ଅନ୍ତର୍ଗତ ମାଣିତିରୀ ଗ୍ରାମରେ ୧୯୫୧ ଖ୍ରୀଷ୍ଟାବ୍ଦ ଚୈତ୍ର କୃଷ୍ଣ ତ୍ରୟୋଦଶୀ ତିଥିରେ ଜନ୍ମ । ଖ୍ରୀଷ୍ଟକଲେଜରୁ ୧୯୭୨ ମସିହାରେ ଓଡ଼ିଆ ଅନର୍ସ ସହିତ ବି.ଏ ଏବଂ ରେଭେନ୍ସା ମହାବିଦ୍ୟାଳୟରୁ

୧୯୬୪ ମସିହାରେ ପ୍ରଥମ ଶ୍ରେଣୀରେ ଓଡ଼ିଆ ଏମ୍.ଏ ପରୀକ୍ଷାରେ କୃତିତ୍ୱ ଅର୍ଜନ । ୧୯୬୬ ମସିହାରୁ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଅଧ୍ୟାପକ ଭାବରେ ଅବସ୍ଥାପିତ । ସାମୟିକ ପତ୍ରିକାରେ ସମାଲୋଚନା ପ୍ରବନ୍ଧ ପ୍ରକାଶ କରନ୍ତି । ଅଧୁନା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଅଧୀନରେ ଗବେଷଣାରତ ।

**ଶ୍ରୀ ହୃଷିକେଶ୍ୟାମ ପଟ୍ଟନାୟକ,** ଏମ୍.ଏ. ସାହିତ୍ୟ ଶାସ୍ତ୍ରୀ

ଜନ୍ମ ୧୯୪୦ । ଜନ୍ମସ୍ଥାନ—ଖଲ୍ଲିକୋଟ, ଗଞ୍ଜାମ । ଖ୍ରୀଷ୍ଟକଲେଜର ପୂର୍ବତନ ଛାତ୍ର । ବର୍ତ୍ତମାନ ସାଂସ୍କୃତିକ ବିଭାଗରେ ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳାର ସମ୍ପାଦକ ରୂପେ ଅବସ୍ଥାପିତ । ଅନ୍ୟାନ୍ୟ ବହୁ ପ୍ରବନ୍ଧ ସହିତ ଏହାଙ୍କ ସମ୍ପାଦିତ ସଂସ୍କୃତ ଗ୍ରନ୍ଥମାନଙ୍କ ମଧ୍ୟରେ ମଣିମାଳା, ଗ୍ରାମଗୋଷ୍ଠୀ ରୂପକମ୍, ଉଷାହିବତୀ ରୂପକମ୍, ଓଡ଼ିଆ ଗ୍ରନ୍ଥମାନଙ୍କ ମଧ୍ୟରେ ଅର୍ଥଗୋବିନ୍ଦ, କୃଷ୍ଣରସାମୃତ, ରହସିକ, ସୁଲକ୍ଷଣା ପ୍ରଭୃତି ଉଲ୍ଲେଖଯୋଗ୍ୟ ।

**ଡକଟର କୃଷ୍ଣଚରଣ ସାହୁ,** ଏମ୍. ଏ., ପି. ଏଚ୍. ଡ଼ି,

ଜନ୍ମ ୧୬ ତାରିଖ ଏପ୍ରିଲ ୧୯୨୬ । ଜନ୍ମସ୍ଥାନ—କଟକ ଜିଲ୍ଲାର ନାଟୀ ଗୋବିନ୍ଦପୁର । ଦୀର୍ଘକାଳ ( ୧୯୫୨—୧୯୬୪, ୧୯୬୬—୧୯୭୧ ) ରାଞ୍ଚି ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ଅଧ୍ୟକ୍ଷ ଏବଂ କିଛିକାଳ (୧୯୬୪—୧୯୬୬) ଶାନ୍ତିନିକେତନ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ଅଧ୍ୟକ୍ଷ ଭାବରେ ଅବସ୍ଥାନ । ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ରିଡ଼ର । ଓଡ଼ିଆ ଗ୍ରାମସାହିତ୍ୟ ବିଷୟରେ ଗବେଷଣାମୂଳକ ନିବନ୍ଧ ଲେଖି ରାଞ୍ଚିବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଉପାଧି ଲାଭ । ପ୍ରାଚୀନ ସାହିତ୍ୟ ସମ୍ପର୍କରେ ତାଙ୍କର କେତେକ ଗବେଷଣା ମୂଳକ ପ୍ରବନ୍ଧ ଓଡ଼ିଆ ସାହିତ୍ୟର କେତେକ ଅନୁଦ୍‌ଘାଟିତ ଦିଗ ଉପରେ ଆଲୋକପାତ କରିଅଛି ।

ରଚନା—କୃଷ୍ଣଦାସ କହେ, Literature on social life in mediaeval Orissa.

ସମ୍ପାଦନା—ଜଗମୋହନ ରାମାୟଣ, ଶିଶୁବେଦ, ସପ୍ତାଙ୍ଗ, ଅମର କୋଷ, ଗୃହଖାନ, ଉଦ୍ଧବ ଗୀତା,

## ଶ୍ରୀମତୀ ବିଦ୍ୟୁତ୍‌ଲତା ନନ୍ଦ, ଏମ୍.ଏ.

ଇଂରାଜୀ ସାହିତ୍ୟ ବିଭାଗରେ ସମ୍ବଲପୁର କଲେଜ ଏବଂ ରେଭେନ୍‌ସା କଲେଜରେ କିଛିକାଳ ଅଧ୍ୟାପନା କରିସାରି ବର୍ତ୍ତମାନ ଖ୍ରୀଷ୍ଟ ମହାବିଦ୍ୟା-ଳୟରେ ଅଧ୍ୟାପନାରତ । ଉଭୟ ଇଂରାଜୀ ଓ ଓଡ଼ିଆରେ ବିଭିନ୍ନ ସାମୟିକ ପତ୍ରିକାରେ ଗଳ୍ପ, କବିତା, ପ୍ରବନ୍ଧ ଇତ୍ୟାଦି ଲେଖିଥାଆନ୍ତି । ବିଭିନ୍ନ ସାମାଜିକ ଏବଂ ସାଂସ୍କୃତିକ ଅନୁଷ୍ଠାନରେ ଅଂଶ ଗ୍ରହଣରେ ଆଗ୍ରହୀ ।

ପ୍ରକାଶିତ ପୁସ୍ତକ—'ସ୍ୱପ୍ନବିଳାସୀ' ( କାଞ୍ଚନ ଚନ୍ଦରଙ୍କ ଦି-ଡ୍ରିମର'ର ଅନୁବାଦ ), 'ଅଧ୍ୟାତ୍ମରାମାୟଣରେ ନାରୀ'

## ଶ୍ରୀମତୀ ସ୍ମିତା ଦାସ, ଏମ୍.ଏ.

ଶ୍ରୀମତୀ ଦାସ ୧୯୭୫ ମସିହାରେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଏମ୍.ଏ.ରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ଛାତ୍ରୀ ଅବସ୍ଥାରୁ ସାହିତ୍ୟ ସାଧନାରେ ଆଗ୍ରହୀ । ସୌରଭ, ଜୀବନରଙ୍ଗ ପ୍ରଭୃତି ମାସିକ ପତ୍ରିକାରେ ଲେଖା ପ୍ରକାଶ କରିଥାଆନ୍ତି । ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ସିନିୟର ପ୍ରାଧ୍ୟାପକ ଡକ୍ଟର କୃଷ୍ଣଚରଣ ସାହୁଙ୍କ ଅଧୀନରେ 'ଓଡ଼ିଆ ସଂସ୍କୃତିରେ କୃଷ୍ଣଚେତନା' ବିଷୟରେ ଗବେଷଣାରତ ।

## କୁମାରୀ ମମତା ବ୍ରହ୍ମା, ଏମ୍.ଏ.

ଜନ୍ମ ୨୦।୨।୧୯୫୪ ତାରିଖ । ୧୯୭୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ପ୍ରଜ୍ଞାନ ପରୀକ୍ଷାରେ କୃତିତ୍ୱର ସହ ଉପାଧି ଲାଭ । ୧୯୭୫ ଖ୍ରୀଷ୍ଟାବ୍ଦରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ଏମ୍.ଏ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ । ଛାତ୍ରୀ ଅବସ୍ଥାରୁ ସାହିତ୍ୟ ସାଧନାରେ ଆଗ୍ରହୀ । ବିଭିନ୍ନ ସାମୟିକ ପତ୍ରିକାରେ ଲେଖା ପ୍ରକାଶିତ ।

ପ୍ରକାଶିତ ପୁସ୍ତକ—(୧) ଓଡ଼ିଆ ସାହିତ୍ୟରେ ଧର୍ମଧାରା ।
(୨) ଓଡ଼ିଆ ସାହିତ୍ୟରେ ସ୍ୱଦେଶପ୍ରେମ

ବର୍ତ୍ତିମାନ କୂର୍ମାଙ୍କ ବ୍ରହ୍ମା ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଉପେନ୍ଦ୍ର ଭଞ୍ଜ ସାହିତ୍ୟ ବିଷୟରେ ଗବେଷଣାରତ ।

**ଶ୍ରୀ ଭାସ୍କରଚନ୍ଦ୍ର ଖଟାଇ,** ଏମ୍. ଏ.

ଜନ୍ମ ୧୦।୧୧।୧୯୦୮ ତାରିଖ । ଜନ୍ମସ୍ଥାନ—ହୁଲ୍ଲୁପୁର, ପୋ-କିଶୋର ନଗର । କଟକ, ୧୯୬୧ ଖ୍ରୀଷ୍ଟାବ୍ଦରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ଏମ୍.ଏ. ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଜଣେ ମଫିଜଖୀ ଭାବରେ ସରକାରୀ ଦପ୍ତରରେ ପ୍ରବେଶ । କିଛିକାଳ ଆସୁରିପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଭାବରେ କାର୍ଯ୍ୟ କରି ଚଉଦୁଆର ପ୍ରସ୍ତାବିତ ମହାବିଦ୍ୟାଳୟରେ ଅଧ୍ୟାପନାରତ । ୧୯୭୧ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ପହିଲି ତାରିଖରୁ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗଦାନ ।

ବିଭିନ୍ନ ସାମୟିକ ପତ୍ରିକାରେ ପ୍ରବନ୍ଧ ପ୍ରକାଶିତ । ଜଣେ ସଂଗଠକ ଭାବରେ ବହୁ ସାଂସ୍କୃତିକ ଏବଂ ସେବା ଅନୁଷ୍ଠାନ ସହିତ ସଂପୃକ୍ତ ।

**ଶ୍ରୀ ପ୍ରାଣରଞ୍ଜନ ଦାସ,** ଏମ୍.ଏ.

ଜନ୍ମ—୧୯୪୮ ଜାନୁଆରୀ ୨୫ ତାରିଖ । ଜନ୍ମସ୍ଥାନ—ବାଲେଶ୍ୱର ଜିଲ୍ଲା ବାଲିଆପାଳ ଅନ୍ତର୍ଗତ ବଡ଼ାପାଳ ଗ୍ରାମ । ୧୯୭୫ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ଏମ୍.ଏ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ । ଛାତ୍ରାବସ୍ଥାରୁ ସାହିତ୍ୟସେବାରେ ଅନୁରାଗୀ । ବିଭିନ୍ନ ସାମୟିକ ପତ୍ରିକାରେ ସମାଲୋଚନା ପ୍ରବନ୍ଧ ପ୍ରକାଶିତ । ବର୍ତ୍ତିମାନ ଖ୍ରୀଷ୍ଟ ମହାବିଦ୍ୟାଳୟ ଓଡ଼ିଆ ବିଭାଗରେ ଅଧ୍ୟାପକ । ଶ୍ରୀ ଦାସ 'ଆଜିର ଏକାଙ୍କିକା' ତ୍ରୈମାସିକ ଓଡ଼ିଆ ପତ୍ରିକାର ପରିଚାଳନା ସମ୍ପାଦକ ।

**ଶ୍ରୀ ପୂର୍ଣ୍ଣଚନ୍ଦ୍ର ମଲ୍ଲିକ,** ଏମ୍. ଏ.

ଜନ୍ମ ତାରିଖ ୧୯୫୩ ଡିସେମ୍ବର ୧୫ । ଜନ୍ମସ୍ଥାନ—ପୁରୀ ଜିଲ୍ଲା ବାଲି-ପାଟଣା ଥାନାର ନଡ଼ଶୋ ଗ୍ରାମ । ୧୯୭୫ ଖ୍ରୀଷ୍ଟାବ୍ଦରେ ଓଡ଼ିଆରେ ପ୍ରଥମ

ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଭାରତ ସରକାରଙ୍କ ଅଧୀନରେ କଟକ ଦୂର ଦର୍ଶନରେ ଟ୍ରାନ୍ସମିସନ୍ ଏକ୍‌ଜିକ୍ୟୁଟିଭ୍ ରୂପେ ଯୋଗଦାନ । ୧୯୭୭ ମସିହା ନଭେମ୍ବର ମାସରୁ ଖ୍ରୀଷ୍ଟ ମହାବିଦ୍ୟାଳୟର ଓଡ଼ିଆ ବିଭାଗରେ ଅଧ୍ୟାପନାରତ । ଛାତ୍ରାବସ୍ଥାରେ ବିଶ୍ୱବିଦ୍ୟାଳୟସ୍ତରୀୟ କ୍ଷୁଦ୍ରଗଳ୍ପ ପ୍ରତିଯୋଗିତାରେ (୧୯୭୧—୭୨, ୧୯୭୨—୭୩) ଶ୍ରେଷ୍ଠ ଗଳ୍ପ ଲେଖକ ରୂପେ ପୁରସ୍କୃତ । ବହୁ ଗଳ୍ପ, କବିତା ସାମୟିକପତ୍ରିକାରେ ପ୍ରକାଶିତ ଏବଂ ଆକାଶବାଣୀ କେନ୍ଦ୍ରରୁ ପ୍ରସାରିତ । ଜଣେ ପ୍ରୟୋଗବାଦୀ ନାଟ୍ୟକାର ରୂପେ ସୁପରିଚିତ । 'ନାଟକ ନୁହେଁ', ଯାତ୍ରାବିବରଣୀ, ଆମେ ସବୁ କୁଶଳୀ ଅଭିନେତା, ଅକ୍ଟୋପସ୍, ଅଜାତଶତ୍ରୁ ପ୍ରଭୃତି ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟ ରଙ୍ଗମଞ୍ଚରେ ସଫଳତାର ସହିତ ଅଭିନୀତ । ସମ୍ପ୍ରତି ଦୁଇଟି ଓଡ଼ିଆ ଚଳଚ୍ଚିତ୍ରର ସଂଳାପ ଓ ଗୀତ ରଚନା କରିଛନ୍ତି । ସୁସଂଗଠକ ଏବଂ ନାନା ସାଂସ୍କୃତିକ ଅନୁଷ୍ଠାନ ସହିତ ସଂପୃକ୍ତ ।

**ଶ୍ରୀ ବସନ୍ତକୁମାର ସାହୁ,** ଏମ୍. ଏ.

ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ଏମ୍.ଏ. ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ । ଛାତ୍ର ଜୀବନରୁ ସାହିତ୍ୟ ସାଧନାରେ ଅନୁରାଗୀ । ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ଅଧୀନରେ ଗବେଷଣାରତ ।

